ଜିମ୍ କରବେଟ୍

# ଜଙ୍ଗଲତଥ୍ୟ

ଅନୁବାଦକ :

ଡକ୍ଟର ପ୍ରଫୁଲ୍ଲ କୁମାର କର, ଏମ୍. ଡି.



ଗ୍ରନ୍ଥମନ୍ଦିର

Digitized by srujanika@gmail.com

JANGALA TATHYA
Oriya translation of Jim Corbett's Jungle Lore
By Dr. P. K. Kar, M. D.
Published by Grantha Mandir, Cuttack-2

Published by arrangement with
M/s. Oxford University Press, New Delhi

1st. Edition : February, 1976
2nd Edition : November, 1979
3rd Edition : June, 1990
Price :

ଅନୁବାଦକ :
ଡକ୍ଟର ପ୍ରଫୁଲ୍ଲ କୁମାର କର, ଏମ୍. ଡି.

ପ୍ରକାଶକ : ଅଭିରାମ ମହାପାତ୍ର
ଗ୍ରନ୍ଥ ମନ୍ଦିର, କଟକ-୨

ମୁଦ୍ରକ : ଜୟରାମ ମହାପାତ୍ର
ଗ୍ରନ୍ଥ ପ୍ରକାଶିନୀ, କଟକ-୧

ପ୍ରଥମ ସଂସ୍କରଣ : ଫେବୃଆରୀ, ୧୯୭୬
ଦ୍ୱିତୀୟ ସଂସ୍କରଣ : ନଭେମ୍ବର, ୧୯୭୯
ତୃତୀୟ ସଂସ୍କରଣ : ଜୁନ୍, ୧୯୯୦

ମୂଲ୍ୟ : ୪୦/-

Digitized by srujanika@gmail.com

ମୋର ଶିକ୍ଷକ,

ସହକର୍ମୀ ଓ

ଛାତ୍ର-ଛାତ୍ରୀମାନଙ୍କୁ—

ଡକ୍ଟର ପ୍ରଫୁଲ୍ଲ କୁମାର କର

Digitized by srujanika@gmail.com

# ଅନୁବାଦକର କଲମରୁ

ଘଞ୍ଚ ଜଙ୍ଗଲ ପରିବେଷ୍ଟିତ ହିମାଳୟ କୋଳବର୍ତ୍ତୀ ନୈନିତାଲ ନଗରୀରେ ଆଜକୁ ପ୍ରାୟ ଶହେବର୍ଷପୂର୍ବେ ଜିମ୍ କରବେଟ୍‌ଙ୍କ ଜନ୍ମ । ଜୀବନର ଅଧିକାଂଶ ଭାଗ ସେ ନୈନିତାଲ୍‌ରେ ଏବଂ ନିକଟବର୍ତ୍ତୀ 'କାଲାଦୁଙ୍ଗୀ' ଅନ୍ତର୍ଗତ ତାଙ୍କର ଗ୍ରାମ 'ଛୋଟି ହଲଦ୍ୱାନୀ'ରେ ବିତାଇ ଥିଲେ । ଭାରତକୁ ଆସିଥିବା ଏକ ଭାଗ୍ୟାନ୍ୱେଷୀ ଇଂରେଜ ଦମ୍ପତିଙ୍କ ସନ୍ତାନ ହୋଇଥିଲେ ହେଁ, କର୍‌ବେଟ୍ ଭାରତକୁ ମାତୃଭୂମି ମନେକରି ଏ ଦେଶର ତଥା ଦେଶବାସୀଙ୍କ ସୁଖ ଦୁଃଖରେ କିପରି ଅତି ନିବିଡ଼ଭାବେ ଜଡ଼ିତ ଥିଲେ, ତାହା ପୂର୍ବ ପ୍ରକାଶିତ ଅନୁବାଦ ଗୁଡ଼ିକରେ ବର୍ଣ୍ଣନା କରାଯାଇଛି ।

ଏହି ପୁସ୍ତକ ସହିତ ଜିମ୍ କର୍‌ବେଟ୍‌ଙ୍କର ଛଅ ପୁସ୍ତକର ଅନୁବାଦ—'ମୋର ଭାରତ' (My India), 'କୁମାୟୁଁର ନରଖାଦକ' (Man-eaters of Kumaon), 'ରୁଦ୍ରପ୍ରୟାଗର ନରଖାଦକ' (The Man-eating Leopard of Rudra-prayag), 'ମନ୍ଦିରର ବାଘ' (Temple Tiger and more Man-eaters of Kumaon) ଏବଂ ଟ୍ରି ଟପ୍‌ସ୍ (Tree Tops) ପ୍ରକାଶ ପାଇସାରିଛି । ଏସବୁ ବହିରେ କର୍‌ବେଟ୍‌ଙ୍କ ଅସାଧାରଣ ବ୍ୟକ୍ତିତ୍ୱ, ବିଚକ୍ଷଣ ବନ୍ୟଜ୍ଞାନ, ନିଷ୍ଠା, ଆତ୍ମତ୍ୟାଗ, ତାଙ୍କର ଅସାମାନ୍ୟ ମାନବିକତା ଏବଂ ଗରିବ ଗ୍ରାମବାସୀମାନଙ୍କ ପାଇଁ ଗଭୀର ସ୍ନେହ ଓ ସହାନୁଭୂତି, ଏ ଦେଶ ପାଇଁ ଅଶେଷ ମମତା, ଶିକାରୀଭାବେ ବିଜ୍ଞତା ଓ ଅଭିଜ୍ଞତା ତଥା ସାହିତ୍ୟିକଭାବେ ତାଙ୍କ କୃତୀ ବା ପ୍ରତିଷ୍ଠା ସମ୍ବନ୍ଧରେ ବିଶଦ ଆଲୋଚନା କରାଯାଇଛି । ଏସବୁ ବହି ପଢ଼ିଲେ ପାଠକର ସ୍ୱତଃ ହୃଦବୋଧ ହେବ ଯେ, କର୍‌ବେଟ କେବଳ ଜଣେ ସଫଳ ଶିକାରୀ କିମ୍ବା ସୁଲେଖକ ନଥିଲେ; ଜଙ୍ଗଲ ତଥା ଜଙ୍ଗଲବାସୀ ପଶୁପକ୍ଷୀଙ୍କ ସମ୍ବନ୍ଧରେ ମଧ୍ୟ ତାଙ୍କର ପ୍ରଭୂତ ଜ୍ଞାନ ଥିଲା । କେବଳ ଭାରତରେ ନୁହେଁ, ସମଗ୍ର ପୃଥିବୀରେ କର୍‌ବେଟ୍‌ଙ୍କୁ ଜଣେ ଅତି ଉଚ୍ଚକୋଟୀର ସଂରକ୍ଷଣଧର୍ମୀ ପ୍ରକୃତିବିଦ୍‌ଭାବେ ଗ୍ରହଣ କରାଯାଇଛି ।

କର୍‌ବେଟ୍ ଭାରତରେ ଯେଉଁ ଦୀର୍ଘ ବାସ୍ତରିବର୍ଷ କଟାଇଥିଲେ, ସେଥିରୁ ବତିଶଟି ବର୍ଷ କଟିଯାଇଥିଲା କେବଳ ନରଖାଦକ ଶିକାରରେ । ମାତ୍ର ପାଞ୍ଚଟି ଗୁଳି ସଙ୍ଗରେ ନେଇ ଶ୍ୱାପଦସଙ୍କୁଳ ବନପଥରେ ସେ ଏକାକୀ ପାଦରେ ବୁଲି ବୁଲି ନିୟମିତ ନରଖାଦକ ଶିକାର କରୁଥିଲେ । ସେ ଧରଣର ଶିକାରପାଇଁ ଯେତିକି ସାହସ ଦରକାର, ତାଠାରୁ ଯଥେଷ୍ଟ ବେଶି ଆବଶ୍ୟକ ହୁଏ ଅରଣ୍ୟବିଜ୍ଞାନରେ ବ୍ୟୁତ୍ପତ୍ତି ଏବଂ ପଶୁପକ୍ଷୀଙ୍କ ମତିଗତି, କ୍ରିୟାକଳାପ ଓ ସେମାନଙ୍କ ଭାଷା, ଭାବ ଓ ସ୍ୱରକୁ ଅନୁଧାନକରି ତାହାକୁ ଅବିକୃତ ଅନୁକରଣ କରି-ପାରିବା ସଙ୍ଗେ ସେଥିରୁ ସଠିକ୍ ସିଦ୍ଧାନ୍ତ ଗ୍ରହଣ କରିବାର ଶକ୍ତି । ଏସବୁ ଦିଗରେ

Digitized by srujanika@gmail.com

କର୍‌ବେଟ୍‌ଙ୍କ ଅସାଧାରଣ ଅରଣ୍ୟଜ୍ଞାନ ହିଁ ଥିଲା ବିପଜ୍ଜନକ ନରଖାଦକ ଶିକାରରେ ତାଙ୍କ ଅସାମାନ୍ୟ ସଫଳତାର ପ୍ରକୃତ କାରଣ ।

'ଜଙ୍ଗଲ ତଥ୍ୟ' ବହିଟି କର୍‌ବେଟଙ୍କ ଅନ୍ୟ ରଚନାଗୁଡ଼ିକଠାରୁ କେତେକାଂଶରେ ଭିନ୍ନ । ଅନ୍ୟ ବହିରେ କର୍‌ବେଟ୍ ବ୍ୟକ୍ତିବିଶେଷ କିମ୍ବା ଶିକାରୀ ଜୀବନର କୌଣସି ଘଟଣାକୁ କେନ୍ଦ୍ର କରି ନିଜ ଅନୁଭୂତିକୁ ରୂପରେଖ ଦେଇଛନ୍ତି । 'ଜଙ୍ଗଲ ତଥ୍ୟ' କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ଘଟଣା ଉପରେ ପ୍ରତିଷ୍ଠିତ ନୁହେଁ । ଏଥିରେ ଜୀବଜନ୍ତୁ ତଥା ବ୍ୟକ୍ତିବିଶେଷ ଦକ୍ଷିଙ୍କ ଅଂଶ ଗ୍ରହଣ କରିଥିଲେ ମଧ୍ୟ ଲେଖକ ନିର୍ଦ୍ଦିଷ୍ଟ ଘଟଣା ଗୁଡ଼ିକର ବର୍ଣ୍ଣନାରେ ସୀମିତ ନହୋଇ ସେ ସବୁଥିରୁ ଗ୍ରହଣ କରିଥିବା ଅନୁଭୂତିକୁ କେତେକ ସିଦ୍ଧାନ୍ତର ଭିତ୍ତିଭୂମିରୂପେ ଉପଯୋଗ କରିଛନ୍ତି ଏବଂ ଜଙ୍ଗଲ ତଥ୍ୟ ତଥା ଜଙ୍ଗଲ ସମ୍ବନ୍ଧୀୟ ଶିକ୍ଷା ଦୃଷ୍ଟିରୁ ଏଦ୍ୱାରା ତାତ୍ପର୍ଯ୍ୟ ପୁଙ୍ଖାନୁପୁଙ୍ଖଭାବେ ବର୍ଣ୍ଣନା ଓ ଆଲୋଚନା କରିଛନ୍ତି ।

କୁମାୟୁଁର ବିସ୍ତୃତ ଅରଣ୍ୟଭିତରେ ଜୀବନର ଅଧିକାଂଶ ଭାଗ ଅତିବାହିତକରି କର୍‌ବେଟ ଯେଉଁ ଜ୍ଞାନ ଅର୍ଜନ କରିଥିଲେ, ଭାରତୀୟ ବନ୍ୟଜନ୍ତୁଙ୍କ ସମ୍ବନ୍ଧରେ ସେପରି ଗଭୀର ଅନୁଧ୍ୟାନ ଅଉ କେହି କରିଛନ୍ତି କି ନାହିଁ ସନ୍ଦେହ । ଜୀବନବ୍ୟାପୀ ଏହି ଶିକ୍ଷାକୁ ବହୁ ଘଟଣାରେ ଶିକାରରେ ସଫଳତା ତଥା ଆତ୍ମରକ୍ଷା ପାଇଁ ସେ ପ୍ରୟୋଗ ଓ ପରୀକ୍ଷା କରିଥିଲେ ।

କେବଳ ଜ୍ଞାନ ଗ୍ରହଣ କରି ତାର ପ୍ରୟୋଗଦ୍ୱାରା ସଠିକ୍ ସିଦ୍ଧାନ୍ତରେ ଉପନୀତ ହେବା ଛଡ଼ା କର୍‌ବେଟ୍ ଅନ୍ୟ ଏକ ଗୁଣର ଅଧିକାରୀ ହୋଇଥିଲେ, ଯାହାକୁ ଏ ବହିର ଶେଷଭାଗରେ ସେ 'ଅରଣ୍ୟ ସବନ୍ତ୍' ବୋଲି ଆଖ୍ୟା ଦେଇଛନ୍ତି । ପୂର୍ବାର୍ଜିତ ଅନୁଭୂତିରୁ ନିର୍ଦ୍ଦିଷ୍ଟ କୌଣସି ଘଟଣାର କାରଣ ଓ ପରିଣାମ ମଧ୍ୟରେ ସମ୍ପର୍କ ସ୍ଥାପନ କରିବା ସହଜ । କିନ୍ତୁ କର୍‌ବେଟ୍‌ଙ୍କ ମତରେ ଅରଣ୍ୟ ସହିତ ଦୀର୍ଘ ପରିଚୟ ଓ ସେ ବିଷୟରେ ଅନୁଧ୍ୟାନ ଅବଚେତନ ମନକୁ ମଧ୍ୟ ଏପରି ତୀକ୍ଷ୍ଣ ଓ ଶାଣିତ କରିତୋଳେ ଯେ, ବିପଦର କୌଣସି ପ୍ରତ୍ୟକ୍ଷ କାରଣ ଦୃଶ୍ୟମାନ ବା ଶ୍ରୁତିଗୋଚର ନ ହେଲେ ମଧ୍ୟ ଅବଚେତନ ମନର ସଙ୍କେତ ହିଁ ଆସନ୍ନ ବିପଦ ସମ୍ବନ୍ଧରେ ବ୍ୟକ୍ତିବିଶେଷକୁ ସଠିକ୍ ସୂଚନା ଦେଇଥାଏ । ନିରବଚ୍ଛିନ୍ନ ଅଧ୍ୟବସାୟ ଫଳରେ କର୍‌ବେଟ୍ ଏଭଳି 'ଅରଣ୍ୟ ସବନ୍ତ୍'ର ଅଧିକାରୀ ହୋଇପାରିଥିଲେ ।

କୌଣସି ବୈଜ୍ଞାନିକ ସିଦ୍ଧାନ୍ତ ଯେପରି କ୍ରମିକ ବିଶ୍ଳେଷଣଦ୍ୱାରା ପ୍ରମାଣ କରାଯାଏ, ଠିକ୍ ସେହିପରି 'ଜଙ୍ଗଲ ତଥ୍ୟ' ବହିରେ କର୍‌ବେଟ୍ ତାଙ୍କ ଶିକାର ଅନୁଭୂତିକୁ ପର୍ଯ୍ୟାୟକ୍ରମେ ବିଶ୍ଳେଷଣକରି କେତେଗୁଡ଼ିଏ ସିଦ୍ଧାନ୍ତ ଉପସ୍ଥାପନ ଓ ପ୍ରମାଣ କରିଛନ୍ତି । ଯାଦୁକର ନିଜର କଳାକୌଶଳ ଉପରୁ ରହସ୍ୟର ଆବରଣ ଉନ୍ମୁକ୍ତ କରିଦେଇ ତାହା ପ୍ରକୃତରେ ରହସ୍ୟମୟ ନୁହେଁ ବୋଲି ଯେପରି କୌତୂହଳୀ ଦର୍ଶକଙ୍କ ସମ୍ମୁଖରେ ପ୍ରମାଣିତ କରେ, ଠିକ୍ ସେହିପରି ଏ ବହିଟିରେ କର୍‌ବେଟ୍ ନିଜର ଅଲୌକିକ ଶକ୍ତିର ରହସ୍ୟ ଉନ୍ମୋଚନ କରି, ତାହା ବୈଜ୍ଞାନିକ ପଦ୍ଧତିରେ କଠୋର ଅଧ୍ୟବସାୟଦ୍ୱାରା ହାସଲ କରାଯାଇଥିବା ଏକ ଶିକ୍ଷାକ୍ରମ ବୋଲି ପ୍ରମାଣିତ କରିଛନ୍ତି ।

Digitized by srujanika@gmail.com

ପୂର୍ବ ଅନୁବାଦଗୁଡ଼ିକ ପରି ଏ ବହିଟିରେ ମଧ୍ୟ ମୂଳଲେଖାର ବିଷୟବସ୍ତୁ ଓ ତାର ପରିପ୍ରକାଶକୁ ଅକ୍ଷୁଣ୍ଣ ରଖିବାକୁ ଚେଷ୍ଟାକରିଛି । ହିମାଳୟ ଅଞ୍ଚଳର ବିଭିନ୍ନ ପଶୁପକ୍ଷୀ ଓ ଗଛପତ୍ରର ଓଡ଼ିଆ ନାମ ସଂଗ୍ରହ କରିବାରେ E. P. Gee, Augustus Somerville, Salim Ali, U. N. Kanjilal, Balkrishna Seshadri ଆଦି ବହୁ ବିଶେଷଜ୍ଞଙ୍କ ବହିରୁ ଏବଂ Forest Research Institute and Colleges, Dehra Dunରୁ ସାହାଯ୍ୟ ନେଇଛି । 'ନନ୍ଦନକାନନ'ର କର୍ତ୍ତୃପକ୍ଷ ମଧ୍ୟ ଏଥିରେ ସାହାଯ୍ୟ କରିଛନ୍ତି । ପ୍ରାଣୀବିଜ୍ଞାନବିତ୍ ଡକ୍ଟର ବସନ୍ତକୁମାର ବେହୁରା ଓ ଡକ୍ଟର ଚଣ୍ଡୀଚରଣ ଦାସ ଏବଂ ଉଦ୍ଭିଦ ବିଜ୍ଞାନବିତ୍ ଡକ୍ଟର ହରିହର ପଟ୍ଟନାୟକ କେତେକ ଓଡ଼ିଆ ପ୍ରତିଶବ୍ଦ ସଂଗ୍ରହ କରିବାରେ ସାହାଯ୍ୟ କରିଛନ୍ତି । ଏ ସମସ୍ତଙ୍କ ନିକଟରେ ମୁଁ କୃତଜ୍ଞ । ହିମାଳୟ ଅଞ୍ଚଳର ଯେଉଁ ପଶୁପକ୍ଷୀ ବା ଗଛପତ୍ରର ଓଡ଼ିଆ ପ୍ରତିଶବ୍ଦ ନାହିଁ, ଅନୁବାଦରେ ସେସବୁର ହିନ୍ଦୀ ବା ଇଂରାଜୀ ନାମ ବ୍ୟବହାର କରାଯାଇଛି । ଇଂରାଜୀ ମୂଳଲେଖାରେ ଥିବା ଉକ୍ତର ପ୍ରଦେଶର ବିଭିନ୍ନ ସ୍ଥାନର ନାମସହିତ ସେଗୁଡ଼ିକର ପ୍ରକୃତ (ହିନ୍ଦୀ) ନାମର ପାର୍ଥକ୍ୟ ଥିବାର ଦେଖାଯାଏ । ଏହି ହିନ୍ଦୀ ନାମଗୁଡ଼ିକ ସଂଗ୍ରହ କରାଯାଇ ଅନୁବାଦରେ ବ୍ୟବହାର କରାଯାଇଛି । ଜଙ୍ଗଲ ଓ ଶିକାର ସମ୍ବନ୍ଧୀୟ ଓଡ଼ିଆ ଶବ୍ଦ ସବୁ ପୁରୀଜିଲ୍ଲାର ନୟାଗଡ଼ ଓ ଗଞ୍ଜାମ ଜିଲ୍ଲାର ଭଞ୍ଜପାଣି, ମୋହନା ଓ ଚନ୍ଦ୍ରଗିରି ଅଞ୍ଚଳର ପ୍ରଚଳିତ ଭାଷାରୁ ସଂଗୃହୀତ ।

ଅନେକ ପାଠକପାଠିକା ଓ ସ୍ୱନାମଧନ୍ୟ ବହୁ ସାହିତ୍ୟିକ ଅଭିନନ୍ଦନ ଜଣାଇ ମୋର ଏହି ସାମାନ୍ୟ ଉଦ୍ୟମକୁ ଉତ୍ସାହିତ କରିଛନ୍ତି । ସେମାନଙ୍କ ନିକଟରେ ମୋର ବିନମ୍ର କୃତଜ୍ଞତା । ମୋର ବହୁ ହିତାକାଂକ୍ଷୀ ବନ୍ଧୁ ଓ ଆତ୍ମୀୟଙ୍କ ପାଖରୁ ମଧ୍ୟ ପୂର୍ବପରି ଅନେକ ଉତ୍ସାହ ଓ ପ୍ରେରଣା ପାଇଛି—ସେମାନଙ୍କୁ ମୋର ଗଭୀର କୃତଜ୍ଞତା ଜଣାଉଛି । ଏ ପୁସ୍ତକର ପ୍ରକାଶକ ଶ୍ରୀ ଅଭିରାମ ମହାପାତ୍ର ଓ ଗ୍ରନ୍ଥ-ପ୍ରକାଶିନୀ ପ୍ରେସ୍‌ର ପରିଚାଳକ ଶ୍ରୀ ଜୟରାମ ମହାପାତ୍ରଙ୍କୁ ସେମାନଙ୍କର ଯତ୍ନ ପାଇଁ ମୋର ଆନ୍ତରିକ ଧନ୍ୟବାଦ । ଶେଷରେ, ସବୁଥର ପରି ଏ ବହିର ପ୍ରକାଶନରେ ମୋର ପତ୍ନୀ ଡକ୍ଟର୍ ସୁଧାରାଣୀ କରଙ୍କର ଯେତେ ଯାହା ଅବଦାନ ରହିଛି ତାକୁ ଆଦରରେ ସ୍ୱୀକାର କରୁଛି ।

ପେନ୍‌ସନ୍ ଲେନ୍
କଟକ, ୧୨।୧୨।୧୯୮୭

ପ୍ରଫୁଲ୍ଲକୁମାର କର

Digitized by srujanika@gmail.com

# ଏକ

ସ୍ୱିଅପୁଅ ମିଶି ଆମେ ଥାଉ ଚଉଦ ଜଣ । ବୟସ ସମସ୍ତଙ୍କର ଆଠରୁ ଅଠର ଭିତରେ । କାଲାଦୁଙ୍ଗୀ (୧) ପାଖ 'ବୋଆର' ପୋଲର କାଠବାଡ଼ା ଉପରେ ସମସ୍ତେ ଜାକଜୁକ ହୋଇ ବସିଥାଉ । ପୋଲକୁ ଘେରି ଗହଳ ଜଙ୍ଗଲ; ସନ୍ଧ୍ୟା ସନେଇ ଆସି ଘୋରଅନ୍ଧାର ମାଡ଼ିଆସୁଥାଏ । ଦିନ ଗଡ଼ିଲାବେଳକୁ ଜଙ୍ଗଲରୁ ଶୁଖିଲା ଡାଳ ଗୋଟାଇ ସଡ଼କ ମଝିରେ ଅଗ୍ନି ଜାଳିଥିଲୁ । ଅଗ୍ନି କେତେବେଳୁ ଲିଭିଯାଇ ଚଡ଼ନିଆଁ ଚକ କେବଳ ଅନ୍ଧାରରେ ଦପ୍‌ଦପ୍ ହେଉଥାଏ । ବେଳକାଳ ଦେଖି ଡାନ୍‌ସେ ଠିକ୍ ସେତକବେଳକୁ ଭୂତଗପଟିଏ ଆରମ୍ଭ କରିଥାଆନ୍ତି । ଘଞ୍ଚ ଜଙ୍ଗଲର ଘେରି ଭିତରେ ଅନ୍ଧାରରେ ବସି ଭୂତଗପ ଶୁଣ୍ ଶୁଣ୍ ଭୟରେ ସମସ୍ତେ ଜଡ଼ ପାଲଟିଯାଇଥିଲୁ । ହଠାତ୍ ଏତକବେଳେ ସ୍ୱିଅ ଜଣେ ପାଟିକରି ଉଠି ଆଉ ଜଣକୁ ଚାଗିଦ୍ କରି କହିଲା, "ଅରକୁ ଥର ସେମିତ-ପଛକୁ ଅନାଉଛୁ କାହିଁକି ? ମୋତେ ଡର ମାଡ଼ୁଛୁ—ବୁଝିପାରୁନୁ ?"

ଡାନ୍‌ସେ ଆୟର୍ଲାଣ୍ଡର ଲୋକ । ସେଠାକାର ଅଧିବାସୀମାନଙ୍କପରି ଭୂତପ୍ରେତ, ଡାଆଣୀ ଚିରଗୁଣୀଙ୍କ ଉପରେ ତାଙ୍କର ଅତୁଟ ବିଶ୍ୱାସ । ପିଲାଦିନୁ ଏ ଧରଣର ନାନା ବିଶ୍ୱାସରେ ସେ ଗୋଟାପଣେ ମଜ୍ଜିଯାଇଥାନ୍ତି । ତେଣୁ ଭୂତଗପ କହିଲାବେଳେ ତାଙ୍କ ଭାଷା ଓ ସ୍ୱର ଯେପରି ଗମ୍ଭୀର ଆବେଗ ଓ ଆନ୍ତରିକତାରେ ଭରିଯାଏ ଏବଂ ପ୍ରତ୍ୟେକଟି ବିଷୟ ସେ ଯେପରି ଶରଦହଜ୍ଞା ସହିତ ପରିବେଷଣ କରନ୍ତି, ଶ୍ରୋତା ମନରେ ଗଭୀର ରେଖାପାତ କରିବା ସଙ୍ଗେ କାହାଣୀର ସତ୍ୟତା ସମ୍ବନ୍ଧରେ ତାହା ଉଳେହେଲେ ସନ୍ଦେହ ପାଇଁ ଅବକାଶ ରଏନାହିଁ ।

ଡାନ୍‌ସେ ସେଦିନ ଯେଉଁ କାହାଣୀଟି କହୁଥାନ୍ତି, ତାହାର ଘଟଣାସ୍ଥଳୀ ଆୟର୍ଲାଣ୍ଡର ଜଣେ ଜମିଦାରଙ୍କ କୋଠି । ଭଙ୍ଗା ଦଦରା ସେହି ପ୍ରକାଣ୍ଡ କୋଠିରେ କୁଆଡ଼େ ଅସ୍ପଷ୍ଟ ଛାୟାମୂର୍ତ୍ତିମାନେ ମୁଣ୍ଡରୁ ଗୋଡ଼ଯାଏ ଧଳାଲୁଗା ଘୋଡ଼ିହୋଇ ରାତସାରା ବୁଲାବୁଲି କରନ୍ତି । ନିର୍ଜନ ନିସ୍ତବ୍ଧ ରାତିରେ କେହି କବାଟରେ ହାତ ବାଡ଼େଇଲା ଭଳି ଦୁମ୍‌ଦୁମ୍ ଶବ୍ଦ ଶୁଭେ; କବାଟ ଝରକାସବୁ ଆପେ ଆପେ ଫିଟିଯାଇ ପରକ୍ଷଣେ ପୁଣି ବନ୍ଦ ହୋଇଯାଏ । କୋଠିର କାଠ ପାହାଚରେ ରାତତମାମ କାହାର ପାଦ ଚପି ଚପି ଚାଲୁଥିବାର ଶବ୍ଦ କୁଆଡ଼େ ଶୁଣିବାକୁ ମିଳେ ।

---

(୧) ଲେଖକଙ୍କ ଗାଁ 'ଛୋଟୀହଲ୍‌ଦ୍ୱାନୀ' 'କାଲାଦୁଙ୍ଗୀ' ଗ୍ରାମସମୂହ ଅନ୍ତର୍ଗତ । ଶୀତଦିନେ ସେ ସପରିବାର ନୈନିତାଲରୁ ଆସି ଗାଁରେ ରହୁଥିଲେ । 'ମୋର ଭାରତ' ବହିଟି ଦ୍ରଷ୍ଟବ୍ୟ—ଅନୁବାଦକ ।

Digitized by srujanika@gmail.com

ସୁଦୂର ଆୟର୍ଲାଣ୍ଡରେ ଭୂତପ୍ରେତମାନେ ଯେତେ ଉପଦ୍ରବ କଲେ ମଧ୍ୟ, ଭାରତ-ବର୍ଷରେ ସେମାନଙ୍କ ସହିତ ଭେଟ ହେବାର କୌଣସି ସମ୍ଭାବନା ନଥିବାରୁ ସେସବୁ ବିଦେଶୀ ଭୂତଙ୍କୁ ମୁଁ ବିଶେଷ ଭୟ କରୁନଥିଲି । ମୋର ଅସଲ ଭୟ ଥିଲା ଆମର ଗାଁ ପାଖ ପାହାଡ଼ ଜଙ୍ଗଲ ଓ ମଶାଣିପଦାର ଭୂତପ୍ରେତ, ଡାଆଣୀ-ଚିରଗୁଣୀମାନଙ୍କୁ । ପିଲାଦିନସାରା ତାଙ୍କର ଭୟରେ ମୁଁ ସଦାସର୍ବଦା ଥରହର ହେଉଥିଲି ।

ପୋଲ ପାଖ ଜଙ୍ଗଲର ଧାରରେ ଚଢ଼କପୋଡ଼ା ପ୍ରକାଣ୍ଡ ହାଲଦୁ ଗଛଟିଏ । ଛୁଟିକିଣି ଓ ଜାଲ ଆଦି ନେଇ ସାଙ୍ଗସାଥୀଙ୍କ ସହିତ ଚଢ଼େଇ ମାରିବାକୁ ବା ପ୍ରଜାପତି ଧରିବାକୁ ଜଙ୍ଗଲରେ ପଶିଲେ ସେହି ଗଛ ଉପରେ ଲକ୍ଷ୍ୟ ରଖି ଆମେ ବାଟ ବାରିଥାଉ । ଲଟାପତି ମାଡ଼ି ଥିଣ୍ଡା ଗଛଟିକୁ ଅଗଯାଏ ଘୋଡ଼ାଇ ପକାଇଥାଏ । ପୁରୁଷ କାଳପେଚାଟିଏ ସେ ଗଛରେ ବହୁଦିନରୁ ବସା କରି ରହୁଥାଏ । କୁଆ ଓ ଅନ୍ୟାନ୍ୟ ପକ୍ଷୀଙ୍କ ଜ୍ୱାଳାରୁ ରକ୍ଷାପାଇବା ପାଇଁ ପେଚାଟି ଦିନସାରା ପତ୍ରଗହଳରେ ଲୁଚିରହେ । ତାର ସାଥୀ ମାଈପେଚାଟି ସେଠାରୁ ଅଳ୍ପ ଦୂରରେ ନାଳକୂଳର ଗୋଟିଏ ଅଶ୍ୱତ୍ଥଗଛ ଡାଳରେ ଅଲଗା କରି ବସାଟିଏ ବାନ୍ଧିଥାଏ; ପେଚା ସହିତ କେବଳ ସହବାସ ଋତୁଟି ହାଲଦୁ ଗଛରେ କଟାଇ ବର୍ଷର ବାକିତକ ସେ ତା ନିଜ ବସାରେ ହିଁ ରହେ । ରାତି ହେଲେ ପୁରୁଷ ପେଚା ଆହାର ସନ୍ଧାନରେ ବାହାରେ, ମାଛ ବେଙ୍ଗ ଖାଇ ପେଟ ପୂରିଲାପରେ ବସାକୁ ସେ ବାହୁଡ଼ି ଆସେ । ବସାରୁ ବାହାରିବା ଓ ସେଠାକୁ ଫେରିବାବେଳେ ପେଚାଟି ଉଚ୍ଚସ୍ୱରରେ ତା ସାଥୀକୁ ଥରେ ଡାକ ଦିଏ । ସାଥୀଟି ମଧ୍ୟ ତା ସହିତ ସ୍ୱର ମିଳାଇ ସେ ଡ଼ାକର ଜବାବ ଦେଇ-ଥାଏ । ଶବ୍ଦକୁ ଭାଷାରେ ରୂପଦେବା କଷ୍ଟକର । ତେବେ ପେଚା ଦୁଇଟିଙ୍କ ବିକଟ 'ହା-ହୋ-ହା' ଶବ୍ଦ ଯେପରି ଶୁଣାଯାଏ, ନ ଜାଣିବା ଲୋକ ତାହାକୁ ବାଘର ହେଣ୍ଟାଳ ବୋଲି ଭୁଲ କରିବା ଅସମ୍ଭବ ନୁହେଁ ।



ଡାନ୍‌ସେ ସେଦିନ ତାଙ୍କ ଗପପେଡ଼ିରୁ ଅସଲ ଭୟଭରା ଗପଟିଏ ବାଛି ଶୁଣାଉ-ଥିଲେ । ଗପ ସରିଆସୁଥିଲା । ଟିକିଏ ଆଗରୁ ଝିଅଜଣକ ପଛକୁ ନ ଚାହିଁବାକୁ ତା ସାଥୀକୁ ତାଗିଦ୍ କରିଥିଲା । ଠିକ୍ ଏତିକବେଳେ କାଳପେଚାଟି ତା ସାଥୀ ଉଦ୍ଦେଶ୍ୟରେ ଡାକଦେଇ ଡ଼େଣା ଫଡ଼ଫଡ଼ କରି ଶୀକାର ସନ୍ଧାନରେ ବସାରୁ ବାହାରିପଡ଼ିଲା । ଝିଅଦଳକ ହାଉଳି ଖାଇ ଚିରଚିରେଇ ଉଠିଲାବେଳକୁ ଡାନ୍‌ସେ କହିବସିଲେ ଯେ ଜାଣିଏ ଡାଆଣୀ କୁଆଡ଼େ ଅନ୍ଧାରିଆ ଝଡ଼ବତରେ ଜଙ୍ଗଲରେ ଠିକ୍ ଏମିତି କଲିକଲା ରଡ଼ି ଛାଡ଼ନ୍ତି । ସେ ରଡ଼ି ଯାହା କାନରେ ବାଜେ, ତାର ଓ ତା ପରିବାରର ସମସ୍ତଙ୍କର କୁଆଡ଼େ ଘୋର ଅନିଷ୍ଟ

Digitized by srujanika@gmail.com

ଘଟିଯାଏ । ଆଉ ଡାଆଣୀକୁ ଆଖିରେ ଥରେ ଦେଖିଦେଲେ ପ୍ରାଣ ବାହାରିଯିବା ଅତି ନିଶ୍ଚିତ କଥା ।

ଜଙ୍ଗଲ ପାହାଡ଼ରେ ଘୂରିବୁଲିବାରେ ମୋର ସବୁଦିନେ ବଡ଼ ଆଗ୍ରହ । ବିଶେଷ-କରି ପିଲାଦିନେ ପ୍ରଜାପତି ଧରିବା, ଚଢ଼େଇବସାରୁ ଅଣ୍ଡା ଚୋରାଇବା, ଆଉ ଏସବୁ କିଛି ନ କରି କେବଳ ଜଙ୍ଗଲରେ ଏକାକୀ ବୁଲିବାରେ ମୋର ଭାରି ସଉକ ଥିଲି । ବଣଜଙ୍ଗଲ ସବୁ ଭୂତପ୍ରେତ, ଡାଆଣୀ, ଚିରଗୁଣୀଙ୍କ ଲୀଳାସ୍ଥଳୀ ଏବଂ ସେମାନଙ୍କ ଯୋଗୁଁ ସେଠାରେ ନାନା ଉପ୍ଲାବହ କାଣ୍ଡମାନ ଘଟେ ବୋଲି ଲୋକମାନେ ଯାହା କହନ୍ତି—ଜଙ୍ଗଲ ସହିତ ଅତି ଅନ୍ତରଙ୍ଗଭାବେ ଜଡ଼ିତ ଥିବାରୁ ପିଲାଦିନଠାରୁ ସେମାନଙ୍କର ଏସବୁ ମନ୍ତବ୍ୟ ମୁଁ ଗମ୍ଭୀର ମନୋଯୋଗ ସହ ଶୁଣୁଥିଲି ।

ଡାନ୍‌ସେଙ୍କ ବର୍ଣ୍ଣିତ ଆୟର୍ଲାଣ୍ଡର ଭୂତପ୍ରେତ କେଉଁ ରୂପରେ ଆତ୍ମପ୍ରକାଶ କରନ୍ତି, ତାହା ନେଇ ମୁଁ ବିଶେଷ ମୁଣ୍ଡ ଘୂରାଇ ନଥିଲି । ତେବେ ଆମର ଏହି କାଳାଢୁଙ୍ଗୀ ଜଙ୍ଗଲରେ ଯେଉଁ ଦୁଇପ୍ରକାର ଡାଆଣୀଙ୍କ ଡାକ ନିଜେ ଶୁଣିଛନ୍ତି ବୋଲି ସେ ବର୍ଣ୍ଣନା କରୁଥିଲେ, ସେ ବିଷୟରେ କିଛି କିଛି ଧାରଣା କରିବା ପାଇଁ ମୁଁ ପରେ ସୁଯୋଗ ପାଇଲି । ଏଥିରୁ ଗୋଟିଏ ପ୍ରକାର ଡାଆଣୀ ବିଷୟରେ ଅସଲ ତଥ୍ୟ ମୁଁ ପରେ ପ୍ରକାଶ କରିବି । ଅନ୍ୟ ରକମର ଡାଆଣୀଟିକୁ ହିମାଳୟର ତଳପାର୍ବତ୍ୟ ଅଞ୍ଚଳର ବାସିନ୍ଦାମାନେ 'ଚୂରେଲ୍' କହନ୍ତି । 'ଚୂରେଲ୍' ସାଧାରଣ ସ୍ତ୍ରୀଲୋକଙ୍କ ପରି ଦେଖାଯାଉଥିଲେ ମଧ୍ୟ ତା ପାଦ ଦୁଇଟା କୁଆଡ଼େ ପଛକୁ ମୋଡ଼ିହୋଇ ଥାଏ । ନିର୍ଜନ ସ୍ଥାନରେ ଏକାଟିଆ ଲୋକ ତା ହାବୁଡ଼ରେ ପଡ଼ିଗଲେ 'ଚୂରେଲ୍' ତାକୁ ସମ୍ପୂର୍ଣ୍ଣ ମୋହ କରିଦେଇ ସେଠାରୁ ପଛେଇ ପଛେଇ ଚାଲେ ଏବଂ ମୋହଗ୍ରସ୍ତ ଲୋକଟି ମନ୍ତ୍ରମୁଗ୍ଧ ପରି ତାକୁ ଅନୁସରଣ କରି ଶେଷରେ ସର୍ବନାଶ ବରଣ କରେ । ସ୍ଥାନୀୟ ଲୋକଙ୍କ ମତରେ ନିର୍ଜନ ସ୍ଥାନରେ 'ଚୂରେଲ୍' ସହିତ ଭେଟ ହୋଇଗଲେ, ତାର ଶକ୍ତିକୁ ପ୍ରତିହତ କରିବା ପାଇଁ ହାତରେ କମ୍ବା ଲୁଗାପଟାରେ ଆଖି ବୁଜି ଧରିବାକୁ ହୁଏ । ଘର ଭିତରେ ଥିଲେ ଚଦରତଳେ ମୁଣ୍ଡ ଘୋଡ଼ାଇ ମୁହଁମାଡ଼ି ଶୋଇରହିବାକୁ ପଡ଼େ ।

ଆଦିମ ଯୁଗରେ ଆମ ପୂର୍ବପୁରୁଷମାନେ ଗୁହାର ଅନ୍ଧକାର ଭିତରେ ଜୀବନଯାପନ କରୁଥିଲେ । ତାଙ୍କର ଦାୟାଦ ହୋଇଥିଲେହେଁ ସଭ୍ୟତା ଓ ବିବର୍ତ୍ତନ ଯୋଗୁଁ ଆମେମାନେ ସମ୍ପୂର୍ଣ୍ଣ ଦିବାଚର ପାଲଟିଯାଇଛୁ । ଦିନବେଳେ ଆମେ ସ୍ୱାଭାବିକ ପରିବେଶରେ ଥାଉ, ସେତେବେଳେ ଅତି ଭୟାଳୁ ଲୋକ ମଧ୍ୟ ବିପଦର ସମ୍ମୁଖୀନ ହେବାକୁ ସାହସ କରେ । ଯେଉଁ ସବୁ ଭୟ ଯୋଗୁଁ ରାତିରେ ଘୁମ ଟାଙ୍କୁଣିଉଠେ, ଦିନରେ ଆମେ ତାକୁ ସହଜରେ ହସି ଉଡ଼ାଇଦେଉ । କିନ୍ତୁ ଦିନର ଅବସାନ ସହିତ ଦୃଷ୍ଟିକ୍ଷେତ୍ର ସୀମିତ ହୋଇ ଯିବା ସଙ୍ଗେ ଚାରିଆଡ଼ୁ ଅନ୍ଧାର ଯେତେବେଳେ ଘୋଟିଆସେ, ଆଖି ଉପରେ ଆଉ ନିର୍ଭର କରି ନ ପାରି ଆମେ ନିଜେହିଁ ନିଜ କଳ୍ପନାର ଶିକାର ହେଉ । କଳ୍ପନାପ୍ରସୂତ ଅହେତୁକ ଆତଙ୍କ ଯଦି ବିଦ୍ୱାନ୍ ଓ ବିଚାରବନ୍ତ ଲୋକଙ୍କୁ ମଧ୍ୟ ସମ୍ପୂର୍ଣ୍ଣ ପ୍ରତାରିତ କରିଦେଇପାରେ,

Digitized by srujanika@gmail.com

ତେବେ ଭୌତିକ କାଣ୍ଡରେ ଅଜ୍ଞାବନ ବିଶ୍ୱାସ କରୁଥିବା ଏସବୁ ବନବେଷ୍ଟିତ ଅଞ୍ଚଳର ସରଳ ଅଧିବାସୀମାନଙ୍କ ମନରେ ତାହା କପରି ପ୍ରାଣଘାତୀ ଭୟ ସଞ୍ଚାର କରୁଥିବ ତାହା ସହଜେ ଅନୁମେୟ । ରାତିର ଦୁର୍ଭେଦ୍ୟ ଅନ୍ଧକାରରେ ଲଣ୍ଠଣ ବା ପାଇନ୍ କାଣ୍ଡର ମଶାଲଟିଏ ଧରି ନିର୍ଜନ ଘଞ୍ଚ ଜଙ୍ଗଲ ଭିତରେ ଏକାକୀ ଗ୍ଲଲିବାବେଳେ ଭୂତପ୍ରେତ ଆଦି ଅପଚ୍ଛାୟାଙ୍କ ଭୟରେ ଏଠାକାର ଲୋକେ ଯେପରି ଜଡ଼ ଓ ଅବଶ ପାଲଟିଯାଆନ୍ତି, ସେଥିରେ ଆଶ୍ଚର୍ଯ୍ୟ ହେବାର ବା କ'ଣ ଅଛି ?

ତାନ୍‌ସେ ପିଲାଦିନୁ ଲାଗିପଡ଼ି ଭୂତପ୍ରେତଙ୍କ ବିଷୟରେ ନିଜ ଦେଶର ଗୁଡ଼ିଏ ଅନ୍ଧ-ବିଶ୍ୱାସ ହାସଲ କରିଥିଲେ । ଏଠାକୁ ଆସି ସ୍ଥାନୀୟ ଭାଷା ଶିଖିଲାପରେ ଗାଉଁଲି ଲୋକଙ୍କ ସହିତ ଅବାଧରେ ମିଳାମିଶା କରି ଏଠାକାର ସେଭଳି ବହୁ ବିଶ୍ୱାସକୁ ସେ ସାଦରେ ଗ୍ରହଣ କରିନେଲେ । ଆମ ପାହାଡ଼ିଆ ଲୋକଙ୍କଠାରେ ସାହସର ଅଭାବ ନାହିଁ । ତାନ୍‌ସେ ନିଜେ ମଧ୍ୟ କମ ସାହସୀ ନୁହନ୍ତି । କିନ୍ତୁ ପ୍ରେତପିଶାଚଙ୍କ ସମ୍ବନ୍ଧରେ ସେମାନଙ୍କ ଧାରଣା ସବୁ ଏପରି ବଦ୍ଧମୂଳ ଯେ ସନ୍ଦେହ ଦୂରକରିବା ପାଇଁ ସେ ବିଷୟରେ ସାମାନ୍ୟ ଅନୁସନ୍ଧାନ କରିବାକୁ କେହି ପ୍ରସ୍ତାବ ଦେଲେ, ତାହା ଗ୍ରହଣ କରିବାକୁ ସେମାନେ ସ୍ୱପ୍ନରେ ସୁଦ୍ଧା ସାହସ କରିବେ ନାହିଁ ବୋଲି ମୁଁ ନିଶ୍ଚିତଭାବେ ଜାଣେ ।

କୁମାୟୁଁ ଅଞ୍ଚଳରେ ବହୁବର୍ଷ ବାସକରିବା ଭିତରେ ମୁଁ କେତେ ଶହ ବାର ଜଙ୍ଗଲରେ ଏକାକୀ ରାତି କଟାଇଛି, ତାର ହିସାବ ଦେବା ସମ୍ଭବ ନୁହେଁ । ସେ ଭିତରେ ମୁଁ ସମୁଦାୟ ତିନିଥର 'ଚୁରେଲ୍‌ର ଡାକ' ଶୁଣିଛି ଓ ଥରଟିଏ ତାକୁ ଆଖିରେ ଦେଖିବାର ସୁଯୋଗ ମଧ୍ୟ ପାଇଛି ।

ମାର୍ଚ୍ଚମାସର ଶୁକ୍ଲପକ୍ଷ ତ୍ରୟୋଦଶୀ ରାତି । ପ୍ରଚୁର ଯୋଗଷ ଫସଲ ହାଲା ଅମଳ ହୋଇଥିବାରୁ ଗାଁଯାକ ଲୋକ ଖୁସିବାସିରେ ମାତିଥାଆନ୍ତି । ଆମ ଘର ଠିକ୍ ଗାଁ ମଝିରେ । ଗାଁର ସ୍ତ୍ରୀ ପୁରୁଷ ସମସ୍ତେ ଏକାଠି ହୋଇ ଗୀତ ଗାଉଥାଆନ୍ତି; ଜହ୍ନ ଆଲୁଅରେ ପିଲାମାନେ ପରସ୍ପରକୁ ଡାକଦେଇ ଦାଣ୍ଡରେ ଖେଳିବାରେ ଲାଗିଥାଆନ୍ତି । ସମୟ ରାତି ଆଠଟା । ଆମ ଘରେ ଭୋଷାଇବାସ ସରିଥାଏ । ଖିଆପିଆ କରିବା ପାଇଁ ମ୍ୟାଗି (୧) ଓ ମୁଁ ଘରର ଅନ୍ୟ-ମାନଙ୍କୁ ଡାକିବାକୁ ବାହାରିଛୁ ହଠାତ୍ ଏତିକବେଳେ 'ଚୁରେଲ୍'ର କଲକଲା ରଡ଼ି ରାତିର ବୁକୁ ଚିରି ଭାସିଆସିଲା । ଆମେ ଦୁହେଁ ସେଇଠି ଅଟକି ଛିଡ଼ାହୋଇଗଲୁ । ତେଣେ ନିଆଁରେ ପାଣି ପଡ଼ିଲାପରି ପାଟିତୁଣ୍ଡ ଓ ଗାଉଣା ବାଜଣା ସବୁ ଥମିଯାଇ ଗାଁସାରା ଶୂନଶାନ ହୋଇଗଲା ।

ଆମ ଘରଠାରୁ ପ୍ରାୟ ପଚାଶ ଗଜ ଛଡ଼ାରେ ହତା ଡାହାଣ କୋଣରେ ବୁଢ଼ା

---

(୧) ଲେଖକଙ୍କ ଭଉଣୀ । ଲେଖକଙ୍କ ସବୁ ବହିରେ ତାଙ୍କ ବିଷୟ ଉଲ୍ଲେଖ କରାଯାଇଛି ।
—ଅନୁବାଦକ

Digitized by srujanika@gmail.com

ହାଲ୍‌ଦୁ ଗଛଟିଏ । ଈଗଲ୍, ଛଞ୍ଚାଣ, ଚିଲ ଓ କଳାବାଜେଣିଠାରୁ ଆରମ୍ଭକରି କୁଆ, ଶାଗୁଣା ଆଦି ନାନା ପକ୍ଷୀ ବର୍ଷ ବର୍ଷ ଧରି ସେଥିରେ ବସା କରିବା ଫଳରେ ବକଲା ଗୁଡ଼ି ଗଛଟିର ଅଗଡାଳଗୁଡ଼ିକ ମରି ଧୂଙ୍ଗା ହୋଇଯାଇଥିଲା । ସେଦିନ ସନ୍ଧ୍ୟାବେଳକୁ କାଳୁଆ ଉତ୍ତର ପବନ ବନ୍ଦ ଖୁବ୍ ଥଣ୍ଡା ପଡ଼ିଥିବାରୁ ଦାଣ୍ଡକବାଟ ଆମେ କିଳିଦେଇଥିଲୁ । ମ୍ୟାଗି ଓ ମୁଁ କବାଟ ଫିଟାଇ ପଦାକୁ ବାହାରିପଡ଼ିଲୁ, ଠିକ୍ ଏହିକବେଳେ ହାଲ୍‌ଦୁଗଛ ଅଗଡାଳରୁ 'ଚୁରେଲ' ପୁଣି ଥରେ ରଡ଼ି କରିଉଠିଲା । ସେ ଆଡ଼େ ଅନାଇଦେଇ ଦୁହେଁ ଦେଖିଲୁ ଯେ ତଥାକଥିତ 'ଚୁରେଲ୍'ଟି ଆମରି ହାଲ୍‌ଦୁ ଗଛ ଅଗରେ ହିଁ ବସି ବୋବାଉଛି ।

ସ୍ୱରଦ୍ୱାରା ଅନୁକରଣ କରି ଶବ୍ଦ ବିଷୟରେ ସଠିକ୍ ଧାରଣା ଦେଇହୁଏ । ବର୍ଣ୍ଣନା ଦ୍ୱାରା ତାହାକୁ ରୂପଦେବା ଆଦୌ ସହଜ ନୁହେଁ । 'କାଠହଣା ଠକ୍ ଠକ୍ କରି ଗଛକୁ ଖୁମ୍ପୁଛି' ବୋଲି ଲେଖିଲେ ସେ ଶବ୍ଦଟି ବିଷୟରେ ଅନ୍ତତଃ କିଛିଟା ଧାରଣା କରିହେବ; କିନ୍ତୁ ସେଦିନ 'ଚୁରେଲ୍'ର ଯେଉଁ ଡାକ ଆମେ ଶୁଣିଲୁ, ତାକୁ ବର୍ଣ୍ଣନା କରିବା ପାଇଁ ଉପଯୁକ୍ତ ଭାଷା ମୁଁ ପାଉନାହିଁ । 'ଏକ ଅଶାନ୍ତ ଆତ୍ମାର ବିକଟ ଆର୍ତ୍ତନାଦ' କିମ୍ବା 'ଯନ୍ତ୍ରଣା-ଗ୍ରସ୍ତ ମାନବର ବିକଳ ଚିତ୍କାର' ଆଦି ଉପମାଦ୍ୱାରା ବର୍ଣ୍ଣନା ହୁଏତ ବଳିଷ୍ଠତର ହୋଇ-ପାରେ, କିନ୍ତୁ ଅସଲ ଶବ୍ଦ ସମ୍ବନ୍ଧରେ ସେଥିରୁ ସୂଚନା ମିଳିବନାହିଁ । ଜଙ୍ଗଲର କୌଣସି ପଶୁର ଗର୍ଜନ ବା ପକ୍ଷୀର ରାବ ସହିତ ତାକୁ ତୁଳନା କରାଯାଇ ନ ପାରେ । କେବଳ ଜଙ୍ଗଲରେ କାହିଁକି, ନିଜେ କାନରେ ଶୁଣି ନଥିଲେ ସମଗ୍ର ଜୀବଜଗତରେ କୌଣସି ପ୍ରାଣୀ ସେପରି ବିକଟ ଶବ୍ଦ କରିବା ସମ୍ଭବ ବୋଲି ମୁଁ କଦାପି ବିଶ୍ୱାସ କରି ନ ଥାଆନ୍ତି । ସେ ଶବ୍ଦ ଏତେ ଭୟଙ୍କର ଯେ ଥରେ ଶୁଣିଦେଲେ ହୃତ୍‌ପିଣ୍ଡ ଶିଥିଳ ହୋଇଯାଇ ଶିରାପ୍ରଶିରାରେ ରକ୍ତର ସ୍ରୁଅ ଜମାଟ ବାନ୍ଧିଗଲା ପରି ଲାଗିବ । ସେଥିପୂର୍ବରୁ ଥରେ ଦୁଇଥର ସେଭଳି ଶବ୍ଦ ବହୁଦୂରରୁ ଶୁଣିଥିଲି ଏବଂ ତାହାକୁ ପେଚ୍ଚାଜାତୀୟ କୌଣସି ପକ୍ଷୀର ରାବ ବୋଲି ଭାବିଥିଲି । କୁମାୟୁଁ ଅଞ୍ଚଳର ପ୍ରତ୍ୟେକ ପକ୍ଷୀର ରାବ ସହିତ ମୁଁ ଅତି ଘନିଷ୍ଠଭାବରେ ପରିଚିତ । ଏଠାକାର କୌଣସି ପକ୍ଷୀ ସେଭଳି ଶବ୍ଦ କରନ୍ତି ନାହିଁ ବୋଲି ଜାଣିଥିବାରୁ ମୁଁ ସନ୍ଦେହ କରୁଥିଲି ଯେ ସମ୍ଭବତଃ ଦୂରଦୂରାନ୍ତରୁ ଉଡ଼ିଆସିଥିବା ଯାଯାବର ପକ୍ଷୀଟିଏ ସେପରି ରାବ ଦେଉଥିବ । ଶବ୍ଦଟିକୁ ଏବେ ପାଖରୁ ଶୁଣି ସନ୍ଦେହ ମୋଚନ କରିବାର ସୁବର୍ଣ୍ଣ ସୁଯୋଗ ମୋତେ ମିଳିଗଲା । ପ୍ରଥମ ମହାଯୁଦ୍ଧ ସମୟର ଭଲ ଦୂରବୀଣଟିଏ ଆମ ଘରେ ଥିଲା; ସମର-କ୍ଷେତ୍ରରେ ଜର୍ମାନୀପକ୍ଷର କମାଣସବୁର ପର୍ଯ୍ୟବେକ୍ଷଣ କରିବା ପାଇଁ ତାହା ବ୍ୟବହାର କରାଯାଉଥିଲା । ଦୂରବୀଣଟି ଆଣି ହାଲ୍‌ଦୁ ଗଛ ଅଗଡାଳରେ ବଡ଼ ଚଢ଼େଇଟିଏ ବସିଥିବା ସ୍ପଷ୍ଟଭାବେ ଦେଖିଲି; କିନ୍ତୁ ଝାପ୍‌ସା ଜହ୍ନ ଆଲୁଅରେ ଚଢ଼େଇଟିକୁ ଚିହ୍ନଟ କରିପାରିଲି ନାହିଁ । ପକ୍ଷୀଙ୍କ ସମ୍ବନ୍ଧରେ ମୋଠାରୁ ଅଧିକ ଜ୍ଞାନ ଥିବା କୌଣସି ବ୍ୟକ୍ତି ବିବରଣୀରୁ କାଳେ ତାକୁ ଚିହ୍ନଟ କରିପାରିବେ—ଏହି ଆଶାରେ ଚଢ଼େଇଟିକୁ ଏଠାରେ ବର୍ଣ୍ଣନା କରୁଛି ।

ଚଢ଼େଇଟି ଆକାରରେ ସୁନେଲି ଈଗଲଠାରୁ ସାନ, ତାର ଗୋଡ଼ ଦୁଇଟିର

Digitized by srujanika@gmail.com

ଲମ୍ବ କନ୍ଥ ଧଗଲ ଅପେକ୍ଷା ବେଶୀ । ପୁଚ୍ଛ ଶ୍ରେଷ୍ଠ ହେଲେ ମଧ ପେଚ୍ଚପଗ ଅତ ଶ୍ରେଷ୍ଠ ନୁହେଁ । ତା ମୁଣ୍ଡ ମଧ ପେଚ୍ଚପର ବଡ଼ ବା ଗୋଲ ନୁହେଁ କମ୍ବା ବେକ ସେତେ ସାନ ନୁହେଁ । ମୁଣ୍ଡରେ ତାର ଶିଖା ବା ଚୂଳ ଦେଖିଲ ନାହିଁ । ଚଢ଼େଇଟିର ରଙ୍ଗ କଳା ବୋଲ ମନେ ହେଲ । ତେବେ ଗାଢ଼ମାଟିଆ ରଙ୍ଗ ଜହ୍ନଆଲୁଅରେ କଳା ଦେଖାଯାଏ ଥିବାରୁ ସେ ବଷୟରେ ନଶ୍ଚିତ ମତ ଦେଇପାରୁନାହିଁ । ଲମ୍ବ ଲମ୍ବ ଗୋଡ଼ ଦୁଇଟି ଯୋଗୁ ଡାଳରେ ବସିଥିବା ଅବସ୍ଥାରେ ମଧ ଚଢ଼େଇଟି ଛୁଡ଼ା ହେଲପରି ଦଶୁଥାଏ । ପ୍ରତ ଅଧ-ମିନଟ୍ ଅନ୍ତରରେ ସେ ଉପରକୁ ମୁଣ୍ଡ ଟେକ ଉଚ୍ଚସ୍ୱରରେ ରାବ ଦେଉଥାଏ ।

ସେଠାରୁ ଅଳ୍ପ ଛଡ଼ାରେ ମୋର ୨୮ ବୋର ଛର୍‌ରା ବନ୍ଧୁକ ଓ ହାଲୁକା ରାଇଫଲ୍‌ଟି ଆଲମାରରେ ଥୁଆହୋଇଥିଲ । ଚଢ଼େଇ ଯେତେ ଦୂରରେ ବସିଥିଲ, ଛର୍‌ରା ତା ପାଖଯାଏ ଯାଇ ନ ଥାଆନ୍ତା । ଏଣେ ରାଇଫଲରୁ ଗୁଳ ଷ୍ଟ୍ରେଟ ଚଳାଇ ଲକ୍ଷ୍ୟଭ୍ରଷ୍ଟ ହେଲେ ଚଢ଼େଇଟି 'ଚୁରେଲ୍' ବୋଲ୍ ଲୋକଙ୍କ ବଶ୍ୱାସ ଆହୁରି ଦୃଢ଼ହେବ, ତା ବରୁଦ୍ଧରେ ରାଇଫଲ୍ ମଧ କାଟ୍ କଲନାହିଁ ବୋଲ୍ କହବାକୁ ସେମାନେ ସୁଯୋଗ ପାଇ-ଯିବେ । ତେଣୁ ଅସ୍ପଷ୍ଟ ଜହ୍ନ ଆଲୁଅରେ ରାଇଫଲ୍‌ର ଷ୍ଟ୍ରେଟ ଗୁଳ ଉପରେ ନର୍ଭର କରବା ଅପେକ୍ଷା କଛ୍ଛ ନ କରବାକୁ ହିଁ ଶ୍ରେୟସ୍କର ମନେକଲ । ମୁଁ ନରୁପାୟ ହୋଇ ଛୁଡ଼ା ହୋଇଥିବା ଭିତରେ ଚଢ଼େଇଟି ପରେ ପରେ ପ୍ରାୟ କୋଡ଼ିଏ ଥର ରାବ ଦେଲ ଓ ତା' ପରେ ଡେଣା ମେଲଇ ଅନ୍ଧାରରେ କୁଆଡ଼େ ଉଡ଼ିଗଲ । ଗାଁଯାକ ଲୋକେ ତାଟିକବାଟ କଲ ରାତତମାମ୍ ଉନ୍ନ ହୋଇ ଘରେ ପଶିଲେ । ପରଦନ ସକାଳୁ ମଧ 'ଚୁରେଲ' ସମ୍ବନ୍ଧରେ କାହାର ମୁହଁରୁ ପଦେହେଲେ କଥା ଶୁଣିବାକୁ ମିଳଲ ନାହିଁ । ମୋର ପୁରୁଣା ବନ୍ଧୁ କୁଅଁର ସିଂ ଏ ଅଞ୍ଚଳର ଜଣେ ପ୍ରଖ୍ୟାତ ଶ୍ଚେଚ୍ଚ ଶିକାରୀ (୧) । ଜଙ୍ଗଲ ଭିତରେ 'ବାଘ' ଶବ୍ଦଟି ତୁଣ୍ଡରେ ଧରବାକୁ ବାରଣ କର ସେ ମୋତେ ଥରେ ଚେତାଇ କହଥିଲେ ଯେ ସେପରି କଲେ ଅମଙ୍ଗଳ ଘଟିବ ଓ ବାଘ କୁଆଡ଼ୁ ହେଲେ ଆସି ହାଜର ହୋଇଯିବ । ପାର୍ବତ୍ୟ ଅଞ୍ଚଳର ଲୋକେ ଏଥିରେ ବଶ୍ୱାସ କରନ୍ତି ଓ ଭୟରେ 'ଚୁରେଲ୍' ଶବ୍ଦଟି କେହି ଉଚ୍ଚାରଣ କରନ୍ତି ନାହିଁ ।

ଗାଁର ଆମେ ଦୁଇଟି ବଡ଼ ବଡ଼ ପରବାର ପ୍ରତବର୍ଷ ଶୀତଦନ କଟାଇବାକୁ କାଲାଦୁଙ୍ଗୀ ଆସୁ । ମୋ ସାନଭାଇକୁ ବାଦ୍‌ଦେଲେ ଦୁଇ ପରବାରର ପିଲାଙ୍କ ସଂଖ୍ୟା ଚଉଦ । ମୋ ସାନଭାଇ ସେତେବେଳେ ନହାତ ସାନପିଲା । ଆମ ସଙ୍ଗରେ ନାଲରେ ଗାଧୋଇବାକୁ କମ୍ବା ବଣରୁ ଜାଳ ଗୋଟାଇ ସଞ୍ଜବେଳେ ଅଗି ଜଳାଇବାକୁ ତାକୁ ଛଡ଼ାଯାଏ ନାହିଁ । ବାକ ଚଉଦଜଣଙ୍କ ଭିତରେ ଥାଆନ୍ତି ନଅରୁ ଅଠର ବର୍ଷ ବୟସର ସାତଜଣ ଝିଅ ଓ ଆଠରୁ ଅଠର ଭିତରେ ଆମେ ସାତଜଣ ପୁଅ । ବୟସରେ ସବୁଠାରୁ ସାନ ହୋଇଥିବାରୁ

(୧) 'ମୋର ଭାରତ' ବହିଟି ଦ୍ରଷ୍ଟବ୍ୟ—ଅନୁବାଦକ ।

Digitized by srujanika@gmail.com

ସମସ୍ତଙ୍କ ଆର୍ଦ୍ଦେଲି ଆଜ୍ଞାଧାରୀ ମୋତେ ହିଁ ସାଜିବାକୁ ପଡ଼େ । ଯେଉଁ କାମ କରିବାକୁ ମୁଁ ସବୁଠାରୁ ବେଶି ନାରାଜ, ଶେଷରେ ସେହି କାମସବୁ ମୋର ଉପରେ ଲଦି ଦିଆଯାଏ ।

ଆମ ଘରବାଡ଼ି ଚଉକିଡ଼ାର ତଳମୁଣ୍ଡରେ ନାଳଟିଏ । ରବିବାର ଛଡ଼ା ଅନ୍ୟ ସବୁଦିନେ ଆମ ଦୁଇଘରର ଝିଅମାନେ ମିଶି ନାଳରେ ଗାଧୋଇବାକୁ ଯାଆନ୍ତି । (ରବିବାର ଦିନ ସେମାନେ କାହିଁକି ଗାଧାନ୍ତି ନାହିଁ, ତାର କାରଣ ଏପର୍ଯ୍ୟନ୍ତ ମୋତେ ଜଣାନାହିଁ ।) ଏସବୁ ଅନେକ ଦିନ ତଳର କଥା । ଖ୍ରିଷ୍ଟାବ୍ଦର ସମ୍ବନ୍ଧରେ ଭିକ୍ଟୋରିଆଯୁଗର କଡ଼ା ନିୟମମାନ ପୁରାପୁରି ଚାଲୁରହିଥାଏ । ଝିଅମାନେ ଗାଧୁଆ ପୋଷାକ ପିନ୍ଧିବା ତ ଦୂର କଥା, ସେମାନେ ଗାଧୋଇଲା ବେଳେ ମୋଭଳି ଗ୍ରେଟ ପିଲାଙ୍କ ଛଡ଼ା ପୁରୁଷ ଲୋକ କେହି ଗାଧୁଆ ଭୂଠର ପାଖ ପଶିବା ବାରୁଣରେ କଡ଼ାକଟକଣା ଥାଏ । ଫଳରେ ଭୂଠ ପାଖରେ ପହରା ଦେବା ଆଉ ଲୁଗାପଟା ଓ ତଉଲିଆ ସବୁ ବୋହିବାର ଭାର ମୋ'ର ଉପରେ ପଡ଼େ । ଭୂଠ ଆରପାଖ ନାଳବନ୍ଧରେ ଚଲାବାଟଟିଏ । ଲୋକେ କାଳେଣି କାଠ ସାଉଣ୍ଟିବା ପାଇଁ ବା ସୋଠମୁହଁ ସଫା କରିବା ପାଇଁ ବେଳେ ବେଳେ ସେବାଟେ ଚାଲି ଆସନ୍ତି । ପୁରୁଷଲୋକ କେହି ଅକସ୍ମାତ୍ ଭୂଠ ଆଡ଼କୁ ଚାଲିଆସିଲେ ଶୀଘ୍ର ସେମାନଙ୍କୁ ଚେତାଇ ଦେବାକୁ ଝିଅମାନେ ମୋତେ କଡ଼ା ନିର୍ଦ୍ଦେଶ ଦେଇଥାନ୍ତି । ସମସ୍ତଙ୍କ ଗାଧୁଆ ଓ ଲୁଗାବଦଳା ସରିବାଯାଏ ଚଲାବାଟ ଉପରେ ତୀକ୍ଷ୍ଣ ନଜର ରଖି ମୋତେ ଭୂଠ ପାଖରେ ପହରା ଦେବାକୁ ପଡ଼େ ।

ଭୂଠ ପାଖରେ ନାଳଟି ଦଶଫୁଟ ଓସାର ଓ ତିନିଫୁଟ ଗଭୀର । ଦୁଇପାଖ ବନ୍ଧ ସେଠାରେ ପକ୍କା କରାଯାଇଥାଏ । ଗାଧୁଆ ଭୂଠରୁ ଅଳ୍ପ ଦୂରରେ ସୋଠବାଟେ ନାଳରୁ ଆମ ବଗିଚାକୁ ପାଣି ମଡ଼ାଯାଏ । କୁମାୟୁଁ ଅଞ୍ଚଳର ପୂର୍ବତନ ଶାସନକର୍ତ୍ତା ସାର୍ ହେନେରି ରାମ୍‌ସେ (କୁମାୟୁଁର ରାଜା') (୧) ଅନୁରୋଧ କରି ସୋଠମୁହଁ ପାଖରେ ନାଳଟିକୁ ଛଅଫୁଟ ଗଭୀରରେ ଖୋଳାଇ ଦେଇଥିଲେ । ପ୍ରଥମଦିନ ଘରୁ ବାହାରିବା ପୂର୍ବରୁ ଝିଅମାନଙ୍କୁ ସୋଠ ତଳ ଗଭୀର ପାଣିକୁ ନ ଗୁଡ଼ିବାକୁ ବଡ଼ବଡ଼ିଆମାନେ ମୋତେ ହିଁ ବାରମ୍ବାର ତାଗିଦ୍ କରିଥାଆନ୍ତି । ପାଣିରେ ପଶିବାମାତ୍ରେ ବେକଯାଏ ବୁଡ଼ି କମ୍ପିପଡ଼ିବା ଝିଅମାନଙ୍କର ଦସ୍ତୁର । ହଠାତ୍ ପାଣିରେ ବସିପଡ଼ିଲେ ଭୁଡ଼ୁକା ଉଠି ଲୁଗାପଟା ଟେକି ହୋଇଯାଏ । ଲୁଗାପଟା ସଜଡ଼ା ସରିବାଯାଏ ଗାଧୁଆ ଭୂଠକୁ ପିଠିକରି ବସିବାକୁ ମୋତେ ହୁକୁମ ଦିଆଯାଏ । ଏଭଳି ପରିସ୍ଥିତି ବାରମ୍ବାର ଘଟିବା ଫଳରେ ଅଧିକାଂଶ ସମୟ ନାଳ ଆଡ଼କୁ ପଛକରି ମୋତେ ବସିବାକୁ ପଡ଼େ । ସେତିକବେଳେ ସମସ୍ତଙ୍କ ଅଗୋଚରରେ ନାଳ ଆରବନ୍ଧ ଚଲାବାଟରେ ଲୋକ କେହି ଚାଲିଆସିଲେ ସେଥିପାଇଁ ମୋତେ ହିଁ ସମ୍ପୂର୍ଣ୍ଣ ଦାୟୀ ଓ ଦୋଷୀ ସାବ୍ୟସ୍ତ କରାଯାଏ ।

ଭୂଠକୁ ପଛ କରି ମନ ମାରିଦେଇ ମୁଁ ନାଳବନ୍ଧରେ ବସି ପହରା ଦେଲାବେଳେ

(୧) 'ମୋର ଭାରତ' ବହିଟି ଦ୍ରଷ୍ଟବ୍ୟ—ଅନୁବାଦକ ।

Digitized by srujanika@gmail.com

ତେଣେ ମୋ ସାଙ୍ଗସାଥୀମାନେ ମହା ଆନନ୍ଦରେ ବନ୍‌ଶୀଛଡ଼ ଧରି ନାଳମୁହଁରୁ ମାଛ ମାରିବାକୁ ବାହାରି ଯାଆନ୍ତି । ପ୍ରତ୍ୟେକର ହାତରେ ତାର ଛୁଟିକିଣିଟି ଥାଏ । ଶିମିଳି ଗଛ ଅଗରୁ ଫୁଲଟିକୁ କିଏ ଝଡ଼ାଇଦେବ ବା ନାଳ ଆରପାଖ ଡିମିରି ଗଛର ବକଲା କିଏ ଫୁଟାଇ ଦେଇପାରିବ—ବାଟସାରା ଏହି ଧରଣର ପ୍ରତଦ୍ୱନ୍ଦ୍ୱିତା ଅନବରତ ଚାଲିଥାଏ । ଗୋଡ଼ ବାଜି ଡିମିରି ଗଛର ବକଲା ଫୁଟି ଦୁଧପରି ଧଳା ଧଳା ରସ ନ ଝରିଲେ ମାଡ଼ ଠିକ୍ ହେଲନାହିଁ ବୋଲି ଧରାଯାଏ । ବାଟ କଡ଼ ଗଛପତ୍ରରେ ପକ୍ଷୀଙ୍କର ମଧ୍ୟ ଅଭାବ ନ ଥାଏ ।



ଚୂଳିଆ କଜଳପାତି, ହଳଦିବସନ୍ତ ଓ ଗୋଲପି ମଇନା ଶିମିଳି ଫୁଲରୁ ମହୁ ଶୋଷିବାରେ ଲଗିଥାଆନ୍ତି । ସବୁଜ ରଙ୍ଗର ସାଧାରଣ ଶୁଆଙ୍କ ସହିତ ଧୂସରା ଓ ଚନ୍ଦନା ଶୁଆ ମିଶି ଶିମିଳି ଫୁଲର ଡେମ୍ଫ ଭାଙ୍ଗିଦିଅନ୍ତି ଓ ମାଉିସିଆ କଅଁଳ ପାଖୁଡ଼ା-ଗୁଡ଼ିକରୁ ଅଳ୍ପ ଟିକିଏ ଖାଇଲାପରେ ଦର-ଖିଆ ଫୁଲଗୁଡ଼ିକୁ ତଳକୁ ପକାଇ ଦିଅନ୍ତି । ଶିମିଳି ଫୁଲ ହରିଣ ଓ ବର୍‌ହାଙ୍କର ଅତି ପ୍ରିୟ ଖାଦ୍ୟ । ଝଡ଼ା ଫୁଲ ଖାଇବା-ପାଇଁ ହରିଣ ଓ ବାର୍‌ହା ଶିମିଳିଗଛ ମୂଳରେ ଆସି ରୁଣ୍ଡ ହୁଅନ୍ତି । ନାଳକୂଳ ଗଛରୁ ହୁରୁଡ଼ ଯାଇଥିବା କଳାକଳା ଚଢ଼େଇଟି (୧) ପାଣିକୁ ଛୁଇଁ ନ ଛୁଇଁଲା ପରି ନାଳ ଉପରେ ଚକ୍ର ମାରି ଖଣ୍ଡିଉଡ଼ା ଦିଏ । ନାଳକୂଳ ଅଶ୍ୱତ୍ଥ ଗଛରେ ବସା କରିଥିବା ମାଇ ପେଚାଟି ଆଗରୁ ହିଁ ବସିଆଉ ଥାଏ । ପିଲାଏ ଆସୁଥିବାର ସୂଚନା ପାଇବାମାତ୍ରେ ସେ ଗହଳ ଲଟାପତ୍ରର ଆଢ଼ୁଆ ଭିତରକୁ ପଶିଯାଇ ଲୁଚେ । ତା ସତ୍ତ୍ୱେ ପିଲାଙ୍କ ଦାଉରୁ ସେ ରକ୍ଷା ପାଏନାହିଁ ।

ମା' ଭଉଣୀମାନଙ୍କ ସିଲାଇପେଡ଼ିରୁ ଚୋରାଇ ଅଣାଯାଇଥିବା ସୂତା ବାଉଁଶକଣିରେ ବନ୍ଧା ହୋଇ ବନ୍‌ଶୀ ତିଆରି ହୋଇଥାଏ । ଦଙ୍କା ପିନ୍‌କଣ୍ଟା କେତୋଟି ବନ୍‌ଶୀ କଣ୍ଟାର କାମ ତୁଲାଏ । ଚକଟା ଅଟାର ଗୁଳାମାନ ସେଥିରେ ଗୁନ୍ଥାଯାଇ ଥୋପ ପଡ଼େ । ନାଳମୁହଁରେ ପହଞ୍ଚିବାମାତ୍ରେ ଜବାଜବରେ ମାଛଧରା ଆରମ୍ଭ ହୋଇଯାଏ । ନାଳରେ ମାଛ ହାଉଯାଉ ହେଉଥାନ୍ତି; ସେଭଳି ବଟଖ ଉପକରଣମାନ ବ୍ୟବହାର କରି ମଧ୍ୟ ଛୋଟ ଛୋଟ ଖେଳୁରା ମାଛ କେତୋଟି ମରନ୍ତି । ଶେଷରେ କାହାର ଦେହସିଆରରୁ ଅଟାଗୁଳାତକ

(୧) ମାଛରଙ୍କା ଜାତୀୟ ପକ୍ଷୀବିଶେଷ ( crested pied kingfisher)

—ଅନୁବାଦକ ।

Digitized by srujanika@gmail.com

ପାଣିରେ ପଡ଼ଯାଏ । ପିଲଏ ମାଛଧର୍‍ ଗ୍ଳଡ଼ ଲୁଗାପଟା ଖୋଲ୍ କୁଦାମାର ପାଣିରେ ପଡ଼ନ୍ତ ଓ ଆର ବନ୍ଧରେ କଏ ଆଗ ପହଞ୍ଚବ—ସେଥିପାଇଁ ବାଜ ମାର ପହଁରିବାକୁ ଲଗନ୍ତ । ସାଙ୍ଗସାଥୀମାନେ ଏଭଳି ଖେଳକୌତୁକରେ ମାତିଥିବାବେଳେ ସେଠାରୁ ମାଇଲଏ ଦୂର ଗୁଠକୁ ପଛକର ମୁଁ ମୁହଁ ଶୁଖାଇ ବସିଥାଏ । ସେ ଭିତରେ ବୁଢ଼ା କାଠୁରିଆ ଜଣେ କାଠଗୋଛ ମୁଣ୍ଡାଇ ନାଲି ଆରବନ୍ଧକୁ ଯଦି ଗ୍ଳଲଆସିଲ, ଝିଅମାନଙ୍କୁ ଚେତାଇ ନ ଦେବା ଦୋଷରୁ ମୋ ଉପରେ ଗାଳି ବର୍ଷିଯାଏ !

ଝିଅମାନଙ୍କ ପାଖରେ ବେଠି ଖଟିବାରେ ଯେ କୌଣସି ଲଭ ନ ଥିଲ, ତାହା ନୁହେଁ । ନାନାପ୍ରକାର ଫନ୍ଦଫିକର କର ଦୁଇ ପରବାରର ପୁଅମାନଙ୍କୁ ବୋକା ବନାଇବାରେ ଝିଅମାନେ କେହି କାହାକୁ ଊଣା ନ ଥିଲେ । ମହଲା ମହଲର ଅବୈତନକ ପରଷ୍ମରକଭବେ ମୁଁ ବିଶ୍ବାସଭଜନ ହୋଇପାରଥିବାରୁ ମୋଠାରୁ ସେ ସବୁ ଷଡ଼ଯନ୍ତ ଓ କଳକୌଶଳ ଗୋପନ ରଖାଯାଉ ନଥିଲ ।

କେବଳ ମୋ'ର ଛଡ଼ା ଅନ୍ୟ ପୁଅପିଲଙ୍କୁ ଅଳ୍ପ ବହୁତ ହଇର୍‍ଣ କର୍‍ଯାଉଥିଲେ ମଧ୍ୟ ଝିଅମାନେ ଡାନ୍‌ସେ ଓ ନୀ'ଲ୍ ଫ୍ଲେମିଙ୍ଗଙ୍କ ଉପରେ ବିଶେଷ ଭବରେ ଦାଉ ସାଧୁଥିଲେ । ଡାନ୍‌ସେ ଓ ନୀ'ଲ୍ ଦୁହେଁ ଆଇର୍ଲାଣ୍ଡବାସୀ । ସେଠାକାର ସବୁ ବାସିନ୍ଦାଙ୍କ ପର ସେ ଦୁହେଁ ମଧ୍ୟ ଆଡ଼ବାଯ୍ବା ବୋଲି ସମସ୍ତେ ଗ୍ରହଣ କର ନେଇଥାଆନ୍ତ । ଆର୍ଥିକ ଦୁରବସ୍ଥା ଦୃଷ୍ଟିରୁ ଦୁହେଁ ସମାନ ହୋଇଥିଲେ ମଧ୍ୟ ଦୁହିଁଙ୍କ ଚେହେର୍‍ ଓ ସ୍ୱଭବ ଭିତରେ ଆକାଶପାତାଳ ପ୍ରଭେଦ । ଡାନ୍‌ସେ ଅଳ୍ପ ଉଚ, ଲେମଶ ଓ ପ୍ରବଳ ବଳବାନ୍ । ନୀ'ଲ୍ ଡେଙ୍ଗା ଓ ତାହାଳଆ; ବର୍ଣ୍ଣ ତାଙ୍କର ଫର୍ଚ୍ଚା ଗୋର୍‍ ଏବଂ ଦେହ କ୍ଷୀଣ ଓ ଦୁର୍ବଳ । ଡାନ୍‌ସେ ତାଙ୍କର ଦାଉଖୁନ୍ଦା ବନ୍ଧୁକଟି କାନ୍ଧେଇ ଜଙ୍ଗଲରେ ଏକାକୀ ବୁଲି ବୁଲି ବାଘ ଶିକାର କରିବାକୁ ପଛାନ୍ତ ନାହିଁ । ନୀ'ଲ୍‌ଙ୍କର ଜନ୍ମ ବଣଜଙ୍ଗଲକୁ ଖୁବ ଭୟ; ଶିକାର କରବା ଦୂରେ ଥାଉ, ତାଙ୍କୁ ବନ୍ଧୁକ ମାରବା କେହି କେବେ ଦେଖିନାହିଁ ।

ଡାନ୍‌ସେ ସୈନ୍ୟବାହିନୀର ଜଣେ ଅଧକ୍ଷଙ୍କ ପୁଅ । ସେନାବାହିନୀରେ ଯୋଗ-ଦେବାକୁ ନାମଙ୍ଗ ହେବାରୁ ପିତା ତାଙ୍କୁ ତ୍ୟାଗ କରଥାଆନ୍ତ । ଡାନ୍‌ସେ ମୋ ବଡ଼ଭଇ-ମାନଙ୍କ ସହିତ ପବ୍ଲକ୍ ସ୍କୁଲରେ ପଢୁଥିଲେ । ଜଙ୍ଗଲ ବିଭଗରେ ଗ୍ଳକର ଖଣ୍ଡିଏ ହର୍‍ଇ ସେ ସେତେବେଳେ ସରକାରଙ୍କ ର୍‍ଜନୈତକ ବିଭଗରେ ଯୋଗଦେବାର ସ୍ୱପ୍ନ ଦେଖୁଥାଆନ୍ତ ଏବଂ ବିଗତ ଓ ଅନାଗତ ଗ୍ଳକର ଦୁଇଟିର ମଧ୍ୟାନ୍ତରରେ ଆମର ଅତିଥିଭବେ ସ୍ୱଚ୍ଛନ୍ଦରେ କାଳାତପାତ କରୁଥାନ୍ତ । ନୀ'ଲ୍ ଡାକ-ତାର ବିଭଗରେ ମୋର ବଡ଼ଭଇ ଟମ୍‌ଙ୍କ ସହକାରୀ । ତାଙ୍କ ଗ୍ଳକରଟି ବଡ଼ ନୁହେଁ ବା ଦରମା ସେତେ ବେଶୀ ନୁହେଁ । ସାମ୍ପ୍ରତକ ପରସ୍ଥିତରେ ନୀ'ଲ୍ ଓ ଡାନ୍‌ସେ ଦୁହେଁ ଯେପର ଆର୍ଥିକ ଦୁରବସ୍ଥା ଭିତରେ ଗତି କରୁଥାନ୍ତ —ସେଥିରେ ବିବାହ କରବା ଦୂରେ ଥାଉ, ସେ ବିଷୟରେ ଚନ୍ତା କରବା ମଧ୍ୟ ତାଙ୍କ ପକ୍ଷରେ ଧୃଷ୍ଟତା ହୋଇଥାଆନ୍ତା । ତାହା ସତ୍ତ୍ୱେ ବୟସ ନର୍ବିଶେଷରେ ଆମ ଦୁଇ ପରବାରର ସବୁ ଝିଅଙ୍କ ପାଇଁ ସେ ଦୁହିଁଙ୍କର ଯେତେ ସୁହାଗ ଉଚ୍ଛୁଳଥିଲ—ସେହି ଗୋଟିଏ

Digitized by srujanika@gmail.com

ଦିଗରୁ ଦୁହିଁଙ୍କର ମନୋବୃତ୍ତି ପୂରାପୂରି ସମାନ ଥିଲା ବୋଲି ମାନିନେବାକୁ ପଡ଼ିବ । ଝିଅମାନଙ୍କ ସହିତ ସଦ୍‌ଭାବ ସ୍ଥାପନ କରିବାରେ ଅଦମ୍ୟ ଉତ୍ସାହ ଓ ଅକ୍ଳାନ୍ତ ପ୍ରଚେଷ୍ଟା ସହିତ ପରସ୍ପର ପ୍ରତି ପ୍ରବଳ ବିଦ୍ୱେଷ ଓ ଈର୍ଷା ସେ ଦୁହିଁଙ୍କୁ ସମସ୍ତଙ୍କର ଓ ବିଶେଷ କରି ଝିଅମାନଙ୍କର ପରିହାସର ପାତ୍ର କରିଥିଲା ।

ଦିନେ ଗାଧୁଆତୁଠରେ ପହଁରା ଦେଇ ଦେଇ ଝିଅମାନେ କଥାବାର୍ତ୍ତା ହେଉଥିବା ଶୁଣିଲି ଯେ ଗତଥର କାଲାଢୁଙ୍ଗୀ ଆସିଥିଲାବେଳେ ଟିକିଏ ମୁହଁ ପାଇ ଜୀ'ଲ୍ ବେଶି ମନମୋଟିଆ ଧରିଯାଇଛନ୍ତି । ତେଣେ ଡାନ୍‌ସେ ମଧ୍ୟ ମୁକାବିଲାରୁ ପଛୁଉଥିବାରୁ ଦୁହିଁଙ୍କ ଭିତରେ ପ୍ରତିଦ୍ୱନ୍ଦିତା ଠିକ୍‌ଭାବେ ଜମୁନାହିଁ । ପ୍ରତିଦ୍ୱନ୍ଦିତାକୁ ଯଥାଯଥଭାବେ ଚଲାଇରଖିବା ପାଇଁ ପ୍ରତିଦ୍ୱନ୍ଦ୍ୱୀ ଦୁହିଁଙ୍କୁ ପୁଣି ସମାନ ସ୍ତରକୁ ନେଇଆସିବା ଦରକାର । ତେଣୁ ଜୀ'ଲ୍‌ଙ୍କୁ ଧାପେ ତଳକୁ ଖସାଇ ଆଣି ଡାନ୍‌ସେଙ୍କୁ ଆଉ ଟିକିଏ ଉଠାଇଦେବାକୁ ପଡ଼ିବ ବୋଲି ମସୁଧା ହେଉଥାଏ । ଡାନ୍‌ସେ ବେଶି ମୁହଁ ପାଇଗଲେ ଜୀ'ଲ୍‌ଙ୍କ ପରି ସିଏ ବି ମନମୋଟିଆ ଧରିବେ ବୋଲି କେହି କେହି ମତ ଦେଉଥାଆନ୍ତି । ('ମନମୋଟିଆ' ଧରିଯିବାର ଅର୍ଥ ସେତେବେଳେ ବୁଝି ନ ଥିଲି । ତେବେ ସେ ବିଷୟରେ କାହାକୁ ପଚାରିବାକୁ ସାହସ କଲିନାହିଁ ।) ଢେର୍ ଆଲୋଚନା ପରେ କଥା ଛିଡ଼ିଲା ଯେ ଜୀ'ଲ୍ ଓ ଡାନ୍‌ସେଙ୍କୁ ଏକାଠି ଏମିତି ଗୋଟିଏ ଫାନ୍ଦରେ ପକାଇବାକୁ ପଡ଼ିବ, ଯେଉଁଥିରେ ଜୀ'ଲ୍ ଟିକିଏ ଦବିଯିବେ ଓ ଡାନ୍‌ସେ ପ୍ରତିଦ୍ୱନ୍ଦିତାରେ ଅଂଶଗ୍ରହଣ କରିବା ପାଇଁ ଅଧିକ ଉତ୍ସାହ ପାଇବେ । ଏଥିରେ କିନ୍ତୁ ଟମ୍ ସହଯୋଗ ନ କଲେ କାମ ହାସଲ ହେବ ନାହିଁ ବୋଲି ସମସ୍ତେ ଏକମତ ହେଲେ ।

ଶୀତଦିନେ ନୈନିତାଲ୍ ଡାକ-ତାର ଅଫିସରେ ବେଶି କାମ ନଥାଏ । ଶୀତଦିନଯାକ ପ୍ରତି ପନ୍ଦରଦିନରେ ଥରେ ଶନିବାର ସନ୍ଧ୍ୟାରେ କାଲାଢୁଙ୍ଗୀ ଆସି ସୋମବାର ସକାଳେ କାମରେ ଯୋଗଦେବାକୁ ଟମ୍ ଜୀ'ଲ୍‌ଙ୍କୁ ଅନୁମତି ଦେଇଥାଆନ୍ତି । ନୈନିତାଲରୁ ପନ୍ଦର ମାଇଲ୍ ବାଟ ଚାଲି ଜୀ'ଲ୍ ଗାଁରେ ପହଞ୍ଚିଲା ପରେ ଆମ ଦୁଇ ଘରୁ ଗୋଟିକରେ ତାଙ୍କ ରହଣି ହୁଏ । ଜୀ'ଲ୍ ବେଶ୍ ମେଳାପୀ; ତାଙ୍କ କଣ୍ଠ ମଧ୍ୟ ଖୁବ୍ ମଧୁର । ତେଣୁ ଦୁଇ ପରିବାରର ସମସ୍ତେ ଅତିଥିଭାବେ ତାଙ୍କୁ ସାଦରେ ଗ୍ରହଣ କରନ୍ତି ।

ଜୀ'ଲ୍‌ଙ୍କୁ ହଇରାଣ କରିବା ପାଇଁ ଯୋଜନା ପ୍ରସ୍ତୁତ କରାଗଲା । କଥା ହେଲା ଯେ ଆସନ୍ତା ଶନିବାର ସନ୍ଧ୍ୟାରେ ଟମ୍ ଜୀ'ଲ୍‌ଙ୍କୁ ଟିକିଏ ଡେରିରେ ଛାଡ଼ିବେ ଓ ନୈନିତାଲରୁ ବାହାରିବାବେଳେ କଥାପ୍ରସଙ୍ଗରେ ଶୁଣାଇଦେବେ ଯେ ଗାଁରେ ସେ ପହଞ୍ଚିବାକୁ ବେଶି ଡେରି ହେଲେ ଝିଅମାନେ ସମସ୍ତେ ତାଙ୍କୁ ପାଛୋଟି ନେବାକୁ ଅଧବାଟକୁ ଆଗେଇ ଆସିପାରନ୍ତି । ଏହି ମର୍ମରେ ଟମ୍‌ଙ୍କ ପାଖକୁ ଚିଠି ଲେଖାଗଲା ।

ଗାଁରୁ ଦୁଇମାଇଲ୍ ଦୂରରେ ନୈନିତାଲ ସଡ଼କର ମୋଡ଼ । ମୋଡ଼ ପାଖରେ ସଡ଼କ ଦୁଇକଡ଼ ପାହାଡ଼ ଗଡ଼ାଣିରେ ଗହଳ ଜଙ୍ଗଲ ଓ ବଡ଼ ବଡ଼ ପଥର । ଜୀ'ଲ୍

Digitized by srujanika@gmail.com

ନୈନିତାଲରୁ ଆସିବା ଭିତରେ ତାନ୍‌ସେଙ୍କୁ ଭାଲୁ ଚମର ପୋଷାକଟିଏ ପିନ୍ଧାଇ ମୋଡ଼ ପାଖ ଜଙ୍ଗଲରେ ଗୁଡ଼ିଦେବାକୁ ସୈନିକମାନେ ସ୍ଥିର କରିଥାଆନ୍ତି । କଥା ଥାଏ ଯେ ଜିମ୍‌ଙ୍କ ମୋଡ଼ ବୁଲିବାମାତ୍ରେ ତାନ୍‌ସେ ଭାଲୁ ପରି ଗର୍ଜନ କରି ପଥର ଉହାଡ଼ରୁ ଛୁଟିଆସିବେ ଓ ଜିମ୍‌ଙ୍କ ପ୍ରାଣବିକଳରେ ଚିତ୍କାର କରି ଗାଁଆଡ଼େ ଧାଇଁବା ଭିତରେ ତାନ୍‌ସେ ସେଠାରୁ ଖସି ପଳାଇଯିବେ । ଜିମ୍‌ଙ୍କ ଅତର୍କିଆ ଧାଉଁଥିବାବେଳେ ସୈନିକମାନେ ତାଙ୍କୁ ବାଟରେ ଅଟକାଇ ସବୁ କଥା ଆଦାୟ କରିବେ ଓ ଡରକୁଳା ବୋଲି କହି ତାଙ୍କୁ ହସି ଉଡ଼ାଇ-ଦେବେ । ତାନ୍‌ସେ ସେ ଭିତରେ ପୋଷାକ ଖୋଲି ସେଠାରେ ଆସି ହାଜର ହୋଇଯିବେ ଓ ପରିହାସରେ ଯୋଗ ଦେଇ ଜିମ୍‌ଙ୍କୁ ଆହୁରି ଅପଦସ୍ଥ କରିବେ ।

ପନ୍ଦରଦିନ ତଳେ ଗୋଟିଏ ବଣଭୋଜିରେ ସୈନିକମାନେ ପାଉଁରୁଟି ଭିତରେ ନାଲି କନା ଖଣ୍ଡିଏ ପୁରାଇ ତାନ୍‌ସେଙ୍କୁ ଖାଇବାକୁ ଦେଇଥିଲେ ଓ କନା ଖଣ୍ଡିକ ଘେରାଇ ଦେଇ ତାନ୍‌ସେ ସମସ୍ତଙ୍କ ପରିହାସର ପାତ୍ର ହୋଇଥିଲେ । ଭାଲୁଚମ ପିନ୍ଧିବା ବିରୁଦ୍ଧରେ ତାନ୍‌ସେ ପ୍ରତିବାଦର ସ୍ୱର ତୋଳିବାମାତ୍ରେ ତାଙ୍କୁ ଶୁଣାଇ ଦିଆଗଲା ଯେ ଗତଥର ବଣଭୋଜିରେ ତାଙ୍କୁ ଲୋକହସା କରିବା ପାଇଁ ଜିମ୍‌ହିଁ ପାଉଁରୁଟିରେ କନା ପୁରାଇବାକୁ ସୈନିକମାନଙ୍କୁ ଶିଖାଇଥିଲେ । ଏ କଥା ଶୁଣିବା ପରେ ତାନ୍‌ସେ ଭାଲୁ ସାଜିବାକୁ ଆଉ ନାରାଜ ହେଲେ ନାହିଁ ।

ଶନିବାର ଦିନ ଉପରଓଳି ତାନ୍‌ସେଙ୍କୁ ଭାଲୁଚମରେ ଗୁଡ଼ାଇ ଚମଟିକୁ ସିଲାଇ କରିଦିଆଗଲା । ସୂର୍ଯ୍ୟ ବୁଡ଼ିବାବେଳକୁ ନୈନିତାଲ ସଡ଼କରେ ଲୋକ ଯାତାୟାତ ବନ୍ଦ ହୋଇଯାଏ । ସୈନିକମାନେ ତାନ୍‌ସେଙ୍କୁ ବାଟ କଢ଼ାଇ ମୋଡ଼ ପାଖକୁ ନେଇଗଲେ । ଭାଲୁଚମ ତଳେ ତାନ୍‌ସେ ନିଜ ପୋଷାକପତ୍ର ପିନ୍ଧିଥାଆନ୍ତି, ଉଠିପଡ଼ି ଲସରପସର ହୋଇ ଗରମରେ ଦୁଇ ମାଇଲ୍ ବାଟ ଚାଲି ମୋଡ଼ ପାଖରେ ପହଞ୍ଚିଲାବେଳକୁ ଝାଳରେ ସେ ଗୋଟାପଣେ ଗାଧୋଇ ପଡ଼ିଥାଆନ୍ତି ।

ଟମ୍ ସେତେବେଳେ ଜିମ୍‌ଙ୍କୁ ନାନାପ୍ରକାର କାମ ଦେଇ ନୈନିତାଲରେ ଅଟକାଇ ରଖିଲେ । ବେଳ ଗଡ଼ିଯିବା ଦେଖି ଜିମ୍‌ଙ୍କ ଅସ୍ତବ୍ୟସ୍ତ ହେଲେଣି । ଶେଷରେ ଠିକ୍ ସମୟ ଦେଖି ଟମ୍ ତାଙ୍କୁ ଯିବାକୁ ଅନୁମତି ଦେଲେ ଓ ବାହାରିବା ବେଳେ ନିଜ ଛରା ବନ୍ଧୁକରେ କାର୍ତ୍ତୁଜ୍ ଦୁଇଟି ଭରି ତାଙ୍କୁ ଧରାଇ ଦେଇ କହିଲେ ଯେ ବିଶେଷ ବିପଦ ନ ପଡ଼ିଲେ ବନ୍ଧୁକଟିକୁ ସେ ବ୍ୟବହାର କରିବେ ନାହିଁ । ନୈନିତାଲରୁ କାଲାଦୁଙ୍ଗୀ ଯାଏ ବାଟସାରା ଗଡ଼ାଣି ପଡ଼େ । ସେଥିରୁ ପ୍ରଥମ ଆଠ ମାଇଲ୍ ସଡ଼କ ଦୁଇକଡ଼େ ଚଷଜମି । ତା'ପରେ ଘଞ୍ଚ ଜଙ୍ଗଲ ଭିତରଦେଇ ଶେଷ ସାତ ମାଇଲ୍ ଅତିକ୍ରମ କରି କାଲାଦୁଙ୍ଗୀ ଆସିବାକୁ ହୁଏ ।

ମୁହଁଅନ୍ଧାର ହୋଇଗଲାଣି । ତାନ୍‌ସେ ଓ ସୈନିକମାନେ ପୂର୍ବରୁ ନିରୂପିତ ନିଜ

Digitized by srujanika@gmail.com

ନିଜ ସ୍ଥାନରେ ରହିଯାଉଛନ୍ତି । କିଛି ସମୟ ଅପେକ୍ଷା ପରେ ମ୍ୟା'ଲ୍ ଖୁବ୍ ବଡ଼ପାଟିରେ ଗୀତ ଗାଇ ଗାଇ ଆସୁଥିବା ଦୂରରୁ ଶୁଣାଗଲା । ମ୍ୟା'ଲ୍‌ଙ୍କର ସବୁଦିନେ ବଣଜଙ୍ଗଲକୁ ଖୁବ ଭୟ । ତା'ପରେ ଅନ୍ଧାର ବି ଘୋଟିଆସୁଥାଏ । ସାହସ ବାନ୍ଧିବା ପାଇଁ ମ୍ୟା'ଲ୍ ଉଚ୍ଚସ୍ୱରରେ ଯେମିତି ଗଳାଗ୍ରୁଡ଼ି ଗୀତ ଗାଉଥାଆନ୍ତି, ସେଭଳି ଉଚ୍ଛ୍ୱସିତ ସଂଗୀତ ତାଙ୍କଠାରୁ କେହି କେବେ ଶୁଣି ନଥିଲେ ବୋଲି ଝିଅମାନେ ପରେ କହିଲେ ।

ମ୍ୟା'ଲ୍ ମୋଡ଼ ବୁଲିବାମାତ୍ରେ ତାନ୍‌ସେ ରାସ୍ତାକଡ଼ ପଥର ଉହାଡ଼ରୁ ବାହାରି ପଡ଼ି ଭାଲୁପରି ଗର୍ଜିଉଠିଲେ । ତା'ପରେ ଯାହା ଘଟିଲା, ସେଥିପାଇଁ ତାନ୍‌ସେ ବା ଝିଅମାନେ କେହି ପ୍ରସ୍ତୁତ ନ ଥିଲେ ।

ଦିନେ ନାହିଁ, କାଲେ ନାହିଁ—ମ୍ୟା'ଲ୍ ଯେ ଠିକ୍ ସେହି ଦିନ ବନ୍ଧୁକଟାଏ ଧରିଥିବେ ଏ କଥା କେହି ସ୍ୱପ୍ନରେ ସୁଦ୍ଧା ଭାବିବ କାହିଁକି ? ତାନ୍‌ସେ ଛୁଟିଆସିବା ମାତ୍ରେ ମ୍ୟା'ଲ୍ ଅତର୍କିତରେ ବନ୍ଧୁକ ଉଠାଇ ଦୁଇଟିଯାକ ଗୁଳି ତାଙ୍କ ଗୋଡ଼କୁ ଲକ୍ଷ୍ୟ କରି ଫାୟାର୍ କରିଦେଲେ । ଗୁଳି ଖାଇବା ଫଳରେ 'ଭାଲୁ'ର ଅବସ୍ଥା କଣ ହେଲା, ମ୍ୟା'ଲ୍ ଧୂଆଁ ଭିତରୁ ତାହା ଲକ୍ଷ୍ୟକରି ନ ଥିଲେ; ସେ ଆଡ଼େ ନଜର ଦେବାକୁ ବି ତାଙ୍କର ତର ନ ଥିଲା । ପ୍ରାଣବିକଳରେ ସେ ଗାଁ ଆଡ଼େ ଧାଇଁବା ଭିତରେ 'ଭାଲୁଟା' ରାସ୍ତାକଡ଼ ଗଡ଼ାଣିରେ ଗଡ଼ି ଗଡ଼ି ତଳକୁ ଯିବାର ଶବ୍ଦ କେବଳ ସେ ଶୁଣିଥିଲେ ।

ସଡ଼କ ଉପରେ ଝିଅମାନଙ୍କ ଭେଟ ପାଇବାମାତ୍ରେ ମ୍ୟା'ଲ୍ ବନ୍ଧୁକଟି ଦେଖାଇ ନିଜ କରାମତି ବଖାଣି କରି କହିଲେ ଯେ ମୋଡ଼ ଉପରେ ପ୍ରକାଣ୍ଡ ଗୋଟାଏ ଭାଲୁର ଆକ୍ରମଣକୁ ପ୍ରତିହତ କରି ସେ ତାକୁ ପ୍ରାଣରେ ମାରିଦେଇଛନ୍ତି । ତାଙ୍କ କଥା ଶୁଣି ଝିଅମାନଙ୍କ ହୃଦୟ ଶୁଖିଗଲା । 'ଭାଲୁ' କାହିଁ ବୋଲି ସେମାନେ ଡରିମରି ପଚାରିବାରେ ମ୍ୟା'ଲ୍ ବୀରଦର୍ପରେ ପାହାଡ଼ତଳକୁ ଅଙ୍ଗୁଳି ଦେଖାଇ କହିଲେ ଯେ ମଲା ଭାଲୁଟା ଗଡ଼ି ଗଡ଼ି ଯାଇ ପାହାଡ଼ତଳେ କେଉଁଠି ପଡ଼ିଛି ଓ ସେ ତାର ଦଫା ନିକାଶ କରି ଦେଇଥିବାରୁ ଝିଅମାନଙ୍କର ଭୟର ଆଉ କୌଣସି କାରଣ ନାହିଁ । ଦଳକଯାକ ଝିଅଙ୍କ ଅବସ୍ଥା କହିଲେ ନ ସରେ । ଯିମିତି ଖେଳରୁ ଏବେ ଯେଉଁ ମହାଭାରତ ସୃଷ୍ଟି ହେଲା, ତାର ପରିଣାମ କ'ଣ ହେବ—ତାହାରି ଆଶଙ୍କାରେ ସେମାନେ ପୁରାପୁରି ଭାଙ୍ଗିପଡ଼ିଲେଣି । ସେମାନଙ୍କ ମୁହଁରେ ଦୁଃଖ ଓ ଭୟର ଭାବ ଏବଂ ଆଖିରୁ ଲୁହ ଝରୁଥିବା ଦେଖି ମ୍ୟା'ଲ୍ ଭାବିନେଲେ ଯେ ଘୋର ବିପଦରୁ ସେ ରକ୍ଷାପାଇଥିବା ଯୋଗୁ ଝିଅମାନେ ଏତେ ବିଚଳିତ ହୋଇପଡ଼ିଛନ୍ତି ! ତାଙ୍କର କୌଣସି କ୍ଷତି ହୋଇନାହିଁ ବୋଲି ଆଶ୍ୱାସନା ଦେଇ ତାଙ୍କ ସଙ୍ଗରେ ଯାଇ ମଲା ଭାଲୁଟାକୁ ଦେଖି ଆସିବାକୁ ସେ ଝିଅମାନଙ୍କୁ ଡାକୁଥାଆନ୍ତି । ଏଣେ ଝିଅମାନେ ଭୟରେ ପଥର ପାଲଟି ଗଲେଣି; କାହାରି ହାତଗୋଡ଼ ଆଉ ଚଳୁନାହିଁ । ଭାଲୁର ସନ୍ଧାନରେ ମ୍ୟା'ଲ୍‌ଙ୍କୁ ଏକାକୀ ପଠାଇଦେଇ ସମସ୍ତେ ଅବଶ ହୋଇ ରାସ୍ତାକଡ଼ରେ ବସିପଡ଼ିଲେ ।

ତାନ୍‌ସେଙ୍କ ସହିତ ମ୍ୟା'ଲ୍‌ଙ୍କର କେଉଁଠି ବା କେମିତି ଭେଟ ହେଲା ଏବଂ ପ୍ରଥମ ଦେଖାରେ ଦୁହେଁ ଦୁହିଁଙ୍କୁ କଣ କହିଲେ—ତାହା ଏପର୍ଯ୍ୟନ୍ତ କାହାକୁ ଜଣାନାହିଁ ।

Digitized by srujanika@gmail.com

ଝିଅମାନେ ପ୍ରବଳ ଉତ୍କଣ୍ଠାରେ ରାସ୍ତାକଡ଼ରେ ଦୀର୍ଘ ସମୟ ଅପେକ୍ଷା କରିବାପରେ ନୀ'ଲୁ ଓ ତାନ୍‌ସେ ପାହାଡ଼ର ଢଲା ଉଠାଣିରେ ଚଢ଼ି ରାସ୍ତାଆଡ଼କୁ ଆସିଲେ । ନୀ'ଲ ଖାଲୁ ଚମଟିକୁ ଧରିଥାଆନ୍ତି, ବନ୍ଧୁକ ଥାଏ ତାନ୍‌ସେଙ୍କ ହାତରେ । ପାଖକୁ ଆସି ତାନ୍‌ସେ କହିଲେ ଯେ ବନ୍ଧୁକ ଫୁଟିବାର ଧମସରେ ସେ ଲେଡ୍‌ବି ପଡ଼ି ପାହାଡ଼ତଳକୁ ଗଡ଼ିଗଲେ । କେବଳ ଖାଲୁଚମଟି ବେଢ଼ାଇ ହୋଇଥିବା ଯୋଗୁଁ କଣ୍ଟାବୁଦା ଓ ପଥର ଆଘାତରୁ ସେ ରକ୍ଷା ପାଇଛନ୍ତି । ବନ୍ଧୁକ ତାଙ୍କ ହାତକୁ ଆସିବାର ବୃତ୍ତାନ୍ତ ନୀ'ଲ୍ ପ୍ରକାଶ କରିବାରେ ଟମ୍‌ଙ୍କ ଯୋଗୁଁ ହିଁ ସବୁ ଆୟୋଜନ ବ୍ୟର୍ଥ ହୋଇଗଲା ବୋଲି ସ୍ଥିରକରି ଝିଅମାନେ ରାଗରେ ଘରକୁ ଫେରିଲେ ।

ସୋମବାର ଦିନ ଡାକ-ତାର ଅଫିସ୍ ଛୁଟି । ରବିବାର ରାତିରେ ଟମ୍ ଆସି ଘରେ ଗୋଡ଼ ନ ଦେଉଣୁ ଝିଅମାନେ ତାଙ୍କୁ ବେଢ଼ିଯାଇ ନୀ'ଲ୍ ପରି ଲୋକ ହାତରେ ଗୁଳିଭରା ବନ୍ଧୁକଟିଏ ଦେବାର କାରଣ ଓ କୈଫିୟତ୍ ଦାବି କଲେ । ଶନିବାର ସନ୍ଧ୍ୟାର ଘଟଣା ସବୁ ବର୍ଣ୍ଣନା କରିଗଲା; ଟମ୍ ଗମ୍ଭୀରହୋଇ ଗଭୀର ମନୋଯୋଗ ଦେଇ ସବୁ ଶୁଣିଲେ । ତାନ୍‌ସେ ଗୁଳିଖାଇ ପାହାଡ଼ତଳକୁ ଗଡ଼ିଯିବା କଥା ପଡ଼ିବାମାତ୍ରେ ଟମ୍ ଆଉ ହସ ରୋକି ପାରିଲେ ନାହିଁ । ତାଙ୍କୁ ଠୋ ଠୋ ହସୁଥିବା ଦେଖି ଝିଅମାନଙ୍କ ରାଗର ସୀମା ରହିଲା ନାହିଁ । ତା'ପରେ ଅସଲ କଥାଟି ପ୍ରକାଶ ପାଇଲା । ନୀ'ଲ୍‌ଙ୍କୁ ଦେଶରୁ ଗୁଡ଼ିବା ପାଇଁ ଝିଅମାନଙ୍କ ଚିଠି ପାଇବାବେଳୁ ଟମ୍ ବୁଝିଥିଲେ ଯେ ନୀ'ଲ୍‌ଙ୍କ ବିରୁଦ୍ଧରେ ଗୋଟାଏ ବଡ଼ ଧରଣର ଷଡ଼ଯନ୍ତ୍ରର ସୂତ୍ରପାତ ହେଉଛି । ଷଡଯନ୍ତ୍ରକାରୀମାନଙ୍କୁ ଅପଦସ୍ଥ କରିବାପାଇଁ ଦୁଇଟି କାର୍ଟ୍ରିଜରୁ ଛର୍‌ରା ବାହାର କରି ସେ ମଇଦା ଭରିଦେଲେ ଓ ନୀ'ଲ୍‌ଙ୍କ ସାମନାରେ ମଇଦାଭର୍ତ୍ତି କାର୍ଟ୍ରିଜ୍ ଦୁଇଟି ଚଢ଼ାଇ ବନ୍ଧୁକ ତାଙ୍କ ହାତକୁ ବଢ଼ାଇଦେଲେ । ତାଙ୍କ କଥା ଶୁଣି ନୀ'ଲଙ୍କ ସମେତ ସମସ୍ତେ ହୋ-ହୋ ହୋଇ ହସିବାକୁ ଲାଗିଲେ । କେବଳ ତାନ୍‌ସେ ମନମାରି ଗୋଟିଏ କୋଣରେ ତୁନିହୋଇ ବସିଥାଆନ୍ତି ।

ଝିଅମାନେ ଏତେ ଯତ୍ନର ସହିତ ଯେଉଁ ଯୋଜନାଟି ପ୍ରସ୍ତୁତ କରିଥିଲେ, ଅବସ୍ଥାଚକ୍ରରେ ତାର ବିପରୀତ ଫଳ ହେଲା । ଦବିଯିବା ପରିବର୍ତ୍ତେ ନୀ'ଲ ଆହୁରି ଉପର-ମୁହାଁ ହୋଇଗଲେ । ଆଉ ତାନ୍‌ସେ ବିଚରା କ୍ଷୁଣ୍ଣ ଓ ଖର୍ବିତ ହୋଇ ପ୍ରତଦ୍ୱନ୍ଦ୍ୱିତାରେ ଆହୁରି ପଛକୁ ହଟିଗଲେ ।

Digitized by srujanika@gmail.com

## ଦୁଇ

ଡାନ୍‌ସେଙ୍କୁ ଷାଲୁଚମରେ ସିଲାଇ କରାଯିବା ବେଳେ ସାଧାରଣ ସିଲାଇସୂତା ପରିବର୍ତ୍ତେ ମୋଟ ଟ୍ୱାଇନ୍ ସୂତା ବ୍ୟବହାର କରିବାକୁ ପ୍ରସ୍ତାବ ଦେବାଛଡ଼ା ମୂଳ ପରିକଳ୍ପନାଟିକୁ ପ୍ରସ୍ତୁତ ବା କାର୍ଯ୍ୟକାରୀ କରିବାରେ ମୁଁ କୌଣସି ଭାଗ ନେଇ ନଥିଲି । ଯୋଜନାଟି ଆକସ୍ମିକ ଭାବେ ଓଲଟପାଲଟ ହୋଇଯାଇ ତାର ଫଳ କପରି ବିପରୀତ ହେଲ, ତାହା ପୂର୍ବରୁ ବର୍ଣ୍ଣନା କରିଛି । ଡାନ୍‌ସେ କିନ୍ତୁ ସନ୍ଦେହ କଲେ ଯେ ସବୁ ଆୟୋଜନ ତାଙ୍କୁ ହିଁ ଅପଦସ୍ଥ କରିବା ପାଇଁ ଜାଣିଶୁଣି କରାଯାଇଥିଲା ଓ ହିଁଅଙ୍କ ମେଳରେ ଚଳପ୍ରଚଳ ହେଉଥିବାରୁ ସେଥିରେ ମୁଁ ସକ୍ରିୟ ଅଂଶ ଗ୍ରହଣ କରିଥିଲି । ସେଥିପାଇଁ ମନେ ମନେ ଅକସ ରଖି ମୋ ଉପରେ ଦାଉସାଧିବା ପାଇଁ ସେ ଓର ଉଣ୍ଡିଲେ ।

ଦିନେ ସକାଳୁ ସାଙ୍ଗମାନଙ୍କ ସହିତ ମୁଁ ଡାଳମାଙ୍କୁଡ଼ି ଖେଳୁଥିଲି । ଡାଳରୁ ଡାଳକୁ କପରି ଉଡ଼ିକୁଦି କରିଯିବାକୁ ପଡ଼େ—ତାହା ସାଙ୍ଗସାଥୀମାନଙ୍କୁ ଦେଖାଉଥିଲିବେଳେ ଡାନ୍‌ସେ ସେଠାରେ ପହଞ୍ଚି ତାଙ୍କ ସହିତ ଶିକାରକୁ ଯିବାପାଇଁ ମୋତେ ଡାକଲେ ଓ ପାଦରେ ଚାଲି ବାଘ ଶିକାର କରିବାର କାଇଦା ସବୁ ଶିଖାଇଦେବେ ବୋଲି କହିଲେ । ହଠାତ୍ ଏତେ ବଡ଼ ସମ୍ମାନ ପାଇଁ ମନୋମାତ ହୋଇ ମୁଁ ସପ୍ତସ୍ୱର୍ଗକୁ ଉଠିଗଲି ଓ ସାଙ୍ଗ-ସାଥିଙ୍କୁ ବିଦା କରି ଅତି ଆଗ୍ରହରେ ତାଙ୍କ ସହିତ ବାହାରି ପଡ଼ିଲି । ଡାନ୍‌ସେ ତାଙ୍କ ଦାରୁଖିଆ ଛର୍‌ରା ବନ୍ଧୁକଟି କାନ୍ଧରେ ପକାଇଥାଆନ୍ତି ଓ ଦାରୁଖିଆ ରାଇଫଲ୍‌ଟିଏ ହାତରେ ଧରିଥାଆନ୍ତି । ଦୁହେଁ ଚାଲି ଚାଲି ଯାଇ ଧୂନଗଡ଼ ବେତବଣରେ ପହଞ୍ଚିଲୁ । ସେତେବେଳେ ସେ ବେତବଣରେ ବହୁତ ବାଘ ମିଳୁଥିଲେ । ପରବର୍ତ୍ତୀ ବହୁବର୍ଷ ଧରି ବେତବଣରେ ମୁଁ କେତେଥର ବାଘ ଶିକାର କରିଛି । ସେଦିନ ସେଠାରେ ବାଘର ପାହୁଲଦାଗଗୁଡ଼ିଏ ଦେଖିଲୁ; କିନ୍ତୁ ବହୁତ ଖୋଜା ଖୋଜି ପରେ ମଧ୍ୟ ଗୋଟିଏ ହେଲେ ବାଘର ସନ୍ଧାନ ପାଇଲୁ ନାହିଁ । ଫେରିବା ବାଟରେ ଜଙ୍ଗଲଘେରା ଟ୍ରେଟ ପଡ଼ିଆଟିଏ ପଡ଼ିଲା । ପଡ଼ିଆ ଆରମୁଣ୍ଡରେ କିଛି ଚଢ଼େଇ ପଲେ ଶୁଖିଲା ପତ୍ର ଖେଳାଇ ଉଇ ଖୁଣ୍ଟି ଖାଇବାରେ ଲାଗିଥାଆନ୍ତି । ଡାନ୍‌ସେ ଛର୍‌ରା ବନ୍ଧୁକଟି କାନ୍ଧରୁ ଓହ୍ଲାଇ ମୋ ହାତକୁ ବଢ଼ାଇଦେଲେ ଓ ନଳକୁ ଚଢ଼େଇଙ୍କ ଆଡ଼କୁ ମୁହାଁଇ ଧରି କୁନ୍ଦାକୁ କାନ୍ଧରେ ଲଗାଇ ଘୋଡ଼ାକୁ ଧୀରେ ଟିପିଦେବାକୁ କହିଲେ ।



Digitized by srujanika@gmail.com

ଘୋଡ଼ା ଛିଟିଦେବା କଥା ମୋର ମନେଅଛି; କିନ୍ତୁ ତା ପରେ କ'ଣ ହେଲା ତାହା ଏପର୍ଯ୍ୟନ୍ତ ମୁଁ ଜାଣିନାହିଁ । ଡାନ୍‌ସେ ବନ୍ଧୁକରେ ସେଦିନ ଅଧିକା ବାରୁଦ ଭରିଥିଲେ ବୋଲି ମୋର ମନେହୁଏ । ନିଜେ ଅସାଧାରଣ ବଳବାନ୍ ହୋଇଥିବା ଯୋଗୁଁ ବନ୍ଧୁକରେ ସେ ହୁଏତ ନିୟମିତ ସେତିକ ବାରୁଦ ଭରନ୍ତି କିମ୍ବା ମୋତେ ପରାଭବ ଦେବାପାଇଁ ବିଶେଷ କରି ସେଇ ଦିନ ବେଶୀ ବାରୁଦ ଗୁନ୍ଧିଥିଲେ । ସେ ଯାହା ହେଉ, ବନ୍ଧୁକର ପ୍ରଚଣ୍ଡ ଧକ୍କାରେ ପଛକୁ ଚିତ୍‌ପଟାଙ୍ଗ ହୋଇ ଲେଉଟି ପଡ଼ି ମୁଁ ପ୍ରାୟ ବେହୋସ ହୋଇଗଲି । ହାତରୁ ଛିଟିକି ବନ୍ଧୁକ ଯାଇ ଖଣ୍ଡେ ଦୂରରେ ପଡ଼ିଲା । ଚେତା ଫେରିଲା ପରେ ଦେଖିଲି ଯେ ଡାନ୍‌ସେ ବନ୍ଧୁକରେ ହାତ ବୁଲାଇ ପଥରରେ ବାଜି ନଳଟି ଚେପା ହୋଇଯାଇଛି କି ନାହିଁ ବୋଲି ପରଖୁଛନ୍ତି । କସ୍ତୁରୀ ଚଢ଼େଇ ପଲକ ସେଠାରେ ଆଉ ନାହାନ୍ତି । ଅଳ୍ପ ଦୂରରେ ମରିପଡ଼ିଥିବା ଶୁଇ ପରି ଛୋଟ ଚଢ଼େଇଟିକୁ ମାଛ-ମରାଳ ବୋଲି ଚିହ୍ନିଲି । ଚଢ଼େଇଟି ଦେହରେ ଛର୍‌ରା ବାଜିନାହିଁ—ବନ୍ଧୁକ ଆବାଜ୍ ଯୋଗୁଁ ହିଁ ସେ ଭୟରେ ମରିଯାଇଛି ବୋଲି ଡାନ୍‌ସେ କହିଲେ । ଥରଟିଏ ସେ ବନ୍ଧୁକ ଫାଏର୍ କରି ମୁଁ ନିଜେ ଅର୍ଦ୍ଧପ୍ରାଣ ହୋଇ ଯାଇଥିବା ହେତୁ ତାଙ୍କ ମତାମତ ସହଜରେ ମାନିନେଲି ।

ମୋତେ ଏଗାରବର୍ଷ ହେବାବେଳକୁ ବାପାଙ୍କର କାଳ ହୋଇଯାଇଥିଲା । ସେହିଦିନୁ ବଡ଼ଭାଇ ଟମ୍‌ଙ୍କୁ ଆମେ ମୁରବି ଭାବେ ମାନି ଚଳୁ । ଦିନେ ସଞ୍ଜବେଳେ ଟମ୍ କହିଲେ ଯେ ପରଦିନ ମୋତେ ସଙ୍ଗରେ ନେଇ ସେ ଭାଲୁ ଶିକାର କରିବାକୁ ଯିବେ । ତାଙ୍କ କଥା ଶୁଣି ମା'ଙ୍କର ଭାବଲେଣି ପଡ଼ିଗଲା । ଅତି ଶାନ୍ତ ଓ କୋମଳ ପ୍ରକୃତିର ହୋଇଥିଲେ ମଧ୍ୟ ମା' ମୋର କମ୍ ସାହସୀ ନଥିଲେ । ସମୟବିଶେଷରେ ତାଙ୍କଠାରେ ଯେପରି ସାହସିକତାର ପରିଚୟ ପାଇଛି, ତାହା ଜୋଆନ୍ ଅଫ୍ ଆର୍କ କିମ୍ବା ନର୍ସ କାଭେଲ୍‌ଙ୍କଠାରେ ମଧ୍ୟ ନଥିବ । ମୋ ପ୍ରତି ବିପଦର କୌଣସି ଆଶଙ୍କା ନାହିଁ—ମୁଁ ସଙ୍ଗରେ ଥିବାରୁ ସେ ଖୁବ୍ ହୁସିଆର ହୋଇ ଚାଲିବେ—ଟମ୍ ଏସବୁ କହି ମା'ଙ୍କୁ ପ୍ରବୋଧୁଥିବାବେଳେ ତାଙ୍କ କଥାକୁ ମୁଁ କାନେଇଥାଏ । ମୋତେ ଜଙ୍ଗଲକୁ ଛାଡ଼ିବାକୁ ମା' ଶେଷରେ ରାଜିହେଲେ । ମା'ଙ୍କ ବ୍ୟସ୍ତତା ଦେଖି ମୁଁ ମଧ୍ୟ ମନେ ମନେ ଠିକ୍ କରିନେଲି ଯେ ଆପଦ ବିପଦରୁ ଆଡ଼େଇ ହୋଇ ରହିବା ପାଇଁ ମୁଁ ଯଥାସାଧ୍ୟ ଚେଷ୍ଟା କରିବି ଓ ଜଙ୍ଗଲରେ ପଶିବା ପରଠାରୁ ଟମ୍‌ଙ୍କ ପାଖ କଦାପି ଛାଡ଼ିବି ନାହିଁ ।

ସେଦିନ ଅପରବେଳା ସଜବାଜ ହୋଇ ଶିକାରକୁ ବାହାରିଲୁ । ଟମ୍ ନିଜପାଇଁ ରାଇଫଲ୍ ଓ ମୋ ପାଇଁ ଛର୍‌ରା ବନ୍ଧୁକଟିଏ ନେଇଥାଆନ୍ତି । ଉଚ୍ଚ ପାହାଡ଼ କଡ଼େ କଡ଼େ ଗୋଟିଏ ଶିକାରପଥରେ ଅଧଘଣ୍ଟ ଯିବାପରେ ଦୁହେଁ ଗୋଟିଏ ଗଭୀର ଖୋଲ ବନ୍ଧଉପରେ ପହଞ୍ଚିଲୁ । ଖୋଲଭିତର ପୂରା ଅନ୍ଧାର ଦେଖି ମୋ ମନରେ ଛନକା ପଶିଲା । ଟମ୍ ଚୁପା-ଗଳାରେ କହିଲେ ଯେ ସେହି ଖୋଲ ଭିତର ଦେଇ ଭାଲୁ ନିୟମିତ ପାହାଡ଼ରୁ ତଳକୁ ଗଡ଼ନ୍ତି; ଶିକାରପଥରେ ଆସୁଥିବା ଭାଲୁଙ୍କୁ ମଧ୍ୟ ଖୋଲରେ ପଶି ଆରପାଖକୁ ଯିବାକୁ ପଡ଼େ । ତେଣୁ ଖୋଲ ଭିତରେ ଗୁଡ଼ାଏ ଭାଲୁ ଥିବେ ବୋଲି କହି ବନ୍ଧୁକ ଓ ଗୁଳି ଦୁଇଟି

Digitized by srujanika@gmail.com

ମୋ ହାତକୁ ବଢ଼ାଇଦେଲେ । ତା'ପରେ, ଝୋଲବନ୍ଧରେ ଗୋଟିଏ ବଡ଼ ପଥର ଉପରେ ମୋତେ ବସାଇ ସେ ଚେତାଇଦେଲେ ଯେ ଭାଲୁକୁ ଯଦି କିହାତ ଗୁଳି କରିବାକୁ ପଡ଼େ, ତାକୁ ଆହତ ନ କରି ବରଂ ପ୍ରାଣରେ ମାରିଦେବା ଭଲ । ଅଠରିହ ଗଜ ଦୂରରେ ପାହାଡ଼ ଉପରେ ବଡ଼ ଓକ୍ ଗଛଟିଏ ଦେଖାଇଦେଇ ସେ କହିଲେ ଯେ ସେ ନିଜେ ସେହି ଗଛରେ ବସିବେ । ତାଙ୍କ ଗଛ ଆଖପାଖକୁ ଭାଲୁ ଆସିବା ଯଦି ମୋ ନଜରରେ ପଡ଼ି-ଯାଏ—ଆଉ ସେ ନିଜେ ଭାଲୁଟିକୁ ଦେଖିପାରୁନାହାନ୍ତି ବୋଲି ଯଦି ସନ୍ଦେହ ହୁଏ—ତେବେ ମୋତେ ନିଜେ ସେଠାକୁ ଗୁଳିଯାଇ ତାଙ୍କୁ ଚେତାଇଦେବାକୁ ପଡ଼ିବ । ଏତିକି କହି ପଥର ଉପରେ ମୋତେ ଏକାକୀ ଛାଡ଼ି ଟମ୍ ଗଛଗହଳରେ କୁଆଡ଼େ ଲୁଚିଗଲେ ।

କିଛି ସମୟ ପରେ କାଲୁଆ ପବନ ବହିବାକୁ ଲଗିଲା; ଖୁବ୍ ଥଣ୍ଡା ପଡ଼ିବା ଛଡ଼ା ଚାରିପାଖରୁ ଶୁଖିଲା ଘାସପତ୍ର ମଧ୍ୟ ପବନରେ ଅନବରତ ଖସ୍‌ଖସ୍ ହେବାକୁ ଆରମ୍ଭ କଲା । ସେ ଶବ୍ଦ ଶୁଣି ମୋର ମନେହେଲା ଯେପରି ଅସଂଖ୍ୟ ଭୋକିଲା ଭାଲୁ ଚାରିପାଖରୁ ବେଢ଼ିଯାଇ ଧୀରେ ଧୀରେ ମୋରି ଆଡ଼କୁ ମାଡ଼ି ଆସୁଛନ୍ତି । ସେହି ପାହାଡ଼ଉପରୁ ସେ ବର୍ଷ ସର୍ବମୋଟ ନଅଟି ଭାଲୁ ମରିହୋଇଥିବା କଥା ମଧ୍ୟ ଠିକ୍ ସେତିକବେଳକୁ ମନେ ପଡ଼ିଲା । ଭାଲୁ ପଞ୍ଚାକ ମୋତେ ବେଢ଼ିଯାଇ ନିଶ୍ଚୟ ଖାଇଦେବେ—ଏଥିରେ ମୋର ତିଳେହେଲେ ସନ୍ଦେହ ରହିଲା ନାହିଁ । ଭାଲୁଙ୍କର ଶିକାର ହେବା ଯେ କେତେ ବୀଭତ୍ସିକା-ମୟ, କେତେ ଯନ୍ତ୍ରଣାଦାୟକ ହେବ—ଅଚଳ ଓ ଅବଶ ହୋଇ ବସି ମୁଁ କେବଳ ତାହାହିଁ କଳ୍ପନା କରିବାକୁ ଲଗିଲି । ସମୟର ଗତି ସହିତ ଆଶଙ୍କା କ୍ରମଶଃ ବଢ଼ି ବଢ଼ି ଆତଙ୍କରେ ପରିଣତ ହେଲା । ସୂର୍ଯ୍ୟ ଅସ୍ତ ଗଲେ । ପଶ୍ଚିମ ଆକାଶ ଉଜ୍ଜ୍ୱଳ ହୋଇଉଠିବା ସଙ୍ଗେ ସଙ୍ଗେ ପାହାଡ଼ କଡରେ ସୃନେଲି ଖସିର ଢେଉ ଖେଳିଗଲା । ଏତିକିବେଳେ ଦେଖିଲି, ଓକ୍‌ଗଛଠାରୁ କେଇ ଶହ ଗଜ ଉପରେ ଭାଲୁଟିଏ ପାହାଡ଼ ପିଠିରେ ଧୀରେ ଧୀରେ ଆସୁଅଛି । ପୃଷ୍ଠଭୂମିରେ ଆକାଶ ଉଜ୍ଜ୍ୱଳ ଥିବାଯୋଗୁଁ ଭାଲୁଟିର ଆକାର ଓ ଗତିବିଧି ମୁଁ ସ୍ପଷ୍ଟ ବାରିପାରୁଥାଏ ।

ସେତେବେଳକୁ ମୋ ଦୁର୍ଦ୍ଦଶା କହିଲେ ନ ସରେ । ମୁହ୍ୟମହତ ନ ହରାଇ କୌଣସି ପ୍ରକାରେ ସେଠାରୁ ଖସିପଳାଇଯିବା ପାଇଁ ମନଧ୍ୟାନ ଦେଇ ଆଳଟିଏ ଖୋଜୁଥିଲି । ଅରକ୍ଷିତକୁ ଦଇବ ସାହା ହେଲା ପରି ଯୋଗକୁ ଟମ୍‌ଙ୍କ ଗଛପାଖରେ ଭାଲୁଟା ଦେଖାଦେଲା । ଭାଲୁକୁ ଟମ୍ ଦେଖିଛନ୍ତି ନା ନାହିଁ—ସେସବୁ ଅଯଥା ବିଚାରରେ ଆଉ ସମୟ ନଷ୍ଟ ନକରି ପଥରରୁ ଓହ୍ଲାଇ ପଡ଼ିଲି ଓ ଭାଲୁ ବିଷୟ ଟମ୍‌ଙ୍କୁ ଜଣାଇଦେବା ବାହାନାରେ ତାଙ୍କର ଗଛଆଡ଼େ ମୁହାଁଇଲି । ଡାନ୍‌ସେଙ୍କ ବନ୍ଧୁକଟି ଫୁଟାଇ ଯେଉଁ ଦୁର୍ଗତି ଘଟିଥିଲି, ତାହା ସ୍ମରଣ କରି ବନ୍ଧୁକରେ ଗୁଳିଦୁଇଟି ଭରିବାକୁ ସାହସ କରିନଥିଲି । ଖାଲି ବନ୍ଧୁକଟିକୁ କାନ୍ଧେଇ ପ୍ରାଣଭୟରେ ପଳାଇ ଯାଉ ଯାଉ ଦୃଢ଼ସଙ୍କଳ୍ପ କଲି ଯେ ଟମ୍‌ଙ୍କ ପାଖରେ ପହଞ୍ଚିଗଲା ପରେ କୌଣସିମତେ ତାଙ୍କ ପାଖ ଆଉ ଛାଡ଼ିବି ନାହିଁ ।

Digitized by srujanika@gmail.com

କୌଣସିମତେ ତାଙ୍କ ପାଖ ଆଉ ଛାଡ଼ିବ ନାହିଁ ।

ଶୀତଦିନେ ହିମାଳୟ ଅଞ୍ଚଳର କଳାଭାଲୁ ଓକ୍ ଗଛରୁ ଅକର୍ନ ତୋଳି ଖାଆନ୍ତି । ଆକର୍ନ ଓକ୍‌ଗଛ ଅଗଡ଼ାଳମାନଙ୍କରେ ଥାଏ । ଭାଲୁପରି ସ୍ଥୂଳକାୟ ଜନ୍ତୁ ଗଛ ଅଗକୁ ଚଢ଼ି ନ ପାରି ଅଗଡ଼ାଳଗୁଡ଼ିକୁ ଓଡ଼ାଇଆଣି ଅକର୍ନ ଛଡ଼ାଇ ଖାଏ । ଫଳରେ ଡାଳଗୁଡ଼ିକ ଅଧିକାଂଶ ସମୟରେ ମୂଳରୁ ଭାଙ୍ଗି ଖସିପଡ଼େ କମ୍ବା ତଳ ଡାଳରେ ଲାଗି ଶୁଖି ଶୁଖି ଗଛରୁ ଝୁଲୁଥାଏ । ଓକ୍‌ଡାଳ ସେତେ ସହଜରେ ମରେନାହିଁ । ମୂଳ ଅଧାଅଧି ଛାଡ଼ିଯାଇଥିବା ଡାଳ ମଧ୍ୟ ଦୀର୍ଘକାଳ ପର୍ଯ୍ୟନ୍ତ ସତେଜ ଓ ସବୁଜ ଥିବା ଦେଖାଯାଏ ।

ପ୍ରାଣବ୍ୟକଳରେ ଝୋଲଟିକୁ ପାର ହୋଇ ଆଉ ବନ୍ଧର ଗହଳ ଲଟାବୁଦାରେ ଯାଇ ପଶିଛି, ହଠାତ୍ ଏତିକବେଳେ ଅତି ନିକଟରୁ ପ୍ରବଳ ଜୋର୍‌ରେ ଖସ୍‌ଖସ୍ ଶବ୍ଦ ହେଲା । ଭୟରେ କାଠ ହୋଇ ଛିଡ଼ାହୋଇଥିବା ଭିତରେ ସାମନାର ଓକ୍ ଗଛରୁ ପ୍ରକାଣ୍ଡ ଶୁଖିଲା ଡାଳଟିଏ ଭୁସ୍ ଭୁସ୍ ଖସି ଆସି ମୋ ଗୋଡ଼ ପାଖରେ ପଡ଼ିଲା । ଭାଲୁ ଭାଙ୍ଗିଦେବା ପରେ ଡାଳଟି ଶୁଖି ଶୁଖି ଗଛରେ ଅଟକିଥିଲା । ମୋ'ରି କପାଳକୁ ଠିକ୍ ସେତିକବେଳକୁ ପବନର ତୋଡ଼ରେ ସେ ଟି ଗଛରୁ ଖସିପଡ଼ିଲା । ମନରେ ଯେପରି କୋକୁଆଭୟ ଖେଳିଗଲା, ଏସିଆ ମହାଦେଶର ସର୍ବାପେକ୍ଷା ପ୍ରକାଣ୍ଡ ଭାଲୁ ଆକ୍ରମଣ କରିବାକୁ ଗୋଡ଼ାଇଆସିଥିଲେ ତାଠାରୁ ବେଶି ଭୟ ହୋଇ ନ ଥାଆନ୍ତା । ଟମ୍‌ଙ୍କ ପାଖକୁ ପଳାଇଯିବାକୁ ସଙ୍କଳ୍ପ କରି ବଡ଼ ସାହସରେ ବାହାରିଥିଲି । ହଠାତ ସେ ସାହସ ଓ ସଙ୍କଳ୍ପ ସବୁ ବାଷ୍ପବତ୍ କୁଆଡ଼େ ମିଳାଇ-ଗଲା । ସେଠୁଁଠାରୁ ଫେରି ଅତର୍କିତରେ ପଡ଼ି-ଉଠି ଧାଇଁ ପଥର ଉପରେ ପୁଣି ଚଢ଼ିଗଲି । ସୁସ୍ଥ ସବଳ ଅବସ୍ଥାରେ କେବଳ ଭୟଯୋଗୁଁ ପ୍ରାଣ ଛାଡ଼ିଯିବା ଯଦି ସମ୍ଭବ ହୋଇଥାନ୍ତା, ତାହେଲେ କେବଳ ସେଦିନ ନୁହେଁ—ପରବର୍ତ୍ତୀ ଜୀବନରେ ଘଟିଥିବା ଏହିପରି ଓ ଏହାଠାରୁ ଆହୁରି ଆତଙ୍କମୟ ବହୁ ପରିସ୍ଥିତିରୁ କୌଣସିଟିରେ ମୋର ପ୍ରାଣବାୟୁ ନିଶ୍ଚୟ ଉଡ଼ିଯାଇଥାଆନ୍ତା ।

ଟିକେ ମାଡ଼ିଆସିଲାଣି । ଜଙ୍ଗଲ ନିସ୍ତବ୍ଧ, ନୀରବ । ପ୍ରାଣର ଆଶା ଛାଡ଼ି ମୁଁ ପଥର ଉପରେ ନିଶ୍ଚଳ ହୋଇ ବସିରହିଛି । ଏତିକବେଳେ ଟମ୍ ଗ୍ରୀସ୍ ମୂର୍ତ୍ତିପରି ଅନ୍ଧାରିଆ ଜଙ୍ଗଲର ଧାରରୁ ବାହାରି ଆସି ସ୍ନେହଭରା ଅତି ସହଜ ସ୍ୱରରେ ମୋତେ ପଚାରିଲେ, "କରେ, ଡର ମାଡ଼ୁନାହିଁ ତ ?" ବନ୍ଧୁକଟି ତାଙ୍କ ହାତକୁ ବଢ଼ାଇଦେଇ ଥରିଲା ଥରିଲା ସ୍ୱରରେ କହିଲି, "ଏବେ ଆଉ ଡର ମାଡ଼ୁନାହିଁ ।"

ଟମ୍ ବଡ଼ଭାଇ ହିସାବରେ ମୋତେ ଅତି ଶ୍ରଦ୍ଧା କରୁଥିଲେ; ତାଙ୍କ ପରି ହୃଦୟବାନ୍, ବୃଦ୍ଧିମନ୍ତ ବ୍ୟକ୍ତି ମଧ୍ୟ ସଂସାରରେ ବିରଳ । ସ୍ୱରରୁ ମୋ ଅବସ୍ଥା ବିଷୟରେ ସେ କଣ ବୁଝିଲେ କେଜାଣି, ସେ ବିଷୟରେ ସେ ଆଉ କୌଣସି କଥା ଉଠାଇଲେ ନାହିଁ ।

× × ×

Digitized by srujanika@gmail.com

ଟମ୍ ଶିକାରକୁ ଗଲେ ରାତି ନ ପାହୁଣୁ ଘରୁ ବାହାରି ପଡ଼ନ୍ତି । ଦିନେ ଭୋର ଚାରିଟାବେଳକୁ ମୋତେ ନିଦରୁ ଉଠାଇଦେଇ ତାଙ୍କ ସାଙ୍ଗରେ ମୟୂର ଶିକାରକୁ ଯିବାପାଇଁ ସେ ଡାକିଲେ । ଘରର ଆଉ କାହାର କାଳେ ନିଦ ଭାଙ୍ଗିଯିବ, ସେଥିପାଇଁ ଶବ୍ଦ ନ କରି ଗାଧୁଆ ସାରି ଦୁହେଁ ପୋଷାକପତ୍ର ପିନ୍ଧିଲୁ । ଚାହା ଓ ବିସ୍କୁଟ କେଇ ଖଣ୍ଡ ଖାଇ ସାତ ମାଇଲ ଦୂର ଗାରୁପ୍ପୁ ଜଙ୍ଗଲରେ ସକାଳୁ ସକାଳୁ ପହଞ୍ଚିବା ପାଇଁ ଅନ୍ଧାରରେ ଦୁହେଁ ଘରୁ ବାହାରିପଡ଼ିଲୁ ।

ମୋ ଜୀବନକାଳ ଭିତରେ ମୋ'ର ଆଖିଆଗରେ ଉତ୍ତର-ଭାରତର ଜଙ୍ଗଲରେ ଯେଉଁପରି ବ୍ୟାପକ ପରିବର୍ତ୍ତନ ଘଟିଗଲା—ତାହାର କିଛିଅଂଶ ପ୍ରାକୃତିକ କାରଣଯୋଗୁ ଏବଂ ଅଧିକାଂଶ ମନୁଷ୍ୟର ସ୍ୱାର୍ଥସାଧନ ନିମନ୍ତେ ସମ୍ପାଦିତ ହେଲା ବୋଲି ମାନିବାକୁ ପଡ଼ିବ । ଗହଳ ଜଙ୍ଗଲମାନ ସଫା ହୋଇ ଶେଷରେ ଝାଟିଝୋପ ତା'ର ସ୍ଥାନ ପୂରଣ କଲା । କେଉଁଠି ଅବା ଜଙ୍ଗଲ ଅବାରିତଭାବେ ମାଡ଼ିଯାଇ ଘାସ ଓ କୋଳିବଣଗୁଡ଼ିକୁ ନିଶ୍ଚିହ୍ନ କରିଦେଲା । ଗାରୁପ୍ପୁର ଦକ୍ଷିଣ-ପୂର୍ବ ଅଂଶଟିରେ ଯେଉଁଠି ଏବେ ବଡ଼ ବଡ଼ ଗଛର ଜଙ୍ଗଲ ଦେଖାଯାଏ, ମୋ ପିଲାଦିନେ ସେଠାରେ ଅଣ୍ଟାଏ ଉଞ୍ଚ ଘାସ ଓ ଛୋଟ ଛୋଟ କୋଳିବୁଦା ଗହଳରେ ମାଡ଼ିଥିଲା । ଡ଼ିସେମ୍ବର ମାସରେ ମୟୂର ଆଦି ନାନା . ପକ୍ଷୀଙ୍କ ଛଡ଼ା ହରିଣ ଓ ବାରହା ମଧ୍ୟ ପାଚିଲା କୋଳି ଲୋଭରେ ସେଠାରେ ଆସି ରୁଣ୍ଡ ହେଉଥିଲେ ।

. ସାତ ମାଇଲ ବାଟ ଚାଲି ଆମେ ଗାରୁପ୍ପୁରେ ପହଞ୍ଚିବାବେଳକୁ ରାତି ପ୍ରାୟ ପାହିବା ଉପରେ । ଜଙ୍ଗଲର ଗୋଟିଏ ବାମ୍ବୀ ପାଖରେ ବସି ଦିନ ଫାଟିବାକୁ ଅପେକ୍ଷା କଲୁ । ଚତୁର୍ଦ୍ଦିଗରୁ ଭିନ୍ନ ଭିନ୍ନ ତାଳ ଓ ତାନର ନାନା ଶବ୍ଦ ଓ ସ୍ୱର ଜଙ୍ଗଲବାସୀ ଜୀବଜନ୍ତୁଙ୍କ ନିଦ୍ରାଭଙ୍ଗର ସୂଚନା ଦେଉଥାଏ । ଚାରିପାଖରୁ ନାଲି ବଣକୁକୁଡ଼ା ଉଚ୍ଚସ୍ୱରରେ ରାବିବାକୁ ଲାଗିଥାଆନ୍ତି; ଡେଣାରୁ କାକର ଝାଡ଼ି ତନ୍ଦ୍ରା ତେଜି ଉଠିଥିବା ଅସଂଖ୍ୟ ଛୋଟ ଛୋଟ ପକ୍ଷୀଙ୍କର କାକଳି ନୂତନ ଉଷାକୁ ସ୍ୱାଗତ ସମ୍ଭାଷଣ ଜଣାଉଥାଏ ।



ଜଙ୍ଗଲପଟେ ଗୋଟିଏ ଛୋଟ ପଡ଼ିଆରେ ମୟୂରଗୁଡ଼ିଏ ଶିମିଳିଗଛରେ ବସା ବାନ୍ଧିଥାଆନ୍ତି । ସକାଳୁଆ କଅଁଳ ଖରା ଶିମିଳିଗଛ ଅଗ ଛୁଇଁବାମାତ୍ରେ କୋଡ଼ିଏଟିଯାଏ ମୟୂର ମୟୂରୀ ଉଚ୍ଚସ୍ୱରରେ କେକାରବ କରି କୋଳି ଖାଇବାକୁ ତଳକୁ ଉଡ଼ିଆସିଲେ । ଆମର ଜଙ୍ଗଲରେ ପଶିବାର ସମୟ ହେଲା ବୋଲି ଜାଣିଲୁ । ପାଇପ୍‌ରୁ ପୋଡ଼ା ତମାଖୁଟିକ ଝାଡ଼ିଦେଇ ଟମ୍ ଉଠି ଛିଡ଼ାହେଲେ ।

ଶୀତଦିନେ ବହଳ କୁହୁଡ଼ି ପରସ୍ତେ ଏଠାକାର ଜଙ୍ଗଲଗୁଡ଼ିକୁ ଭୂଇଁରୁ ଦରଶ ଫୁଟ ଉଚ୍ଚରେ ଚାଦରପରି ଘେରି ରହିଥାଏ । ରାତି ପାହିବାର କିଛି ସମୟ ପରଯାଏ ମଧ୍ୟ ଗଛପତ୍ରରୁ ଟୋପା ଟୋପା କାକର ବର୍ଷୁଥାଏ । କାକରଭିଜା ଗହଳ ଘାସବଣରେ ପଶି

Digitized by srujanika@gmail.com

ଆମକୁ ଆଗେଇବାକୁ ପଡ଼ିଲା । ଟମ୍‌ଙ୍କ ଘାସ ଯେଉଁଠି ଅଣ୍ଟାଏ ଉଞ୍ଚ, ମୋତେ ସେଠି ବେକେ । ଘାସବଣ ଭିତରକୁ କେଇ ପାହୁଣ୍ଡ ନପଶୁଣୁ ମୁଁ ଗୋଟାପଣେ ଜୁଡ଼ୁବୁଡ଼ୁ ଭିଜିଗଲି । ଡିସେମ୍ବର ମାସର ପ୍ରଚଣ୍ଡ ଶୀତରେ ଓଦାସରସର କାଲୁଆ ଲୁଗାପଟାରେ ଛନ୍ଦି ହୋଇ ବାଟ ଚାଲିବା କେଡ଼େ ଅସ୍ୱସ୍ତିକର—ତାହା ଅନୁଭବୀମାନେ ହିଁ ବୁଝିପାରିବେ ।

ଶିମିଳି ଗଛ ଆଡ଼କୁ ଆଗେଇବା ଭିତରେ ମୟୂର ମୟୂରୀ ମିଶି ପ୍ରାୟ ଦଶ ବାରଟି ଥରକ ଯାଇ ଘାସଗହଳରୁ ବାହାରି ପଡ଼ିଲେ ଓ ଅଳ୍ପ ଉଚ୍ଚରେ କିଛି ଦୂର ଉଡ଼ି ଉଡ଼ି ଯାଇ ଘାସଗହଳରେ ପୁଣି ଓହ୍ଲାଇପଡ଼ିଲେ । ସେ ଭିତରୁ ଲମ୍ବ ପୁଚ୍ଛଥିବା ମୟୂରଟିଏ ଶିମିଳି ଗଛ



ଡାଳରେ ଯାଇ ବସିଲା । ଟମ୍ ତାଙ୍କ ଛର୍‌ରା ବନ୍ଧୁକଟି ମୋ ହାତକୁ ବଢ଼ାଇ ଦେଇ ମୟୂରକୁ ମାରିବାକୁ ଇସାରା ଦେଲେ । ଗର୍ବରେ, ଆନନ୍ଦରେ ମନ ମୋର ଘର ଧରୁ ନଥାଏ । ବନ୍ଧୁକ ଚଳାଇବାପୂର୍ବରୁ ଶିମିଳିଗଛ ଆଡ଼କୁ ଅନ୍ତର ଦେଢ଼ଶହ ଗଜ ପାଖେଇବାକୁ ପଡ଼ିବ । ପ୍ରାୟ ଚାଳିଶ ଗଜ ପାରହେବା ପରେ ଜାଗାଏ ଅଟକି ବନ୍ଧୁକର ଘୋଡ଼ାଆ ଦୁଇଟି ଉଠାଇବାକୁ ଚେଷ୍ଟା କରୁଛି, ଏତିକିବେଳେ ପଛରୁ ଶିଟି ଶବ୍ଦ ଶୁଣି ଅନାଇ ଦେଖିଲି ଯେ ଟମ୍ ହାତଠାରି ମୋତେ ଡାକୁଛନ୍ତି । ପାଖକୁ ଆସିଲାରୁ ସେ କହିଲେ ଯେ ସେତେ ଦୂରରୁ ବନ୍ଧୁକ ଫାଏର କଲେ ଛର୍‌ରା ମୟୂର ପାଖଯାଏ ଯିବ ନାହିଁ । ମୁଁ ନିଶାଣ କରୁ ନଥିଲି—ବନ୍ଧୁକର ଘୋଡ଼ାଆ କେବଳ ଉଠାଇ ଦେଉଥିଲି ଶୁଣି ସେ କହିଲେ ଯେ ଘୋଡ଼ାଆ ଉଠାଇଦେବା ପରେ ବନ୍ଧୁକ ଧରି ବାଟ ଚାଲିବା ନିରାପଦ ନୁହେଁ । ବିଶେଷକରି ଘାସବଣରେ ଖାଲ ଢିପ ବାରି ହେଉ ନଥିବାରୁ ଝୁଣ୍ଟିବାର ବେଶି ସମ୍ଭାବନା । ଘୋଡ଼ାଆ ଉଠାହୋଇଥିବା ବନ୍ଧୁକ ଧରି ଝୁଣ୍ଟିପଡ଼ିଲେ ବିଷମ ବିପଦ ଘଟିପାରେ । ମୋତେ ଏତିକି ସାବଧାନ କରାଇଦେବା ପରେ ଆଗେଇଯାଇ ପୁଣି ଥରେ ଚେଷ୍ଟା କରିବାକୁ ସେ କହିଲେ ।

ବଡ଼ ବଡ଼ ଝଙ୍କାଳିଆ କୋଳିବୁଦାର ଆଢ଼ୁଆଳରେ ଲୁଚି ଛପି ମୟୂରର ବେଶ୍ ପାଖକୁ ଆଗେଇଗଲି । ଲମ୍ବା ଶିମିଳି ଗଛଟି ବଡ଼ ବଡ଼ ନାଲି ନାଲି ଫୁଲରେ ଭରିହୋଇ-ଥାଏ । ସକାଳୁଆ କଅଁଳ ଖରାରେ ମୋ ଆଡ଼କୁ କଡ଼େଇ କରି ବସିଥିବା ମୟୂରଟି ଯେପରି ସୁନ୍ଦର ଦେଖାଯାଉଥାଏ—ଫୁଲଗହଳରେ ମୟୂର ସେତେ ସୁନ୍ଦର ଠାଣିରେ ବସିଥିବା ମୁଁ କେବେ ଦେଖି ନଥିଲି ।

ଶୀତ କାକରରେ ହାତ ବଧିର ହୋଇଯାଇଥିଲା । ସେଥିଯୋଗୁ ହେଉ ବା ପ୍ରଥମ ଶିକାରର ପ୍ରବଳ ଆବେଗ ଓ ଉତ୍ତେଜନାଯୋଗୁଁ ହେଉ, ଠିକ୍ ସନ୍ଧିସନ୍ଧ ମୁହୂର୍ତ୍ତରେ ବନ୍ଧୁକର

Digitized by srujanika@gmail.com

ଘୋଡ଼ଆ ଦୁଇଟି ଭିଡ଼ ପାରିଲି ନାହିଁ । କଅଣ କରିବ ଭାବୁଛି, ଏତିକିବେଳେ ମୟୂରଟି ଡେଣା ମେଲାଇ ସେଠାରୁ ଉଡ଼ିଗଲା । ଟମ୍ ମୋତେ ବୋଧ ଦେଇ କହିଲେ, "ବ୍ୟସ୍ତ ହୁଅନା—ଆରଥରକୁ ତୋ୍ କପାଳ ନିଶ୍ଚୟ ଫିଟିଯିବ ।" ସେଦିନ କିନ୍ତୁ ଆଉ ଗୋଟିଏ ହେଲେ ପକ୍ଷୀ ଗଛଡାଳରେ ବସିଲେ ନାହିଁ । ଟମ୍ ନାଲି ଜଙ୍ଗଲ ଗଞ୍ଜାଟିଏ ଓ ତିନୋଟି ମୟୂର ମାରିବା ପରେ କୋଳିବଣରୁ ବାହାରି ଜଳଖିଆ ଖାଇବାକୁ ଦୁହେଁ ବାଟେ ବାଟେ ଘରଆଡ଼େ ମୁହାଁଇଲୁ ।

## ତିନି

ବୟୋଜ୍ୟେଷ୍ଠ ଓ ଗୁରୁଜନମାନଙ୍କ ତତ୍ତ୍ୱାବଧାନରେ 'ଜଙ୍ଗଲ ତଥ୍ୟ'ରେ ମୋର ପ୍ରାଥମିକ ଶିକ୍ଷା ତିନୋଟି ନିର୍ଦ୍ଦିଷ୍ଟ ପାଠ୍ୟକ୍ରମରେ କିପରି ସମ୍ପାଦିତ ହେଲା ତାହା ପୂର୍ବରୁ ବର୍ଣ୍ଣନା କରିଛି । ବନ୍ଧୁକ ଠିକ୍ ବାଗରେ ଧରିବା ଓ ଫାଏର୍ କରିବାର କାଇଦା ଶିଖିଲି । ବାଘ ଭାଲୁ ଆଦି 'ହିଂସ୍ର' ଜନ୍ତୁମାନେ ଯେ ଅନାହୂତ ଅବସ୍ଥାରେ ବିଶେଷ ବିପଜ୍ଜନକ ନୁହଁନ୍ତି, ପ୍ରତ୍ୟକ୍ଷ ଅନୁଭୂତି ଦ୍ୱାରା ହିଁ ତାହା ମୋତେ ଶିଖାଇ ଦିଆଗଲା । ବାଲ୍ୟକାଳର ବିଦ୍ୟା ଜୀବନସାରା ଭୁଲିହୁଏନା । ପିଲାଦିନର ସେତିକି ଶିକ୍ଷାକୁ ଉପଯୋଗ କରି ମୁଁ ଶିକାର କିମ୍ବା ଅନ୍ୟ କୌଣସି କ୍ରୀଡ଼ା ପ୍ରତି ଆକୃଷ୍ଟ ହେବି କି ନାହିଁ—ଅଭିଭାବକମାନେ ତାହାର ନିଷ୍ପତ୍ତି ପୁରାପୁରି ମୋ ଉପରେ ଛାଡ଼ିଦେଲେ । ମୋ ବୟସର ପିଲାଙ୍କ ପକ୍ଷରେ ସେ ଦିଗରେ କ'ଣ କ'ଣ କରିବା ଉଚିତ ବା ଉଚିତ ନୁହେଁ, ସେ ବିଷୟରେ ମୋ ଉପରେ ଚାପ ନଦେବାକୁ ପ୍ରୟାସ କରି ନ ଥିବାରୁ ସେମାନଙ୍କ ନିକଟରେ ମୁଁ ଚିରକାଳ କୃତଜ୍ଞ ।

ଭାରତବର୍ଷର ସବୁଆଡ଼େ ଶିକାର ଆଦି କ୍ରୀଡ଼ା ପାଇଁ ପ୍ରଶସ୍ତ ସୁଯୋଗ ରହିଛି । ନିଜର ସାମର୍ଥ୍ୟ ଓ ରୁଚି ଅନୁସାରେ ସେଥିରୁ ଗୋଟିକୁ ବାଛିନେବା ପାଇଁ ଯେତିକି ବିଚାର-ବୁଦ୍ଧି ଦରକାର, ତାହା ଅଳ୍ପ ବୟସ୍କ ବାଳକଙ୍କଠାରେ ମଧ୍ୟ ଥାଏ । ତେଣୁ ନିଜ ଇଚ୍ଛା ମୁତାବକ କ୍ରୀଡ଼ାଟିଏ ବାଛିନେବାର ଆନନ୍ଦ ଏବଂ ପସନ୍ଦ ନ ହେଲେ ତାହାକୁ ପରିତ୍ୟାଗ କରିବାର ଅଧିକାରରୁ ସେମାନଙ୍କୁ ବଞ୍ଚିତ କରିବା ଉଚିତ ନୁହେଁ । ସେ ଦିଗରେ ନିଷ୍ପତ୍ତି ଗ୍ରହଣ କରିବାକୁ ପିଲାକୁ ବଳାବଳ କଲେ କିମ୍ବା ସେ ନିଜେ ପସନ୍ଦ କରୁଥିବା କ୍ରୀଡ଼ାଟିରେ ଶ୍ରେଷ୍ଠତା ଲାଭ କରିବା ପାଇଁ ଅତି ପ୍ରଚ୍ଛନ୍ନଭାବରେ ତା ଉପରେ ଚାପ ପକାଇଲେ ପିଲାର ଆଗ୍ରହ, ଆନନ୍ଦ ଏବଂ ଉତ୍କର୍ଷ ଲାଭ କରିବାର ଅଭିଳାଷ ସେଥିଯୋଗୁଁ ଅନେକାଂଶରେ ହ୍ରାସ ପାଏ ବୋଲି ମୋର ବିଶ୍ୱାସ ।

ପିଲାଦିନେ ଥରେ ସନ୍ନିପାତ ଜ୍ୱରରେ ମୁଁ ଅତି ଗୁରୁତର ଭାବରେ ପୀଡ଼ିତ ହୋଇ ପଡ଼ିଥିଲି । ଜୀବନ-ମରଣର ପ୍ରବଳ ସଂଗ୍ରାମରୁ ମା', ଟମ୍ ଏବଂ ମୋର ଅନ୍ୟ ଭାଇ ଓ ଭଉଣୀମାନଙ୍କ ଅକ୍ଲାନ୍ତ ପ୍ରଚେଷ୍ଟା ହିଁ ମୋର ପ୍ରାଣ ରକ୍ଷା କରିପାରିଲା । ବଞ୍ଚିଗଲି ସତ, କିନ୍ତୁ ଦେହରେ

Digitized by srujanika@gmail.com

ଟିକଏ ହେଲେ ଜୋର୍ ବା ମନରେ ତିଳେ ସ୍ପୃହା ଅଉ ନଥିଲା । ମନରୁ ଉଦ୍‌ବେଗ ଦୂର କରାଇ ପୂର୍ବ ସ୍ୱାସ୍ଥ୍ୟ ଫେରାଇ ଆଣିବା ଦିଗରେ ମୋଠାରେ ଉତ୍ସାହ ଓ ଆଗ୍ରହ ସୃଷ୍ଟି କରିବାପାଇଁ ଟମ୍ ଛୁରିକିଣିଟିଏ ତିଆରି କରି ମୋତେ ଉପହାର ଦେଲେ । ଦୀର୍ଘକାଳ ଧରି ରୋଗ ଭୋଗି ଭୋଗି ମୋତେ ଅରୁଚି ଧରିଯାଇଥିଲା । ସେଦିନ ମାଂସ ପୁରୁଆ କଦାପି ଖାଇବି ନାହିଁ ବୋଲି ମୁଁ ଜିଦ୍ ଧରିଥିଲି । ଟମ୍ ଆସି ଝଟରେ ମୋ ପାଖରେ ବସିଲେ ଓ ପକେଟରୁ ଛୁରିକିଣିଟି ବାହାର କରି ପଚାରିଲେ ଯେ ଦେହରେ ହାତରେ ବଳ ନ ହେଲେ ତାହାକୁ ମୁଁ ବ୍ୟବହାର କରିବି କେମିତି ? ସେହି ମୁହୂର୍ତ୍ତରୁ ପଥ୍ୟ ଖାଇବା ପାଇଁ ମୋର ଅନିଚ୍ଛା ଅରୁଚି ସବୁ କୁଆଡ଼େ ଉଭେଇଗଲା । ଓଜର ଆପତ୍ତି ନ କରି ସୁନାପିଲାଟିପରି ଔଷଧପତ୍ର ପଥ୍ୟପାଣି ସବୁ ଖାଇଲି । ସ୍ୱାସ୍ଥ୍ୟ ଫେରିପାଇବା ପାଇଁ ଢେର ସମୟ ଲାଗିଲା । ସେତିକ ସମୟ ଟମ୍‌ଙ୍କ ପ୍ରରୋଚନାରେ ପରିବାରର ସମସ୍ତେ ନାନା ଉପାୟରେ ମୋତେ ଉତ୍ସାହ ଦେଇ ଛୁରିକିଣିଟିକୁ ଜଙ୍ଗଲରେ ବ୍ୟବହାର କରିବାର ଆକାଂକ୍ଷାକୁ ସଜୀବ ଓ ସତେଜ କରି ରଖିଲେ ।

ଶିକାର ପାଇଁ ନିର୍ଦ୍ଦିଷ୍ଟ ସମୟ ଓ ନିୟମମାନ ରହିଛି ଏବଂ ସମୟ ନିର୍ବିଶେଷରେ ବର୍ଷତମାମ୍ ଯେ ବଣଜଙ୍ଗଲରୁ ଶିକାର ମିଳିଯାଏ ନାହିଁ—ଏହା ପ୍ରଥମ କରି ଟମ୍‌ଙ୍କଠାରୁ ଶିଖିଲି । ସବୁ ବିଷୟ ବିଶେଷଭାବେ ବୁଝାଇ ସେ ମୋତେ କହିଥିଲେ ଯେ ବସା ବାନ୍ଧିବା ସମୟ ହେଲେ ପକ୍ଷୀମାନଙ୍କୁ ଆଉ ଶିକାର କରିଯାଏ ନାହିଁ; ସେତେବେଳେ ଅଣ୍ଡା ଫୁଟାଇବା ଓ ଶାବକଙ୍କ ଯତ୍ନ ନେବା ପାଇଁ ସେମାନଙ୍କୁ ଅବାଧ ସୁଯୋଗ ଦିଆଯାଏ । ପ୍ରକୃତ ଶିକାରପ୍ରେମୀମାନେ ଶିକାରର ନିୟମ ସବୁ ନିଷ୍ଠାର ସହ ପାଳନ କରନ୍ତି ଓ ଜଙ୍ଗଲବାସୀ ପଶୁପକ୍ଷୀଙ୍କୁ ବେପରୁଆଭାବେ କଦାପି ହତ୍ୟା କରନ୍ତି ନାହିଁ । ତେଣୁ ଉପଯୁକ୍ତ ସମୟ ନ ହେବାଯାଏ ଛୁରିକିଣିଟିକୁ ବ୍ୟବହାର ନ କରି ଘରେ ସାଇତି ରଖିବାକୁ ପରାମର୍ଶ ଦେଇ ସେ କହିଲେ ଯେ ଶିକାର ପାଇଁ ନିର୍ଦ୍ଧାରିତ ସମୟରେ ମଧ୍ୟ ଉପଯୋଗର ଉଦ୍ଦେଶ୍ୟ ନ ଥାଇ ଉଚ୍ଛୃଙ୍ଖଳଭାବେ ଅକାରଣ ପଶୁପକ୍ଷୀଙ୍କ ଜୀବନହାନି ଘଟାଇବା ପ୍ରକୃତ ଶିକାରୀର ଧର୍ମ ନୁହେଁ । ଆମ ପାହାଡ଼-ଜଙ୍ଗଲରେ ମିଳୁଥିବା ବନ୍ୟ ପକ୍ଷୀଙ୍କ ମଧ୍ୟରୁ ଛୁରିକିଣିଦ୍ୱାରା କେଉଁ ଗୁଡ଼ିକୁ ମରିଯାଇ ପାରିବ, ତାହା ମୋତେ ବୁଝାଇବାକୁ ଯାଇ ସେ କହିଲେ ଯେ ସେଥିରୁ କେବଳ ପାରା ଓ ହରଡ଼ ଚଢ଼େଇର ମାଂସ ଖିଆଯାଉଥିଲେ ମଧ୍ୟ ସବୁ ପକ୍ଷୀଙ୍କ ହାଡ଼ ଓ ଚମରୁ ସଂଗ୍ରହାଳୟ ପାଇଁ ମଡେଲ୍ ତିଆରି କରିଯାଇପାରେ ।

ପକ୍ଷୀଙ୍କ ଚମ ଉତାରିବା ଛୁରିଟି ଓ ଚମ କଷିବା ପାଇଁ ଶଂଖୁଆମିଶା ସାବୁନ୍ ବୋତଲେ ଟମ୍ ମୋତେ ଆଣି ଦେଇଥିଲେ । ଚମ କଷିବା ବା ମଡେଲ ପ୍ରସ୍ତୁତ ବିଷୟରେ ନିଜର ବିଶେଷ ଧାରଣା ନ ଥିଲେ ସୁଦ୍ଧା ଗୋଟିଏ ପାହାଡ଼ିଆ ଗଣ୍ଡାର ଚମ ଛଡ଼ାଇ ମୋତେ ସେ ବିଷୟରେ ମୋଟାମୋଟି ଗୋଟିଏ ଧାରଣା ସେ ଦେଇଥିଲେ । ପରେ ଅଭ୍ୟାସଦ୍ୱାରା ଏହି ବିଦ୍ୟାଟିକୁ ମୁଁ ଆୟତ୍ତ କଲି । ମୋ ମାଉସୀପୁଅ ଭାଇ ଷ୍ଟିଫେନ୍ ଡ଼'ସ୍ ସେତେବେଳେ କୁମାୟୁଁ ଅଞ୍ଚଳର ପକ୍ଷୀଙ୍କ ବିଷୟରେ ବହିଟିଏ ଲେଖୁଥାଆନ୍ତି । ତାଙ୍କ ବହିରେ ଥିବା ପକ୍ଷୀଙ୍କର ସୁନ୍ଦର ଅଶୀଟି ରଙ୍ଗୀନ ଛବିରୁ ଅଧିକାଂଶ ମୋ'ର ମଡେଲଗୁଡ଼ିକୁ ଦେଖି ଅଙ୍କା

Digitized by srujanika@gmail.com

ହୋଇଥିଲା । ସେ ଭିତରୁ କେତେକ ଅତି ଦୁର୍ଲଭ ପକ୍ଷୀ ମୁଁ ଖାସ୍‌କରି ତାଙ୍କର ବଧ ପାଇଁ ସଂଗ୍ରହ କରିଥିଲି ।

ଟମ୍‌ଙ୍କର ପପି ଓ ମ୍ୟାଗର୍ ନାମକ ଦୁଇଟି କୁକୁର ଥିଲେ । ପପି ଲାଲ ରଙ୍ଗର ଦେଶୀ କୁକୁର । ଦ୍ୱିତୀୟ ଆଫଗାନ୍ ଯୁଦ୍ଧ ସମୟରେ ଟମ୍ ତାକୁ କାବୁଲ ରାସ୍ତାରେ ଭୋକରେ ଦରମରା ହୋଇ ବୁଲୁଥିବା ଦେଖି ସଙ୍ଗରେ ନେଇ ଆସିଥିଲେ । ମ୍ୟାଗର୍ ଛପିଛପିକା ସ୍ପାନିଏଲ୍ କୁକୁରଟିଏ; ଧଳା ଦେହରେ ତାର ଗାଢ଼ ମାଟିଆ ରଙ୍ଗର ଛୋପଗୁଡ଼ାଏ ଓ ଲାଙ୍ଗୁଡ଼ରେ ଚଉଁରି ପରି ଗୋଛାଏ ବାଳ । ପପି ମୋ ପରି ଛୋଟ ଛୋଟ ପିଲାଙ୍କ ସହିତ ମିଶିବାକୁ ବେଶି ପସନ୍ଦ କରୁ ନ ଥିଲା । ମ୍ୟାଗର୍ କିନ୍ତୁ ଭାରି ମେଳାପି । ମୋତେ ସେ ଖୁବ୍ ଭଲପାଉଥିଲା ଓ ନିଜକୁ ମୋର ରକ୍ଷକଭାବେ ନିଯୋଗ କରିବା ଛଡ଼ା ପିଠିରେ ବସାଇ ଖଣ୍ଡେ ବାଟ ବୋହିନେବାକୁ ମଧ୍ୟ ନାରାଜ ହେଉନଥିଲା ।

ମ୍ୟାଗର୍‌ଠାରୁ ଜଙ୍ଗଲ ତଥ୍ୟ ସମ୍ବନ୍ଧରେ କେତୋଟି କଥା ମୁଁ ଶିଖିଛି ; ତାଠାରୁ ପ୍ରଥମ କରି ଶିଖିଲି ଯେ ଜଙ୍ଗଲରେ ଗହଳ ଲଟାବୁଦାରୁ ଆଗେଇ ହୋଇ ନଗଲେ ସେ ଭିତରେ ଆଶ୍ରୟ ନେଇଥିବା ପଶୁଜନ୍ତୁଙ୍କ ବିଶ୍ରାମରେ ବ୍ୟାଘାତ ଘଟେ । ଜନ୍ତୁମାନେ ସେଥିରେ ବିରକ୍ତ ହୁଅନ୍ତି ଓ ସମୟସମୟରେ ସେଭଳି ଅନୁପ୍ରବେଶ ବିରୁଦ୍ଧରେ ପ୍ରତିବାଦ ମଧ୍ୟ କରନ୍ତି । ଜଙ୍ଗଲରେ ମ୍ୟାଗର୍‌ର ଗତିବିଧି ନିରୀକ୍ଷଣ କଲା ପରେ ମୋର ବିଶ୍ୱାସ ହେଲା ଯେ କୁକୁର ମଧ୍ୟ ଶୁଖିଲା ପାସପତ୍ର ଉପରେ ବିରାଡ଼ି ପରି ନିଃଶବ୍ଦରେ ଚାଲିପାରେ । ପ୍ରଥମେ ପ୍ରଥମେ ବଣ-ଜଙ୍ଗଲର ବେଶି ଭିତରକୁ ପଶିବାକୁ ମୁଁ ଡରୁଥିଲି । ଛୁଟିକଣି ଧରି ମ୍ୟାଗର୍ ସହିତ ବାରମ୍ବାର ଜଙ୍ଗଲକୁ ଯିବା ଫଳରେ ମୋର ସାହସ ବଢ଼ିଲା ଓ କ୍ରମେ ଗହଳ ଜଙ୍ଗଲରେ ପ୍ରବେଶ କରିବାକୁ ଆଉ ଭୟ ଲାଗିଲା ନାହିଁ ।

ଜଙ୍ଗଲରେ ଏହିପରି ବୁଲିବାବେଳେ ଥରେ ଏପରି ଏକ ଘଟଣା ଘଟିଲା ଯାହା ଫଳରେ ମ୍ୟାଗର୍ ଆଉ ଅଳପକେ ପ୍ରାଣ ହରାଇ ଥାଆନ୍ତା । ମଡ଼େଲ୍ ପାଇଁ ଲାଲ୍ ଫୁଲ୍‌ଚ ଚଢ଼େଇଟିଏ ହାସଲ କରିବା ଆଶାରେ ସେଦିନ ସକାଳୁ ମ୍ୟାଗର୍ ସହିତ ବଣକୁ ବାହାରିଥିଲି । ବାଟରେ ଡାନ୍‌ସେଙ୍କ ସହିତ ଦେଖା ହେଲା । ଛର୍‌ରା ବନ୍ଧୁକଟିଏ କାନ୍ଧରେ ପକାଇ ଡାନ୍‌ସେ ତାଙ୍କ କୁକୁର ଥିସିଲ୍‌କୁ ନେଇ ବୁଲି ବାହାରିଥିଲେ; ବାଟରେ ଭେଟ ହେବା ପରେ ସେ ମଧ୍ୟ ଆମ ସଙ୍ଗରେ ଚାଲିଲେ । ମ୍ୟାଗର୍ ଓ ଥିସିଲ୍‌ଙ୍କ ଭିତରେ ବିଶେଷ ସଦ୍‌ଭାବ ନ ଥିଲେ ମଧ୍ୟ ଦୁହେଁ ପ୍ରକାଶ୍ୟ ଭାବେ କେବେ କଳିତକରାଳ ଲଗାଉ ନ ଥିଲେ । କିଛି ବାଟ ଚାଲିବା ପରେ ଥିସିଲ୍ ବୁଦା ଉହାଡ଼ରୁ ଝିଙ୍କଟାଏ ଉଡ଼ାଇଆଣିଲା ଓ ମ୍ୟାଗର୍ ମୋ କଥା ନମାନି ତା ସହିତ ଝିଙ୍କ ପଛେ ପଛେ



[ ଲାଲ୍ ଫୁଲ୍‌ଚ ]

Digitized by srujanika@gmail.com

ଗୋଡ଼ାଇଗଲା । ଦୁହେଁ ଦୁଇପଟୁ ଝିଙ୍କ ଉପରେ ଘଣ୍ଟଅଣି ଅକ୍ରମଣ ଚଳାଇ ଥାଆନ୍ତି । ତରବରରେ ଛୁଟିକିଣିଟି ପକେଟରେ ପୂରାଇ ଲମ୍ବ ବାଡ଼ିଟିଏ ଧାଉଁଟି ନେଲି ଓ ମ୍ୟାଗକୁ ଡାକ ଦେଇ ତା ପଛେ ପଛେ ଧାଇଁଲି । କୁକୁର କାଳେ ଘାଏଲ୍ ହେବେ—ଏହି ଆଶଙ୍କାରେ ତାନ୍‌ସେ ମଧ୍ୟ ଗୁଳି ଚଳାଇବାକୁ ସାହସ କଲେ ନାହିଁ । ତାନ୍‌ସେ ତ ଯହଳେ ମୋଟା-ସୋଟା ଲୋକ—ଦଉଡ଼ରେ ଆମକୁ ସେ ପାରିବେ କୁଆଡ଼ୁ ? ଅଳ୍ପ ସମୟ ଭିତରେ ତାଙ୍କୁ ପଛରେ ଛାଡ଼ି କୁକୁରଙ୍କ ପଛେ ପଛେ ମୁଁ ବେଶ୍ ଦୂରକୁ ମାଡ଼ିଗଲି ।

ଆତ୍ମରକ୍ଷା ପାଇଁ ଝିଙ୍କ ତାର କାଠିଗୁଡ଼ିକୁ ତୀରପରି ନିକ୍ଷେପ କରେ ବୋଲି ସାଧାରଣରେ ଯାହା କୁହାଯାଏ, ତାହା ଠିକ୍ ନୁହେଁ । ଝିଙ୍କ ଅତି ସାହସୀ ଜନ୍ତୁ; ପ୍ରାଣ ଥିବାଯାଏ ସେ ଲଢ଼େଇରୁ ଓହରେ ନାହିଁ । ଅତି ଶକ୍ତ ଓ ମୁନିଆଁ ତାର କାଠିଗୁଡ଼ିକୁ ଛଡ଼ାକରି ଶତ୍ରୁ ଆଡ଼କୁ ପଛୁଇ ପଛୁଇ ସେ ଯେପରି ପ୍ରବଳ ବେଗରେ ମାଡ଼ିଆସେ—ସେଭଳି ଆକ୍ରମଣକୁ ପ୍ରତିହତ କରିବା ଅତି କଷ୍ଟକର ।

ଝିଙ୍କପରି ଲଢ଼ୁଆ ଜନ୍ତୁକୁ କାବୁ କରିବା କୁକୁରଙ୍କ ପକ୍ଷରେ ସମ୍ଭବ ନୁହେଁ । ହାତରେ ମୋର ବାଡ଼ିଖଣ୍ଡିକ ଛଡ଼ା ଅସ୍ତ୍ରଶସ୍ତ୍ର କିଛି ନ ଥିଲା । କୁକୁରଙ୍କୁ ମୁଁ ସାହାଯ୍ୟ କରିବା କରି, ଓଲଟି କୁକୁର ଦୁଇଟି ଝିଙ୍କକୁ ବାଧାଦେଇ ତା ଆକ୍ରମଣରୁ ମୋତେ କେତେ ଥର ରକ୍ଷା କଲେ । ଧାଇଁ ଦଉଡ଼ି ସନ୍ଧ୍ୟାଏଁ ଅଧମାଇଲ ଗଲପରେ ବାଟରେ ଗହ୍ୱର ଖୋଲଟିଏ ପଡ଼ିଲା । ଖୋଲ ଭିତରେ ସୁଡ଼ଙ୍ଗ ପରି ଝିଙ୍କଗାତଗୁଡ଼ିଏ । ଖୋଲଠାରୁ ଅଳ୍ପ ଦୂରରେ ମ୍ୟାଗ୍ ଝିଙ୍କର ଥୋମଣିକୁ ଧରିପକାଇଲା ଓ ଥ୍ୱିସିଲ୍ ସଙ୍ଗେ ସଙ୍ଗେ ତା' ତଣ୍ଟିକୁ ଝୁଣି ଧରିଲା । ଝିଙ୍କକୁ ଶକ୍ତଭାବେ କାମୁଡ଼ି ଧରି କୁକୁର ଦୁଇଟି ଜାବ ଫିଟାଇଲେ ନାହିଁ । ତାନ୍‌ସେ ଧଇଁସଇଁ ହୋଇ ସେଠାରେ ଆସି ପହଞ୍ଚିବାବେଳକୁ ଝିଙ୍କର ଦଫା ରଫା ହେବା ଉପରେ । ତାନ୍‌ସେ କିନ୍ତୁ 'ଅଧିକନ୍ତୁ ନ ଦୋଷାୟ' ନୀତିରେ ଦରମରା ଝିଙ୍କ ଦେହରେ ବନ୍ଧୁକରୁ ଛର୍‌ରା ଭର୍ତ୍ତିଏ ବସାଇଦେବାକୁ ଛାଡ଼ିଲେ ନାହିଁ ।

ସେତେବେଳକୁ କୁକୁର ଦୁଇଟିଙ୍କ ଅବସ୍ଥା କହିଲେ ନସରେ । ଝିଙ୍କକାଠି ଗଳିଯାଇ ଦେହରୁ ତାଙ୍କର ଧାର ଧାର ରକ୍ତ ବୋହିଯାଉଥାଏ । ତାନ୍‌ସେ ଓ ମୁଁ ହାତପୋଆନ୍ତାରେ ଥିବା କାଠିଗୁଡ଼ିକୁ ଟାଣିଓଟାରି ବାହାର କଲୁ । ଝିଙ୍କା-ଓଟରେ କାଠି କେତୋଟି ଭାଙ୍ଗି ଯାଇ ଗଡ଼େ ଗଡ଼େ ଚମ ତଳେ ରହିଗଲା । ସେଗୁଡ଼ିକୁ ଚିମୁଟାରେ ଟାଣି ଶୀଘ୍ର ବାହାର କରିବା ଦରକାର । ତାନ୍‌ସେ ମଲା ଝିଙ୍କଟାକୁ ବାଡ଼ିରେ ବାନ୍ଧି କାନ୍ଧରେ ପକାଇଲା ପରେ କୁକୁରଙ୍କୁ ନେଇ ଦୁହେଁ ଘରମୁହାଁ ଛୁଟିଲୁ ।

ଥ୍ୱିସିଲ୍‌ର ଆଘାତଗୁଡ଼ିକ ବିଶେଷ ଗୁରୁତର ନ ଥିଲା । ମ୍ୟାଗ୍ କିନ୍ତୁ ଅତି ସାଘାତିକ ଭାବେ ଆହତ ହୋଇଥାଏ । ଘରେ ପହଞ୍ଚିବାମାତ୍ରେ ନଡ଼ା ବିଛାଇ ତାକୁ ଶୁଆଇ ଦିଆଗଲା । ମ୍ୟାଗ୍ ସେ ଦିନସାରା ଓ ରାତି ତମାମ୍ ନ ଶୋଇ କେବଳ ଘନ ଘନ ଛିଙ୍କିବାକୁ ଲାଗିଲା । ପ୍ରତି ଛିଙ୍କରେ ନାକରୁ ତାର ମୁଣ୍ଡା ମୁଣ୍ଡା ରକ୍ତ ଗଳିପଡ଼ୁଥାଏ ।

Digitized by srujanika@gmail.com

ପରଦିନ ରବିବାର । ଟମ୍ ନୈନିତାଲରୁ ଆସି ଘରେ ପହଞ୍ଚିବା ପରେ ମ୍ୟାଗଗ୍ ନାକରୁ କଲମକାଠି ମୋଟର ଛଅଇଞ୍ଚ ଲମ୍ବ ଝିଙ୍କାଠି ଗଡ଼େ ଚିମୁଟାରେ ଟାଣି ବାହାର କଲେ । ଭଙ୍ଗା କାଠିଟିକୁ କାଢ଼ିଦେବା ମାତ୍ରେ ମ୍ୟାଗଗ୍ ନାକରୁ ପିର୍ ପିର୍ ରକ୍ତ ଛୁଟିବାକୁ ଲାଗିଲା; ଯେତେ ଯାହା କଲେ ମଧ ରକ୍ତଧାର ଅଟକିଲା ନାହିଁ । ସବୁଥିରେ ନିରାଶ ହୋଇ ଶେଷରେ ସମସ୍ତେ ମ୍ୟାଗଗ୍ର ଆଶା ଛାଡ଼ିଲୁ । ଯୋଗକୁ ଅତି ଅପ୍ରତ୍ୟାଶିତ ଭାବେ ତା ଅବସ୍ଥାରେ ଉନ୍ନତି ଘଟିଲା ଓ ବହୁତ ସେବାଶୁଶ୍ରୂଷା ପରେ ଯାଇ ସେ ପୁଣି ସୁସ୍ଥ ହୋଇ ଉଠିଲା ।

ପିଲାଦିନେ ମୋତେ ଦାରୁଖୁନ୍ଦା ବନ୍ଧୁକଟିଏ କିପରି ଦିଆଗଲା, ସେ ବିଷୟ ପରେ କହିବି (୧) । ବନ୍ଧୁକଟି ପାଇବାର ଠିକ୍ ପରେ ପରେ ମ୍ୟାଗଗ୍ ଓ ମୋର ଦୁଇଟି ଅତି ଗୁରୁତ୍ୱକର ଅନୁଭୂତି ହୋଇଗଲା । ଏଥିରୁ ପ୍ରଥମ ଘଟଣାଟି କାଲାଦୁଙ୍ଗୀରେ ଓ ଅନ୍ୟଟି ନୈନିତାଲଠାରେ ଘଟିଥିଲା ।

ମୋର ଅନ୍ୟ ଏକ ବହିରେ 'ନୟାଗାଓଁ' (୧) ଗାଁ ବିଷୟ ଉଲ୍ଲେଖ କରିଛି । 'ନୟାଗାଓଁ'ର ଉର୍ବର ଶସ୍ୟକ୍ଷେତଗୁଡ଼ିକ ସେତେବେଳେ ନାନା ରକମ ଫସଲରେ ହସିଉଠୁଥିଲା । ଗାଁ ତଳ ବୃକ୍ଷମାଳ ଓ ଧୂନିଗଡ଼ ଙ୍କର ମଝିରେ ଥିଲା ଚଉଦମାଇଲ ଓସାର ପଟାଳିଏ ଜଙ୍ଗଲ ଓ ତା ମଝି ମଝିରେ ଘ୍ରୋଟ ପଡ଼ିଆଗୁଡ଼ାଏ । ବଳ ଓ ଙ୍କର ବହୁତ ସମାନ୍ତରାଳ ଭାବେ ଜଙ୍ଗଲ ମଝିଦେଇ ଲମ୍ବି ଯାଇଥିବା ଶିକାର ସଡ଼କଟିର ଦୁଇପାଖେ ବଣ-କୁକୁଡ଼ା ଓ ମୟୂର ଆଦି ପକ୍ଷୀଙ୍କ ଛଡ଼ା ହରିଣ ଓ ବାର୍ହା ମଧ ବହୁସଂଖ୍ୟାରେ ମିଳନ୍ତି; ହରିଣ ଓ ବାର୍ହା ରାତିରେ ସେହି ଜଙ୍ଗଲରୁ ବାହାରି ଗାଁ ତଳ ବଳବାଡ଼ିରେ ପଶି ଫସଲ ଉଜାଡ଼ି ଦିଅନ୍ତି । ଫସଲକ୍ଷେତରେ ପଶିବାକୁ ହେଲେ ଜନ୍ତୁଗୁଡ଼ିକୁ ପ୍ରଥମେ ଶିକାରସଡ଼କଟି ପାର ହେବାକୁ ପଡ଼େ । ପୂର୍ବୋକ୍ତ ଘଟଣା ଦୁଇଟିରୁ ପ୍ରଥମଟି ନୟାଗାଓଁ ପାଖ ଜଙ୍ଗଲର ସେହି ଶିକାର ସଡ଼କରେ ହିଁ ଘଟିଥିଲା ।

ଆମ ଗାଁ କାଲାଦୁଙ୍ଗୀ ନୟାଗାଓଁଠାରୁ ମୋଟେ ତିନିମାଇଲ ଦୂର । ସେଦିନ ମୟୂର ମାରିବା ପାଇଁ ମ୍ୟାଗଗ୍କୁ ସଙ୍ଗରେ ନେଇ ସିନ୍ଦୁରା ଫାଟିଲାବେଳୁ ଘରୁ ବାହାରିଥିଲି । ପାହାନ୍ତା ପହର; ଗଛଗହଳରୁ ଅନ୍ଧାର ଛାଡ଼ି ନ ଥାଏ । ଜଙ୍ଗଲରେ ମହାବଳ ଓ ଚିତାବାଘ ଥିବାରୁ ବୁଦାବାଡ଼ରୁ ଅଡ଼େଇ ହୋଇ ମ୍ୟାଗଗ୍ ଓ ମୁଁ ସଡ଼କ ମଝିରେ ହିଁ ଚାଲୁଥାଉ । ସୂର୍ଯ୍ୟ ଉଦୟ ହେଲାବେଳକୁ ଶିକାର ସଡ଼କରେ ପହଞ୍ଚିଲୁ; ସେଠିଠାରେ ଅଟକି ବସି ବନ୍ଧୁକ ସଜ କରିବାରେ ମନ ଦେଲି । ସେକାଳର ଦାରୁଖୁନ୍ଦା ବନ୍ଧୁକରେ ଗୁଳିବାରୁଦ ଭରିବା ଥିଲା ଏକ ଦୀର୍ଘ ଓ ଦୁରୂହ ବ୍ୟାପାର । ମାପ ଅନୁସାରେ ନଳୀରେ ବାରୁଦ ଭର୍ତ୍ତି କରି ତା ଉପରେ ଫେଲ୍ଟ୍ ଖଣ୍ଡିଏ ମାଡ଼ି ବସାଇବା ପରେ ସେଥିରେ ଛର୍ରା ଭର୍ତ୍ତିଯାଏ ଓ ପଟିର ଚକଟିଏ ପୂରାଇ ଖୁନ୍ଦାବାଡ଼ିରେ ଶକ୍ତଭାବେ ଠେସିବାକୁ ହୁଏ । ବାଡ଼ିଟି ଛୁଟିକି ଆସିଲା ପରେ ହାତକୁ

(୧) 'ମୋର ଭାରତ' ବହିଟି ଦ୍ରଷ୍ଟବ୍ୟ—ଅନୁବାଦକ ।

Digitized by srujanika@gmail.com

ଲଗିଲେ ବନ୍ଧୁକ ଦୋରସ୍ତ ହେଲା ବୋଲି ଜଣାପଡ଼େ । ତା'ପରେ ପ୍ରକାଣ୍ଡ ଘୋଡ଼ଆ ଦୁଇଟିକୁ ଅଧାଅଧି ଟେକ ରକ୍ତକ ବସାଇପାରିଲେ ବନ୍ଧୁକ ସଜ ହେଲା ବୋଲି ଧରିଯାଏ ।

ବନ୍ଧୁକ ଠିକ୍‌ଭାବେ ସଜ କରିଛୁ ବୋଲି ମନ ମାନିଲା ପରେ ବଳକା ବାରୁଦ ଓ ଛର୍‌ରାଙ୍କ ମୁଣିରେ ସାଇତି ରଖି ମ୍ୟାଗର୍ ସହିତ ଶିକାର ସରରେ ଅଗେଇଲି । ବଣ-କୁକୁଡ଼ା ଓ ମୟୂର ଆମ ସାମନାରେ ଶିକାର ସରଟିକୁ କେତେଥର ପାରହେଲେ ମଧ୍ୟ ମୁଁ ଗୁଳି ଚଳାଇବାଯାଏ କେହି ଅଟକିଲେ ନାହିଁ । ଅଧମାଇଲ୍ ଆଗକୁ ବାଟ କଡ଼ରେ ଜଙ୍ଗଲପେର୍ ଗ୍ରେଟ ପଡ଼ିଆଟିଏ ପଡ଼ିଲା । ଶିକାର ସରରୁ ଠିକ୍ ପଡ଼ିଆକୁ ଗଡ଼ିଛୁ, ଏତିକିବେଳେ ପଡ଼ିଆ ଆରମୁଣ୍ଡରେ ସାତୋଟି ମୟୂର ମୟୂରୀ ଧାଡ଼ି ହୋଇ ଜଙ୍ଗଲରେ ପଶିଯିବା ଦେଖିଲୁ । ଆମେ ନିଃଶବ୍ଦରେ ସେଠାକୁ ଅଗେଇଯିବା ମାତ୍ରେ ମୟୂରଗୁଡ଼ିକୁ ହୁରୁଡ଼ାଇବା ପାଇଁ ମ୍ୟାଗର୍‌କୁ ଲଗାଇଦେଲି ।

ଅନ୍ୟ ପକ୍ଷୀ ଅପେକ୍ଷା ମୟୂର ହୁରୁଡ଼ାଇବାରେ ମ୍ୟାଗର୍‌ର ବେଶି ଆନନ୍ଦ । ଜଙ୍ଗଲରେ କୁକୁର ଗୋଡ଼ାଇ ଆସିଲେ ମୟୂର ଉଡ଼ିଯାଇ ଗଛଡାଳରେ ବସନ୍ତି । ମ୍ୟାଗର୍ ଗଛ ଚାରିପଟେ ଧାଁ-ଦଉଡ଼ କରି ମୟୂରଙ୍କ ଦୃଷ୍ଟି ଆକର୍ଷଣ କରେ ଓ ଗଛରୁ ତାଙ୍କୁ ଓହ୍ଲାଇବାକୁ ଦିଏ ନାହିଁ । ସେହି ଅବସରରେ ଗୁଳି ଚଳାଇବା ପାଇଁ ସୁବିଧା ଜାଗାଟିଏ ଠଉରାଇ ମୟୂରଙ୍କ ଅଲକ୍ଷ୍ୟରେ ସେଠାକୁ ଅଗେଇଯିବାକୁ ମୁଁ ସୁଯୋଗ ପାଏ । ସେତେବେଳେ ମୁଁ ନୂଆ ନୂଆ ବନ୍ଧୁକ ନିଶାଣ କରୁଥାଏ; ବସିଲା ଚଢ଼େଇ ଦେଖିଲେ ମଧ୍ୟ ଗୁଳି ବଜାଇଦେବା ମୋ ପାଇଁ କାଠିକର ପାଠ । ମ୍ୟାଗର୍ ଓ ମୋର ମିଳିତ ଚେଷ୍ଟା ସତ୍ତ୍ୱେ ମୟୂରଟିଏ ଶିକାର କରିବା ମୋ ପକ୍ଷେ ଅତି ଦୁଷ୍କର ହୋଇପଡ଼େ ।

ସେଦିନ କାହିଁକି ମୟୂରଗୁଡ଼ିକ ଗଛଡାଳକୁ ଉଡ଼ି ନଯାଇ କେବଳ ଧାଇଁବାକୁ ଲଗିଲେ; ମ୍ୟାଗର୍ ତାଙ୍କ ପଛେ ପଛେ ଗୋଡ଼ାଇ ବଡ଼ ବଡ଼ ଗଛ ଓ ଝାଟିବୁଦାର ଚକଡ଼ାଏ ଗହଳ ଜଙ୍ଗଲର ପ୍ରାୟ ଶହେ ଗଜ ଭିତରକୁ ପଶିଗଲା । ତା'ପରେ ହଠାତ୍ ଝୋପ ଭିତରୁ ମୟୂରଙ୍କ ଚର୍‌ଚରେ ଓ ଡେଣା ଫଡ଼ ଫଡ଼ କରି ଉଡ଼ିଯିବା ଶବ୍ଦ ସହିତ ମ୍ୟାଗର୍‌ର ଆତଙ୍କିତ ଆର୍ତ୍ତନାଦ ଓ ମହାବଳ ବାଘର କ୍ରୁଦ୍ଧଗର୍ଜନ ଏକସଙ୍ଗରେ ଶୁଣିବାକୁ ପାଇଲି । ଯାହା ମନେହେଲା, ମୟୂରଗୁଡ଼ିକ ମ୍ୟାଗର୍‌କୁ ବାଟ କଢ଼ାଇ ନେଇ ଝୋପ ଭିତରେ ଶୋଇଥିବା ଗୋଟିଏ ମହାବଳ ବାଘ ପାଖରେ ହାବୁଡ଼ାଇ ଦେଇଛନ୍ତି ଏବଂ ଅପ୍ରତ୍ୟାଶିତ ଭାବରେ ଭେଟାଭେଟି ହୋଇଯିବା ଫଳରେ ମୟୂର, କୁକୁର ଓ ବାଘ ପ୍ରତ୍ୟେକେ ନିଜ ନିଜ ଢଙ୍ଗରେ ବିସ୍ମୟ, ଭୟ ଓ ବିରକ୍ତି ପ୍ରକାଶ କରୁଛନ୍ତି ।

ଅତି କରୁଣଭାବରେ ଥରଟିଏ ଆର୍ତ୍ତନାଦ କରିଉଠି ମ୍ୟାଗର୍ ହୋବାଲା ଗୁଣ୍ଡ ପ୍ରାଣ-ବକଳରେ ମୋ ଆଡ଼କୁ ଲୁଚିଆସିଲା । ବାଘ ତୁହାଇ ତୁହାଇ ଗର୍ଜନ କରି ତା ପଛେ ପଛେ ଗୋଡ଼ାଇଥାଏ । ସେ ଭିତରେ ମୟୂରଟିଏ ତରକ ଉଚ୍ଚ ସ୍ୱରରେ ଆତଙ୍କ ଧ୍ୱନି କରି କରି ମୋ ମୁଣ୍ଡ ଉପର ଗଛ ଡାଳରେ ଆସି ବସିପଡ଼ିଲା । ସେତେବେଳକୁ କାଳୁ ମୟୂର ମାରିବାର ସଉକ ମୋ ମନରୁ ପୂରାପୂରି ଉଭେଇ ଯାଇ କେବଳ ପ୍ରାଣ ନେଇ ପଳାଇବାର

Digitized by srujanika@gmail.com

ଏକ ତୀବ୍ର ଆକାଂକ୍ଷା ତାର ସ୍ଥାନ ଅଧିକାର କଲାଣି । ବାଟ ଅବାଟ ନମାନି ଅମଡ଼ାମଡ଼ାରେ ପଶି ପ୍ରାଣମୂର୍ଚ୍ଛା ଧାଇଁଲାବେଳେ ଅତି ବିଶ୍ୱସ୍ତ ସହଚର ମ୍ୟାଗର୍‌ର ଜୀବନ ପ୍ରତି ବିପଦ ଥିବା କଥା ଯେ ମୋ ମନକୁ ଆଦୌ ଛୁଇଁନଥିଲା—ତାହା ଏଠାରେ ମୁକ୍ତକଣ୍ଠରେ ସ୍ୱୀକାର



କରୁଛି । ମୋ ପ୍ରତି ଧ୍ୟାନ ଦେବାକୁ ମ୍ୟାଗର୍‌କୁ ମଧ୍ୟ ତର ନଥିଲା । ମୁଁ ଦୁଇ ଗୋଡ଼ରେ ପ୍ରାଣମୂର୍ଚ୍ଛା ଧାଉଁଥିବା ଭିତରେ ମ୍ୟାଗର୍ ତାର ଗୃହେଷ୍ଟିଯୋକ ଗୋଡ଼ର ସଦୁପଯୋଗ କରି ମୁହୂର୍ତ୍ତକେ ମୋତେ ପଛରେ ଛାଡ଼ି ବହୁଦୂରକୁ ଆଗେଇଗଲା । ଆମ ଦୁହିଁଙ୍କ ସେତେ ଗୋଟିଏ ଚିନ୍ତା ଘାରିଥାଏ—କେମିତି ସେଠାରୁ ପଳାଇଯିବୁ ଦୂରକୁ—ବହୁତ ଦୂରକୁ—ଯେଉଁଠି ମହାବଳ ବାଘ ଆଦି ଜନ୍ତୁଙ୍କର ସତ୍ତା ମଧ୍ୟ ନଥିବ । ମ୍ୟାଗର୍ ମୋତେ ଟପିଯିବା ପରେ ବାଘର ଗର୍ଜନ ଥମିଗଲା ସତ; କିନ୍ତୁ ସେଥିଯୋଗୁ ଆମ ଗତିବେଗ ତିଳାର୍ଦ୍ଧେ ଊଣା ହେଲା ନାହିଁ ।

ବହୁବର୍ଷ ପରେ ଏହି ଘଟଣାଟି ଏବେ ସ୍ମରଣ କଲେ ଏକ ନିର୍ଦ୍ଦିଷ୍ଟ ଚିତ୍ର କାହିଁକି ବାରମ୍ବାର ମନ ଭିତରୁ ଉଙ୍କି ମାରେ । ମନେହୁଏ, ସତେ ଯେପରି ବାଘଟା ଜଙ୍ଗଲଘେରା ହେତୁ ଶ୍ରେଷ୍ଠ ମଞ୍ଚଆ ମଞ୍ଚିରେ ବସି ଆମକୁ ଧାଇଁବା ଦେଖି ହସୁଛି । ନିଦରେ ବ୍ୟାଘାତ ଘଟାଇଥିବା କୁକୁରଟାକୁ ସେ ଛୁରୁଡ଼ାଇ ଦେଇଥିଲା ମାତ୍ର । ସାମାନ୍ୟ ସେତିକି ଯୋଗୁଁ କୁକୁରଟା ଓ ପିଲାଟାଏ ଯେ ଏମିତି ପଞ୍ଚା ଉଠି ଧାଇଁବେ, ଏକଥା ଭାବିଲାବେଳକୁ ନିଜକୁ ରୋକି ନପାରି ସେ ହସି ହସି ବେଦମ୍ ହୋଇଯାଉଛି ।

× × × ×

ଶୀତଦିନ ଶେଷ ହେବା ଉପରେ । ଆମେ ନୈନିତାଲ୍ ଫେରିବାକୁ ଆଉ ଅଳ୍ପଦିନ ଥାଏ । ମ୍ୟାଗର୍ ସେଦିନ ମୋ ଅଜାଣତରେ ତାର ମହିଳାବନ୍ଧୁ ଗାଁର ଗୋଟିଏ ମାଈକୁକୁରକୁ ଘଣ୍ଟ୍ଲିବାକୁ ଚାଲିଯାଇଥିବାରୁ ବଣକୁକୁଡ଼ା ସନ୍ଧାନରେ ଏକାକୀ ବାହାରିବାକୁ ବାଧ୍ୟ

Digitized by srujanika@gmail.com

ହେଲି । ସେତେବେଳେ ଗହଳ ଜଙ୍ଗଲରେ ପ୍ରବେଶ କରିବାକୁ ମୁଁ ସାହସ କରୁ ନଥିଲି । ତେଣୁ ଖୋଲା ଜାଗାମାନ ବାଛି ହେନ୍ଦୁ ଦାଟେ ବୁଲି ବାର୍କି ଗ୍ଲୁଲିଲି ନସ୍ୟାଗାଓଁ ତଳି ଗାରୁପୁ ସଡ଼କ ପାଖକୁ । ସଡ଼କ କଡ଼ ବଣ୍ଟୁ ସ୍ଥାନରେ ବଣକୁକୁଡ଼ା ଭୁଇଁ ଘିର୍ମି ଅନ୍ଧାର ଖୁଣ୍ଟି ଖାଉଥିବା ଦେଖିଲି । କିନ୍ତୁ ସୁବିଧା ଆଡ଼ୁଆଳ ବିନା ମୁଁ ପାଖେଇବାରୁ କୁକୁଡ଼ାଗୁଡ଼ିକ ପ୍ରଥର ହୁରୁଡ଼ି ପଳାଇଗଲେ । ଶେଷରେ ଜଙ୍ଗଲରେ ଝିହାଡ଼ ପଶିବାକୁ ପଡ଼ିବ ଜାଣି ଜୋତା ମୋଜା ଖୋଲିଲି । ଶ୍ରେଷ୍ଠ ଶ୍ରେଷ୍ଠ ଘାସ ଓ ବାଉଁଶବୁଦା ମଝି ମଝିରେ ସେଠାରେ ବଡ଼ ବଡ଼ ଗଛଗୁଡ଼ିଏ । ସେ ଭିତରେ ଗଳିପଶି ନିଃଶବ୍ଦରେ କେଇ ପାହୁଣ୍ଡ ଯିବା ପରେ ଜାଗାଏ ଜଙ୍ଗଲି ଗଞ୍ଜାଟିଏ ଗଛ ତଳେ ଶୁଖିଲା ପତ୍ର ଖେଳାଉଥିବା ନଜରରେ ପଡ଼ିଗଲା ।

ବଣକୁକୁଡ଼ା ପୋଷାକୁକୁଡ଼ାଠାରୁ ଡରକା । ଅଳିଆଗଦା ଘେଲାଉଥିବା ପୋଷା କୁକୁଡ଼ାଙ୍କ ପରି ବଣକୁକୁଡ଼ା ମଧ୍ୟ ଶୁଖିଲା ଘାସପତ୍ରରୁ ପୋକଜୋକ ଖୁଣ୍ଟି ଖାଇଲାବେଳେ ବିପଦ ପ୍ରତି ସଦା ସତର୍କ ରହି ଚାରିଆଡ଼କୁ ବାରମ୍ବାର ମୁଣ୍ଡ ଟେକି ଅନାନ୍ତି । ଗଞ୍ଜାଟି ମୋ'ଠାରୁ ବେଶ୍ ଦୂରରେ ଥିଲା; ପାଦ ଚିପି ଚିପି ଆଗେଇବା ଭିତରେ ସେ ବାରମ୍ବାର ମୁଣ୍ଡ ଟେକି ଅନାଇବା ଯୋଗୁଁ ପ୍ରତି ଗଜେ ଦୁଇ ଗଜରେ ମୋତେ ଅଟକି ଛିଡ଼ା ହେବାକୁ ପଡ଼ିଲା । ଶେଷରେ ଅତି ସନ୍ତର୍ପଣରେ ଛପି ଛପି ଗଞ୍ଜାଟିର ବେଶ୍ ପାଖକୁ ଚାଲିଆସିବା ବେଳକୁ ସାମନାରେ ଅଳ୍ପ ଗମ୍ଭୀର ଗାତଟିଏ ପଡ଼ିଲା । ଗାତକୁ ଘେରି ଆଣ୍ଠୁଏ ଉଚ୍ଚ ବଡ଼ ବଡ଼ ଘାସ ଆଉ ଆରପାଖରେ ମୂଳରୁ ଟେକା ଥିବା ଶ୍ରେଷ୍ଠ ଗଛଟିଏ । ଗଛ ଟେକାରେ ବନ୍ଧୁକ ଆଶ୍ରା କଲେ ସହଜରେ ନିଶାଣ କରିହେବ । ଗଞ୍ଜା ମୁଣ୍ଡ ନୁଆଁଇଦେବା ମାତ୍ରେ ତା ଉପରେ ତୀକ୍ଷ୍ଣ ନଜର ରଖି ଗାତଟିକୁ ପାରହେବା ପାଇଁ ଧୀରେ ଧୀରେ ଗୋଡ଼ ବଢ଼ାଇଲି ।

ଗାତଭିତରେ ପ୍ରକାଣ୍ଡ ଅଜଗର ସାପଟାଏ ଟେକୋବାନ୍ଧି ଶୋଇଥିଲା । ଗଞ୍ଜା ଉପରେ ନଜର ରଖି ତଳକୁ ନ ଅନାଇ ପାହୁଣ୍ଡେ ଆଗେଇ ଯିବା ମାତ୍ରେ ଖାଲି ପାଦଟା ତା'ରି ଉପରେ ପଡ଼ିଗଲା । ହାଉଳି ଖାଇ କୁଦାକେ ଗାତ ପାରି ହୋଇ ଆରପାଖରେ ଖଣ୍ଡେ ଦୂରରେ ଯାଇ ପଡ଼ିଲି । ମହାବଳ ବାଘ ଦେଖି ଯେତେ ବେଗରେ ଧାଇଁଥିଲି,



ମୋ ପରି ପିଲାଟିଏ ସେତେ ବେଗରେ; ଧାଇଁ ପାରେ ବୋଲି ସେଥିପୂର୍ବରୁ ମୁଁ କଦାପି ବିଶ୍ୱାସ କରିନଥାନ୍ତି । ଅଜଗର ସାପକୁ ମାଡ଼ିଦେବା ପୂର୍ବରୁ ଏତେ ଉଚ୍ଚକୁ କୁଦିପାରିବି ବୋଲି ମୋର ଧାରଣା ନଥିଲା । ସେ ଯାହାହେଉ, ଗାତ ଆରପାଖରେ ପଡ଼ିବା ମାତ୍ରେ ଅତର୍କିତରେ ବୁଲିପଡ଼ିଲି ଓ ଭୟଙ୍କଯାକ ଛରା ଅଜଗର ଦେହରେ ବସାଇଦେଇ ଅଣନିଶ୍ୱାସୀ ହୋଇ ସେଠାରୁ ଧାଇଁଲି—ତାପରେ କଣ ହେଲା ଦେଖିବାକୁ ଡର ନଥିଲା । ପଛକୁ ଅନାଇବା

Digitized by srujanika@gmail.com

ତ ଦୂର କଥା, ବଣବୁଦା ପାର ହୋଇ ସଡ଼କକୁ ଉଠିବା ପର୍ଯ୍ୟନ୍ତ ନାକମୁଲଟେ ଧାଇଁବା ଛଡ଼ା ନିଶ୍ୱାସ ମାରିବାକୁ କେଉଁଠି ଟିକିଏ ଅଟକିଥିବା ମୋର ମନେନାହିଁ ।

ଉତ୍ତର ଭାରତର ବିଭିନ୍ନ ଜଙ୍ଗଲମାନଙ୍କରେ ବହୁବର୍ଷ ଧରି ଚଳପ୍ରଚଳ ହେବା ଭିତରେ ଅଜଗର ସାପ ମଣିଷ ମାରିବା ମୁଁ କେବେ ଶୁଣିନାହିଁ । ତା ସତ୍ତ୍ୱେ ସେଦିନ କେବଳ କପାଳ ଜୋର୍‌ରୁ ଘୋର ଦୁର୍ବିପାକରୁ ବର୍ତ୍ତିଗଲି ବୋଲି ଭାବୁଛି । ମୋ ତମ୍ବୁ ନିକଟରେ ଥରେ ପ୍ରକାଣ୍ଡ ଅଜଗର ସାପଟାଏ ଗୋଟିଏ ପ୍ରାପ୍ତବୟସ୍କ ହରିଣର ଲାଙ୍ଗୁଡ଼ କାମୁଡ଼ି ଧରିଥିଲା ଓ ହରିଣଟି ତତ୍‌କ୍ଷଣାତ୍ ଭୂଇଁରେ କଚାଡ଼ି ପଡ଼ି ଭୟରେ ପ୍ରାଣତ୍ୟାଗ କରିଥିଲା । ଗାତ ଭିତରେ ଅଜଗର ସାପଟା ଶୋଇଥିଲା ବୋଧହୁଏ; ଚେଇଁଥିଲେ ମୋ ପାଦକୁ ସେ ନିଶ୍ଚୟ କାମୁଡ଼ି ଧରିଥାଆନ୍ତା ଓ ସେତିକରେ ହରିଣଟି ପରି ମୋ ପିଣ୍ଡରୁ ମଧ ପ୍ରାଣ ଛାଡ଼ିଯାଇଥାଆନ୍ତା । ତେଣୁ ଅଜଗର ମୋତେ ପ୍ରାଣରେ ମାରିଥାଆନ୍ତା କି ନାହିଁ—ତାହା ନେଇ ତାର୍କିକ ବିଶ୍ଳେଷଣ ବା ସୂକ୍ଷ୍ମ ବାଦାନୁବାଦ ପାଇଁ ଅବକାଶ ନାହିଁ ।

ଗାତ ଭିତରେ ଶୋଇଥିବା ଅଜଗର ସାପଟିର ଲମ୍ବ ଓ ମୋଟେଇ କେତେ ଓ ଛର୍‌ରାମାଡ଼ରେ ସେ ମଲା କି ନାହିଁ—ସେଠାକୁ ଫେରି ତାହା ଦେଖିଯିବାକୁ ମୋର ସାହସ ପାଇଲି ନାହିଁ । ସେ ସବୁ ଅଞ୍ଚଳରେ ଅଠର ଫୁଟ ଯାଏ ଲମ୍ବ ପ୍ରକାଣ୍ଡ ଅଜଗର ସାପ ମିଳନ୍ତି । ସେଭଳି ସାପ ହରିଣ ଓ କୁଟୁରା ଆଦି ଜନ୍ତୁଙ୍କୁ ଗୋଟାପଣେ ଗିଳିଥିବା ମୁଁ ଦେଖିଛି ।

× × × ×

କାଲାଦୁଙ୍ଗୀରୁ ନୈନିତାଲ୍ ଫେରିବାର ଅଳ୍ପଦିନ ହୋଇଥାଏ । ନୈନିତାଲ୍‌କୁ ଘେରି ରହିଥିବା ଜଙ୍ଗଲରେ ସେତେବେଳେ ନାନାରକମ ପଶୁପକ୍ଷୀ ଓ ବିଶେଷ କରି ପାହାଡ଼ିଆ କୁକୁଡ଼ା ବହୁ ସଂଖ୍ୟାରେ ମିଳୁଥିଲେ । ଆଖପାଖରେ ବେଶି ଶିକାରୀ ନଥିଲେ । କାଇଦା କଟକଣା ବେଶି ନଥିବାରୁ ମୁକ୍ତଭାବରେ ଶିକାର କରିବା ସମ୍ଭବ ହେଉଥିଲା । ଚଢ଼େଇ ମାରିବା ସେ ସମୟରେ ଏତେ ସହଜ ଥିଲା ଯେ, ସ୍କୁଲ୍‌ରୁ ଫେରି ମ୍ୟାଗର୍ ସହିତ ବଣରେ ଘେରିଏ ବୁଲିଆସିବା ଭିତରେ ରାତି ପୋଷାଇ ପାଇଁ ପାହାଡ଼ିଆ କୁକୁଡ଼ା ବା ତିତିର୍ ହଳେ ମାରି ସନ୍ଧ୍ୟା ପୂର୍ବରୁ ମୁଁ ଘରକୁ ବାହୁଡ଼ୁଥିଲି ।

ସେଦିନ ସନ୍ଧ୍ୟାବେଳେ ମ୍ୟାଗର୍ ସହିତ ଶିକାର ସନ୍ଧାନରେ କାଲାଦୁଙ୍ଗୀ ସଡ଼କରେ ବୁଲୁଥିଲି । ସଡ଼କ କଡ଼ ବଣବୁଦାରୁ ମ୍ୟାଗର୍ କେତେ ଥର ପାହାଡ଼ିଆ କୁକୁଡ଼ା ହୁରୁଡ଼ାଇ ଆଣିଲା । କୁକୁଡ଼ାଗୁଡ଼ିକ ଉଡ଼ିଯାଇ ଗଛଡାଳରେ ବସୁଥାଆନ୍ତି; କିନ୍ତୁ ପ୍ରତିଥର ଗୁଳି ଚଳାଇବାର ଠିକ୍ ପୂର୍ବରୁ ଡରିକରି ପଳାଉଥାଆନ୍ତି । କେଇ ଥର ଏହିପରି ଘଟିବାପରେ ସାରିୟାତାଲ୍ ହ୍ରଦ ପାଖରେ ଦୁହେଁ ସଡ଼କ ଛାଡ଼ି ଜଙ୍ଗଲରେ ପଶିଲୁ । ଜଙ୍ଗଲ ଭିତରେ ଭିତରେ ଘେରିଏ ବୁଲି ଆଗରେ ନୈନିତାଲ ସଡ଼କ ଧରିବି ବୋଲି ଠିକ୍ କରିଥାଏ । ସାରିୟାତାଲ୍ କୂଳରେ ପାହାଡ଼ିଆ କୁକୁଡ଼ାଟିଏ ମାରିଲି । ସେଠାରୁ ଗହଳ ଝାଟିବୁଦାରେ

Digitized by srujanika@gmail.com

ପଶି ଗଦାଏ ବଡ଼ ବଡ଼ ପଥର ଉପରେ ଚଢ଼ି ଦୁହେଁ ସଡ଼କଠାରୁ ଦୁଇଶହ ଗଜକୁ ପାଖେଇ ଆସିଲୁ । ଆଗକୁ ଜଙ୍ଗଲପେଷ୍ଟ ଗ୍ଲେସ ପଡ଼ିଅଛିଏ; ପଡ଼ିଆ ଆରପାଖରେ ପଟାଳିଏ ବଣ-ହରଗଉର୍ଗ ଗଛ । ଅମେ ଅନାଇଥିବା ଭିତରେ ପାହାଡ଼ିଆ କୁକୁଡ଼ା କେତୋଟି ହରଗଉର୍ଗ ବଣରୁ ବାହାରି ପାଖର ଗୋଟିଏ ଝଙ୍କାଳିଆ ବୁଦାରେ ପଶି କୋଳି ଖାଇବାକୁ ଲାଗିଲେ । ମଝିରେ ମଝିରେ ବୁଦାଗହଳରୁ ଖଣ୍ଡି ଉଡ଼ା ଦେଇ ଉଠିଲାବେଳେ କୁକୁଡ଼ାଗୁଡ଼ିକ ମୋତେ ଦେଖାଯାଉଥାନ୍ତି । ସେତେବେଳେ ମୁଁ ନୂଆ ନୂଆ ବନ୍ଧୁକ ଧରିଛି; ଉଡ଼ନ୍ତା ଚଢ଼େଇକୁ ଲକ୍ଷ କରିବା ମୋ ପକ୍ଷରେ ଅସମ୍ଭବ । ତେଣୁ ସେହିଠାରେ ନିଶ୍ଚଳ ହୋଇ ବସି କୁକୁଡ଼ାଟିଏ ବୁଦା ଉହାଡ଼ରୁ ପଦାକୁ ବାହାରିବା ପାଇଁ ଧୈର୍ଯ୍ୟ ଧରି ଅପେକ୍ଷା କଲି ।

ବସିବାର କିଛି ସମୟ ପରେ ଦୁଇଶହ ଗଜ ଦୂର ସଡ଼କର ମୋଡ଼ ପାଖରୁ ଦଳେ ଲୋକଙ୍କ ପାଟିତୁଣ୍ଡ ଶୁଭିଲା । ଲୋକଗୁଡ଼ିକ କଥାବାର୍ତ୍ତା ହୋଇ ବାଟ ଚାଲୁଥାଆନ୍ତି । ହସ ଓ ପାଟିତୁଣ୍ଡ ସହିତ ଟିଣବାସନର ଠଣ୍ ଠଣ୍ ଶବ୍ଦ ଶୁଣି ଜାଣିଲି ଯେ ଗାଈଆଳ ଦଳେ ନୈନିତାଲରେ ଦୁଧ ବେପାର ସାରି ସାରସ୍ୱାତାଲ୍ ହଦ ତଳ ତାଙ୍କ ଗାଁକୁ ବାହୁଡ଼ୁଛନ୍ତି । ଗାଈଆଳପଲ୍ଟାଙ୍କ ସଡ଼କରେ ଆଗେଇ ଆସି ଠିକ୍ ଆମର ସଳଖରେ ପହଞ୍ଚିବା ମାତ୍ରେ ହଠାତ୍ ଏକ ସ୍ୱରରେ ପାଟିଟାଏ କରିଉଠିବାରୁ ଜାଣିଲି ଯେ ଜଙ୍ଗଲର କୌଣସି ଜନ୍ତୁକୁ ସେମାନେ ସଡ଼କ ଉପରୁ ଘଉଡ଼ାଇ ଦେଉଛନ୍ତି । ପର ମୁହୂର୍ତ୍ତରେ ପଡ଼ିଆ ଉପର ପାଖରୁ ବଡ଼ ଜନ୍ତୁଟିଏ ବଣରେ ଭୁସଭୁସ ପଶିଆସୁଥିବା ଶୁଭିଲା । ଗହଳ ଲଟାବୁଦା ଭିତରୁ ଜନ୍ତୁଟିକୁ ମୁଁ ଦେଖିପାରୁ ନଥାଏ । ଏତିକିବେଳେ କୁକୁଡ଼ାପଲକ ହରଗଉର୍ଗ ବଣରୁ ହୁରୁଡ଼ି ଆସି ଡେଣା ଫଡ଼ ଫଡ଼ କରି ଆମ ଉପରଦେଇ ଉଡ଼ିଗଲେ । ଠିକ୍ ପରେ ପରେ ପ୍ରକାଣ୍ଡ ଚିତାବାଘଟାଏ ଜଙ୍ଗଲ-ଧାରରୁ ପଡ଼ିଆ ମଝିକୁ ଡେଇଁ ପଡ଼ିଲା ।

ଭୂଇଁକୁ ନ ଛୁଇଁଣୁ ଚିତାବାଘ ଆମ ଦୁହିଁଙ୍କୁ ଦେଖିଦେଇ ସମ୍ପୂର୍ଣ୍ଣ ନିଶ୍ଚଳ ହୋଇ ସେହିଠାରେ ଲେସଟାଇ ପଡ଼ିଲା । ପଡ଼ିଆଟି ପ୍ରାୟ ତିରିଶ ଡିଗ୍ରୀ କୋଣରେ ଅମ ଆଡ଼କୁ ଗଡ଼ିଅସିଥାଏ । ଚିତାବାଘ ଅମଠାରୁ ଅଳ୍ପ ଉଚ୍ଚରେ ଓ ମୋଟେ ଦଶଗଜ ଦୂରରେ ଗଡ଼ାଣି ଉପରେ ଥିବାରୁ ମୁଣ୍ଡରୁ ଲାଞ୍ଜ ପର୍ଯ୍ୟନ୍ତ ପୂରା ଦେଖାଯାଉଥାଏ ।

ଚିତାବାଘକୁ ଦେଖିବା ମାତ୍ରେ ବନ୍ଧୁକରୁ ବାଁ ହାତ ଉଠାଇ ଅଣି ମ୍ୟାଗର୍ର ବେକରେ ରଖିଲି । ସେଥିପୂର୍ବରୁ ଅମେ ଦୁହେଁ ଚିତାବାଘ କେବେ ଦେଖିନଥିଲୁ । ପ୍ରଥମ କରି ଜଙ୍ଗଲରେ ଚିତାବାଘଟିଏ ଦେଖିବାରେ ସେଦିନ ଭୟ ହେବା ପରିବର୍ତ୍ତେ ମନରେ ପ୍ରବଳ ଉତ୍ତେଜନା ଖେଳିଗଲା । ରୁଦ୍ଧ ଅବେଗରେ ମ୍ୟାଗର୍ ଗୋଟାପଣେ ଠକ୍ ଠକ୍ ଥରୁଥାଏ । ମୋ ଦେହରେ ମଧ୍ୟ ସେହିଭଳି କମ୍ପନ ଖେଳିଯିବା ମୁଁ ସ୍ପଷ୍ଟଭାବେ ଅନୁଭବ କରିପାରୁଥାଏ । ଚିତାବାଘକୁ ସାମନାସାମନି ଏତେ ପାଖରେ ଦେଖି ସୁଦ୍ଧା ଆମ ମନରେ ଭୟ କାହିଁକି ଜାଗିଲା ନାହିଁ, ତାହାର କାରଣ ସେତେବେଳେ ବୁଝି ନ ଥିଲି । ଅନୁଭୂତ ବଢ଼ିବା ପରେ ଜାଣିଲି ଯେ ଚିତାବାଘର ଆମ ପ୍ରତି କୌଣସି ମନ୍ଦ ଅଭିପ୍ରାୟ ନାହିଁ ବୋଲି ଦୁହେଁ ସେଦିନ

Digitized by srujanika@gmail.com

ଭଲଭାବେ ଜାଣିପାରିଥିଲୁ । ବାଟରେ ଆମେ ଯେଉଁ ପଥରଗଦାଟି ପାରହୋଇ ଆସିଥିଲୁ, ସଡ଼କରୁ ପଳାଇ ଆସିବା ପରେ ଚିତାବାଘ ସମ୍ଭବତଃ ଆଶ୍ରୟ ସନ୍ଧାନରେ ତାହାରି ଆଡ଼େ ହିଁ ମୁହାଁଇଥିଲା । ସାମନାରେ ପିଲାଟିଏ ତା କୁକୁର ସହିତ ବାଟ ଓଗାଳି ବସିଛି ଦେଖି ପରିସ୍ଥିତିକୁ ପରୀକ୍ଷା କରିନେବା ପାଇଁ ସେ ଅଟକିଗଲା ।

ଚିତାବାଘ ଅତି ବୁଦ୍ଧିମାନ୍ ଜନ୍ତୁ; ବଣଜଙ୍ଗଲର ଅନ୍ୟ ଜନ୍ତୁଙ୍କ ତୁଳନାରେ ଯେ କୌଣସି ପରିସ୍ଥିତିର ଅର୍ଥ ଓ ତାତ୍ପର୍ଯ୍ୟ ସେ ଅତି ଶୀଘ୍ର କଳନେଇପାରେ । ଆମ ଆଡ଼େ ଥରଟିଏ ଅନାଇ ଦେଇ ସେ ବୁଝିଗଲା ଯେ ଆମର ମଧ୍ୟ ତା ପ୍ରତି କୌଣସି ଶତ୍ରୁତା ବା ବୈରଭାବ ନାହିଁ । ଗୁହାଆଡ଼କୁ ଥରେ ଅଖି ବୁଲାଇ ଆଖପାଖରେ ଆଉ କେଉଁଠାରେ ମଣିଷ ନାହାନ୍ତି ବୋଲି ପ୍ରତ୍ୟୟ ହେବା ପରେ ଚିତାବାଘ ଅତି ସୁନ୍ଦର ଠାଣିରେ ଡେଇଁ ଡେଇଁ ଜଙ୍ଗଲ ଭିତରେ ଲୁଚିଗଲା ।

ଜଙ୍ଗଲ ସେପାଖରୁ ଆମରି ଆଡ଼କୁ ପବନ ବହୁଥିଲା । ଚିତାବାଘ ଜଙ୍ଗଲରେ ଅଦୃଶ୍ୟ ହୋଇଯିବା ପରେ ମ୍ୟାଗର୍ ପବନରୁ ତା ଗନ୍ଧ ପାଇଗଲା । ଦେହରେ ବିଜୁଳି ଖେଳିଗଲା ପରି ଧଡ଼ପଡ଼ ହୋଇ ଉଠି ସେ ଘାଉଁ ଘାଉଁ ହେବାକୁ ଲାଗିଲା । ପ୍ରବଳ ଭୟରେ ତା ବେକ ଓ ପିଠି ସାରା ଲୁମ ଟାଙ୍କୁରି ଉଠିଥାଏ ।

ଚିତାବାଘ କୁକୁର ମାଂସ ଖାଏ; କୁକୁର ଯେତେ ବଡ଼ ବା ବଳବାନ୍ ହେଉନା କାହିଁକି—ଚିତାବାଘର ସମକକ୍ଷ ସେ ନୁହେଁ । ଚିତାବାଘର ଗନ୍ଧ ପାଇଯିବା ମାତ୍ରେ ମ୍ୟାଗର୍ ବୁଝିଗଲା ଯେ ଯେଉଁ ସୁନ୍ଦର ଜନ୍ତୁଟିକୁ ଏତେବେଳଯାଏ ସେ ନିର୍ଭୟରେ ଅନାଇ ଦେଖୁଥିଲା ଜଙ୍ଗଲର ପଶୁ ଜନ୍ତୁଙ୍କ ମଧ୍ୟରୁ ସେହି ହିଁ ତାର ସର୍ବଶ୍ରେଷ୍ଠ ଶତ୍ରୁ । ମାରାତ୍ମକ ବିପଦ ଯେ ତାର ଏତେ ପାଖକୁ ଆସି ପୁଣି ଅପସରିଯାଇଛି—ମ୍ୟାଗର୍ ଏ କଥାଟି ବେଦନ ଅନେକ ଡେରିରେ ଯାଇ ବୁଝିଲା ।

## ଚାରି

ଛୁଟିକିଣିଟି ହାତକୁ ଆସିବା ଓ ଦାରୁଖୁନ୍ଦା ବନ୍ଧୁକଟି ପାଇବା ଭିତରେ ଯେତିକ ସମୟ ବିତିଗଲା, ସେ ଭିତରୁ କିଛି ଦିନ ଧନୁଶର ଚଳାଇବାକୁ ଅଭ୍ୟାସ କରିଥିଲି । ତୀର ବିନ୍ଧି କେବେ ଶିକାର ମାରି ନ ଥିଲେ ମଧ୍ୟ ହାତରେ ଧନୁଶର ଧରି ଜଙ୍ଗଲରେ କେବଳ ବୁଲିବା ଦ୍ୱାରା ହିଁ ସେ ସମୟରେ ପ୍ରକୃତିର ଜ୍ଞାନାଗାରରୁ ଯେତିକି ତଥ୍ୟ ଆହରଣ କରିଥିଲି, ଶିକାର କରିବାରେ ସହାୟକ ହେବା ଛଡ଼ା ପରବର୍ତ୍ତୀ ଜୀବନରେ ମୋ ପାଇଁ ତାହା ଅଶେଷ ଆନନ୍ଦର କାରଣ ମଧ୍ୟ ହୋଇଥିଲା ।

Digitized by srujanika@gmail.com

ଜଙ୍ଗଲ ତଥ୍ୟ 'ଶିକ୍ଷା' କରିଥିଲି ନଲେଖି 'ଆହରଣ' କରିଥିଲି ବୋଲି ଲେଖୁଛି । ପଦ୍ଧତିଗତ ସୋପାନିତ ପାଠ୍ୟକ୍ରମଦ୍ୱାରା ଜଙ୍ଗଲ ତଥ୍ୟ ଶିକ୍ଷା କରିହୁଏ ନାହିଁ; ଜୀବନର ବିଭିନ୍ନ ଅନୁଭୂତିରୁ ଏହାକୁ ଅଳ୍ପ ଅଳ୍ପ କରି ଆହରଣ କରିବାକୁ ପଡ଼େ । ଧାରାବାହିକ ପାଠ୍ୟକ୍ରମର ନିର୍ଦ୍ଦିଷ୍ଟ ଆରମ୍ଭ ଓ ଶେଷ ଥାଏ । ବିପୁଳ ଜ୍ଞାନପରିପୂର୍ଣ୍ଣ ପ୍ରକୃତିରୂପୀ ମହାଗ୍ରନ୍ଥର କିନ୍ତୁ ଆଦିଅନ୍ତ ନାହିଁ । ଜୀବନର ଯେ କୌଣସି ପର୍ଯ୍ୟାୟରେ ସେ ମହାଗ୍ରନ୍ଥକୁ ଯେଉଁଠାରେ ହେଲେ ଖୋଲିଦେଲେ ଦେଖିବେ ଯେ, କେବଳ ଶିକ୍ଷା ପାଇଁ ନୁହେଁ, ପ୍ରାଣ ମନ ସମ୍ପୂର୍ଣ୍ଣ ନିମଗ୍ନ କରିଦେବା ଭଳି ସେଥିରେ ଯଥେଷ୍ଟ ଉପାଦାନ ରହିଛି । ସେ ଢଗରେ ଜ୍ଞାନ ଅର୍ଜନ କରିବାର ଅଭିଳାଷ ଯଦି ଥାଏ, ଜୀବନସାରା ଅଧ୍ୟୟନ କଲେ ମଧ୍ୟ ସେ ଶିକ୍ଷା ଶେଷ ହେବନାହିଁ ଓ ତାହା ଗ୍ରହଣ କରିବାର ଆଗ୍ରହ ବା ଆନନ୍ଦ ହ୍ରାସ ପାଇବା ପରିବର୍ତ୍ତେ କ୍ରମଶଃ ବଢ଼ିଚାଲିଥିବ ।

ଆମ ଘାମନାର ଏହି ଗଛଟି ବସନ୍ତର ଆଗମନରେ ସଦ୍ୟ ପ୍ରସ୍ଫୁଟିତ ସୁନ୍ଦର ଫୁଲରେ ଭରି ହୋଇଯାଇଛି । ରଙ୍ଗ ଓ ମହକ ଦ୍ୱାରା ଆକୃଷ୍ଟ ହୋଇ ନାନାରଙ୍ଗର ଅସଂଖ୍ୟ ପତଙ୍ଗ ଫୁଲପତ୍ରଗହଳରେ ଆନନ୍ଦରେ ଉଡ଼ିବୁଲୁଛନ୍ତି । ମଧୁପାୟୀ ପକ୍ଷୀମାନେ ମହୁମାଛିଙ୍କ ସହିତ ଫୁଲରୁ ମହୁ ଶୋଷିବାରେ ଲାଗିଛନ୍ତି । ପୁଷ୍ପଭୋଜୀ ପକ୍ଷୀ କଅଁଳ ପାଖୁଡ଼ାଗୁଡ଼ିକୁ ଖୁମ୍ପି ଖୁମ୍ପି ଖାଉଛନ୍ତି । ପତଙ୍ଗଭୋଜୀ ପକ୍ଷୀଗୁଡ଼ିକ ଫୁଲ ପାଖରେ ଜଗିବସି ମହୁମାଛିଙ୍କୁ ଶିକାର କରୁଛନ୍ତି । ସମୟର ଗତି ସହିତ ଏହି ପରିବେଶର ରୂପରେଖ ସମ୍ପୂର୍ଣ୍ଣ ବଦଳି ଯିବ । ଆଜିର ଏହି ଫୁଲଭରା ଗଛଟି କାଲି ଫଳଭାରରେ ଅବନତ ହେବ; ଆଜିର ଏହି ପକ୍ଷୀମାନେ ଏଠାରୁ ଅପସରିଯିବା ପରେ ଫଳଭୋଜୀ



ପକ୍ଷୀମାନେ ସେମାନଙ୍କ ସ୍ଥାନ ଅଧିକାର କରିନେବେ । ପ୍ରାକୃତିକ ପରିବର୍ତ୍ତନର ପ୍ରତି ପର୍ଯ୍ୟାୟରେ ବିଭିନ୍ନ ପକ୍ଷୀଙ୍କର ନିରୂପିତ ସ୍ଥାନ ଓ ଭୂମିକା ରହିଛି । କେହି ନିଜର ରଙ୍ଗଦ୍ୱାରା ଅରଣ୍ୟର ଶୋଭା ବୃଦ୍ଧି କରେ; କାହାର ଲଳିତ ଗାନ ପରିବେଶକୁ ମଧୁରତର କରି ତୋଳେ । କେହି ଅବା ବୀଜବପନ ଓ ବିକୀରଣରେ ଅଂଶ ଗ୍ରହଣ କରି ନୂତନ ସ୍ଥାନରେ ନୂତନ ଉଦ୍ଭିଦ ଜୀବନ ସୃଷ୍ଟି କରିଏ ।

ଋତୁ ପରେ ଋତୁ—ବର୍ଷ ପରେ ବର୍ଷ—ସମୟର ଅନବଚ୍ଛିନ୍ନ ଅଗ୍ରଗତି ସହିତ ଦଳ ଦଳ ପକ୍ଷୀଙ୍କର ଆଗମନ ଓ ପ୍ରତ୍ୟାବର୍ତ୍ତନ ଅନବରତ ଲାଗିରହିଥାଏ । ଆଜି ଯେଉଁ ପକ୍ଷୀମାନେ ଏଠାରେ ଆନନ୍ଦରେ ଉଡ଼ିବୁଲୁଛନ୍ତି; କାଲି ହୁଏତ ତାଙ୍କର ସନ୍ତାନ କିମ୍ବା ଅନ୍ୟ କୌଣସି ପକ୍ଷୀ ତାଙ୍କର ସ୍ଥାନ ପୂରଣ କରିବେ । ଜଙ୍ଗଲ ମଧ୍ୟ ଚିରଦିନ ଏହିପରି ରହିବ ନାହିଁ;

Digitized by srujanika@gmail.com

ସମୟ୍ର ଗତି ସହିତ ତାହାର ମଧ୍ୟ ରୂପାନ୍ତର ଘଟିବ । ଝଡ଼ବତାସରେ କେଉଁଠି ଡାଳଟିଏ ଭାଙ୍ଗିପଡ଼ିବ; କେଉଁଠି ଅବା ମହା ମହା ଦ୍ରୁମ ସମୂଳେ ଉପୁଡ଼ି ଭୂଇଁରେ ଶୋଇଯିବେ । ପ୍ରକୃତି ବୁକୁରେ ତାଙ୍କର ସ୍ଥାନ କିନ୍ତୁ ଅପୂର୍ଣ୍ଣ ରହିବ ନାହିଁ; ଆଜିର ଅଙ୍କୁର କାଲି ସେ ଶୂନ୍ୟ ସ୍ଥାନ ପୂରଣ କରିବ ଓ ସମୟର ଚକ ଗଡ଼ିଚାଲିବ ଆଗକୁ । ଆବର୍ତ୍ତନ ଓ ବିବର୍ତ୍ତନ, ଜନ୍ମ ଓ ମୃତ୍ୟୁ, ଧ୍ୱଂସ ଓ ସୃଷ୍ଟି ଦ୍ୱାରା ହିଁ ପ୍ରକୃତି ନିଜର ରୂପରେଖ ଅନବରତ ବଦଳାଇ ଚାଲିଥିବ ।

ଆପଣଙ୍କ ଗୋଡ଼ ପାଖରେ ବାଲିରେ ପଡ଼ିଥିବା ଏହି ଲମ୍ବ ଗ୍ରୁପଟିକୁ ଲକ୍ଷ୍ୟ କରନ୍ତୁ । ଠିକ୍ ସୂର୍ଯ୍ୟୋଦୟ ପୂର୍ବରୁ ଏହି ବାଟେ ଯାଇଥିବା ଗୋଟିଏ ସାପର ଗତିପଥ ତାହା ସୂଚାଇ ଦେଉଛି । ସାପଟି ବାଟର ଡାହାଣ ପାଖରୁ ବାଁ ପାଖକୁ ଯାଇଛି । ଗୋଲେଇ ତାର ପ୍ରାୟ ତିନିଇଞ୍ଚ; ସେଇଟି ବିଷାକ୍ତ ହୋଇଥିବାର ଯଥେଷ୍ଟ ସମ୍ଭାବନା । କାଲି ହୁଏତ ଏପରି ଆଉ ଗୋଟିଏ ଗ୍ରୁପ ଏଠାରେ ଦେଖିବେ ଓ ତାହାକୁ ଅନୁଧ୍ୟାନ କରି ବୁଝିପାରିବେ ଯେ ମାତ୍ର ପାଞ୍ଚମିନିଟ୍ ପୂର୍ବରୁ ପାଞ୍ଚଇଞ୍ଚ ଗୋଲେଇର ଏକ ଅବିଷାକ୍ତ ସାପ ଏଠାରେ ରାସ୍ତା ପାରହୋଇ ଠିକ୍ ବିପରୀତ ଦିଗକୁ ଗତିକରିଛି ।

ଆଜି ଆମେ ଏତିକି ଶିକ୍ଷା କଲେ । କାଲି ଯାହା ଶିଖିବା, ଆଜିର ସହିତ ମିଶି ତାହା ଜ୍ଞାନର ପରିମାଣ ବୃଦ୍ଧି କରିବ । ଏହିପରି ଅଳ୍ପ ଅଳ୍ପ କରି ସଂଗ୍ରହ କରି ପରିଶେଷରେ ଆପଣ କେତେ ତଥ୍ୟ ସଞ୍ଚୟ ଓ ପୁଞ୍ଜୀଭୂତ କରିପାରିବେ—ଶିକ୍ଷାକାଳର ଦୀର୍ଘତା ଅପେକ୍ଷା ଆପଣଙ୍କ ଅନୁସନ୍ଧିତ୍ସା ଓ ଅଧ୍ୟୟନଶୀଳତା ଦ୍ୱାରା ହିଁ ତାହା ମୁଖ୍ୟତଃ ନିର୍ଣ୍ଣୀତ ହେବ । ଶିକ୍ଷାକାଳ ବର୍ଷଟିଏ ହେଉ ବା ଦୀର୍ଘ ଅର୍ଦ୍ଧ-ଶତାବ୍ଦୀ ଧରି ବ୍ୟାପିଥାଉ, ପରିଶେଷରେ ଆପଣଙ୍କର ମଧ୍ୟ ହୃଦ୍‌ବୋଧ ହେବ ଯେ ପ୍ରକୃତିର ଅନନ୍ତ ରହସ୍ୟର ଅତି ସାମାନ୍ୟ ଅଂଶମାତ୍ର ଆପଣଙ୍କ ସମ୍ମୁଖରେ ଉନ୍ମୋଚିତ ହୋଇଛି । ଜୀବନବ୍ୟାପୀ ସାଧନା ପରେ ହିଁ ଆପଣ ଉପଲବ୍ଧି କରିବେ ଯେ ଏ କ୍ଷେତ୍ରରେ ଚିରକାଳ ପାଇଁ ଆପଣ ଜଣେ ନୂତନ ଶିକ୍ଷାର୍ଥୀ; ସମ୍ମୁଖରେ ଆପଣଙ୍କର ଜ୍ଞାନର ଏକ ଅଶେଷ ଭଣ୍ଡାର । ଅନୁସନ୍ଧାନ ଓ ଅଧ୍ୟୟନ ଦ୍ୱାରା ସେଥିରୁ ଯତିକିଞ୍ଚିତ ଆୟତ୍ତ କରିବା ପାଇଁ ଆପଣଙ୍କର ଯଦି ଅଭିଳାଷ ବା ଆଗ୍ରହ ନଥାଏ, ସେ ଜ୍ଞାନାଗାରର ଦ୍ୱାର ଆପଣଙ୍କ ପାଇଁ ଚିରଦିନ ରୁଦ୍ଧ ରହିବ ।

ଥରେ ଜଣେ ବନ୍ଧୁଙ୍କ ସହିତ ଗୋଟିଏ ଡେରାରୁ ଆଉ ଗୋଟିକୁ ଯିବାପାଇଁ ଜଙ୍ଗଲ ଭିତରଦେଇ ଦୀର୍ଘ ବାର ମାଇଲ ଚାଲି ଚାଲି ଯିବାକୁ ପଡ଼ିଲା । ଅପ୍ରେଲ ମାସ—ଫୁଲ ଫୁଟିବା ସମୟ । ଗଛପତ୍ର, ଲଟାବୁଦା ସବୁ କଅଁଳପତ୍ର ଓ ଫୁଲରେ ମଣ୍ଡିହୋଇ ଜଙ୍ଗଲର ଶୋଭା ଉତ୍କର୍ଷରେ ପହଞ୍ଚିଥାଏ । ବିଚିତ୍ରବର୍ଣ୍ଣ ଅସଂଖ୍ୟ ପ୍ରଜାପତି ଫୁଲଗହଳରେ ଉଡ଼ି ଉଡ଼ି ବୁଲୁଥାଆନ୍ତି । ପକ୍ଷୀଙ୍କର ସାଥୀ ପାଇଁ ଆବେଦନଭରା ଲଳିତ ସଙ୍ଗୀତ ପରିବେଶକୁ ମଧୁରତର କରୁଥାଏ । ଜଙ୍ଗଲର ମନୋରମ ଦୃଶ୍ୟ, ଫୁଲପତ୍ରର ଅପୂର୍ବ ବର୍ଣ୍ଣସମ୍ଭାର ଏବଂ ପକ୍ଷୀଙ୍କର ମଧୁର କୂଜନତାନରେ ମୁଗ୍‌ଧ ଓ ତନ୍ମୟ ହୋଇ ବାରମାଇଲ ବାଟ କିପରି ଅତିକ୍ରମ

Digitized by srujanika@gmail.com

କରିଗଲି ଜାଣିନାହିଁ । କିନ୍ତୁ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପରେ ଯାତ୍ରା ବିଷୟରେ ପଚାରିବାରୁ ମୋର ସହଯାତ୍ରୀ ବନ୍ଧୁଜଣକ କହିଲେ, "ସେ ରାସ୍ତାଟା ଯେମିତି ଖାଲ୍‌ଖୋଲ୍‌ଦିଆ—ସେଥିରେ ଚାଲିବାକୁ କାହାକୁ ଭଲଲାଗିବ ?"

ପ୍ରଥମ ମହାଯୁଦ୍ଧ ଶେଷ ହେବାର ଅଳ୍ପଦିନ ପରେ ଟାଙ୍ଗାନାଇକାରେ ଘରଖଣ୍ଡିଏ ତୋଳାଇବା ପାଇଁ ବ୍ରିଟିଶ ଇଣ୍ଡିଆ କମ୍ପାନୀର ଜାହାଜ 'କାର୍‌ଗୋଲା'ରେ ବମ୍ବେରୁ ମୋମ୍ବାସା ଯାତ୍ରା କରୁଥିଲି । ଜାହାଜର ଉପରମହଲରେ ରହୁଥିବା ମୋର ଚାରିଜଣ ସହଯାତ୍ରୀଙ୍କ ମଧ୍ୟରୁ ତିନିଜଣ ଶିକାର କରିବାପାଇଁ କେନିଆ ଯାଉଥାନ୍ତି । ଚତୁର୍ଥ ଜଣକ ସେଠାରେ ବଗିଚା ବାଡ଼ି କିଣିଥିଲେ—ତାହାର ରକ୍ଷଣାବେକ୍ଷଣ ଥିଲା ତାଙ୍କ ଯାତ୍ରାର ଉଦ୍ଦେଶ୍ୟ । ସମୁଦ୍ରଯାତ୍ରା ମୋତେ ସୁହାଏ ନାହିଁ; ବିଶେଷ କରି ପାଗ ଖରାପ ଥିବାରୁ ମୁଁ ବେଶି ଅସ୍ୱସ୍ତି ବୋଧ-କରୁଥାଏ । ଧୂମପାନ ପ୍ରକୋଷ୍ଠର ଗୋଟିଏ କୋଣରେ ବସି ଘୁମାଇ ଘୁମାଇ ଯାତ୍ରାର ସମସ୍ତ-ଟିକ ବିତାଇଦେଲି । ମୋର ସହଯାତ୍ରୀମାନେ ନିକଟର ଗୋଟିଏ ଟେବୁଲ ଚାରିପାଖେ ବସି ନିସ୍ମିତ ବ୍ରିଜ୍ ଖେଳନ୍ତି ଓ ଧୂମପାନ କରନ୍ତି । ଖେଳ ଚାଲିଥିବା ଭିତରେ ଶିକାର ବିଷୟରେ ସେମାନଙ୍କର ନାନା କଥା ପଡ଼େ ।

ସେଦିନ ତନ୍ଦ୍ରା ହୋଇ ବସି ଘୁମାଉଛି, ହଠାତ୍ ଗୋଡ଼ରୁ ବାକୁଲି ଉଠି ଚାହିଁକରି ନିଦ ଭାଙ୍ଗିଗଲା । ଟେବୁଲ ପାଖରେ ସବୁଦିନ ପରି ଖେଳ ଚାଲିଥିଲା । ଖେଳାଳିଙ୍କ ଭିତରୁ କନିଷ୍ଠତମ ଶିକାରୀ ଜଣକ ଗର୍ବରେ ନିଜର ଶିକାର ଅନୁଭୂତି ବର୍ଣ୍ଣନା କରି କହୁଥିଲେ, "ଗତବର୍ଷ ମଧ୍ୟପ୍ରଦେଶରେ ଜଙ୍ଗଲ ବିଭାଗର ଜଣେ ଅଫିସରଙ୍କ ସହିତ ମୁଁ ପୂରା ପନ୍ଦରଦିନ କଟାଇଛି । ତେଣୁ ବାଘ ବିଷୟରେ ମୋର ଆଉ କିଛି ଜାଣିବାକୁ ବାକି ନାହିଁ ।"

ଜଙ୍ଗଲରେ ଦୀର୍ଘକାଳ ଅବସ୍ଥାନ କରିଥିବା ସତ୍ତ୍ୱେ କେତେକ ଲୋକ ଯେ ଜଙ୍ଗଲତଥ୍ୟ କାହିଁକି ଶିକ୍ଷା କରିପାରନ୍ତି ନାହିଁ—ଉପରୋକ୍ତ ଉଦାହରଣ ଦୁଇଟିରୁ ତାର କାରଣ ସହଜରେ ବୁଝାପଡ଼ିବ । ଅତି ମନୋରମ ପରିବେଶ ଭିତରେ ଯାତ୍ରା କଲାବେଳେ ଯେଉଁମାନେ ରାସ୍ତା ଛଡ଼ା ଅନ୍ୟ କେଉଁଆଡ଼େ ଦୃଷ୍ଟି ଦିଅନ୍ତି ନାହିଁ—ଜୀବନବ୍ୟାପୀ ଅଧ୍ୟୟନ ଓ ସାଧନାଦ୍ୱାରା ଯେଉଁ ଶିକ୍ଷାର ପୂର୍ବଭାଗ ମଧ୍ୟ ସମାପ୍ତ ହୁଏନାହିଁ, ସାମାନ୍ୟ ପନ୍ଦରଟି ଦିନ ଭିତରେ ତାହା ସମ୍ପୂର୍ଣ୍ଣ ଆୟତ୍ତ କରିଛନ୍ତି ବୋଲି ଯେଉଁମାନେ ବଡ଼ାଇକରନ୍ତି—ସେମାନଙ୍କ ପରି ଆଗ୍ରହହୀନ, ଆତ୍ମବଡ଼ିମାଶୀଳ ଲୋକେ ଜଙ୍ଗଲ ତଥ୍ୟ ଶିକ୍ଷା କରିନପାରିବାରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

---

Digitized by srujanika@gmail.com

# ପାଞ୍ଚ

ଶୈଶବରୁ ଆରମ୍ଭକରି ମୋର ଜୀବନର ଅଧିକାଂଶ ଭାଗ କାଳାହାଣ୍ଡୀ ଓ ତାକୁ ଘେରି ରହିଥିବା ପାହାଡ଼ ଜଙ୍ଗଲରେ କଟିଛି । ଛାତ୍ରଜୀବନର ଦଶବର୍ଷ, ବଙ୍ଗଦେଶରେ ପୂର୍ବ ଚାକିରି-କାଳ ଓ ଦୁଇ ବିଶ୍ୱଯୁଦ୍ଧ ମଧ୍ୟାନ୍ତରର ବର୍ଷ କେତୋଟିରେ ମୋର ସମସ୍ତ ଅବସର ଓ ଅବକାଶ ମୁଁ ସେହିଠାରେ ହିଁ ବିତାଇଛି । ଜଙ୍ଗଲ ତଥ୍ୟ ଶିକ୍ଷା କରିବା ପାଇଁ ସେତେବେଳେ ଯେତେ ସୁବିଧାସୁଯୋଗ ମିଳୁଥିଲା, ତାହା ଏବେ ଖୋଜିଲେ ଆଉ ମିଳିବ ନାହିଁ । ସେତେ ସୁବିଧା ସତ୍ତ୍ୱେ ଜଙ୍ଗଲ ବିଷୟରେ ମୋର ଶିକ୍ଷାର କୌଣସି ଅଙ୍ଗ ଯଦି ଅସମ୍ପୂର୍ଣ୍ଣ ରହିଥାଏ—ସେଥି ପାଇଁ ଦୋଷ ପୂରାପୂରି ମୋର ।

ସମୟ ବଦଳିଗଲାଣି । ମୋ ପିଲାଦିନେ ଯେଉଁସବୁ ଜଙ୍ଗଲରେ ଅସଂଖ୍ୟ ବନ୍ୟଜନ୍ତୁ ଅବାଧରେ ବିଚରଣ କରୁଥିଲେ, ଜନସଂଖ୍ୟା ବୃଦ୍ଧି ଫଳରେ ତାହା ଲୋପ ପାଇ ଆଜି ଚାଷଜମିରେ ପରିଣତ ହେଲାଣି । କୃଷି ଉନ୍ନୟନ ତଥା ଉତ୍ପାଦନ ବୃଦ୍ଧି, ଜଙ୍ଗଲସମ୍ପଦର ସମୀକରଣ ଆଦି ନାନା ଯୋଜନାର ଦୋହାଇ ଦେଇ ବନାବୃତ ଏସବୁ ଅଞ୍ଚଳର ବିପୁଳ ଉଦ୍ଭିଦ ସମ୍ପଦକୁ ହାଣିକାଟି ଜାଳିପୋଡ଼ି ଛାରଖାର କରିଦିଆଯାଇଛି । ବୃକ୍ଷଲତା ଆଶ୍ରୟରେ ବାସକରୁଥିବା ଏବଂ ଫଳମୂଳ, ଫୁଲପତ୍ର ଓ ଶିକାର ମାଂସାଦି ଆହାର କରୁଥିବା ଜଙ୍ଗଲ-ବାସୀ ପଶୁପକ୍ଷୀ ତାହାଦ୍ୱାରା ବିପର୍ଯ୍ୟସ୍ତ ଓ ବିନାଶପ୍ରାପ୍ତ ହୋଇଛନ୍ତି । ଦେଶର ଅମୂଲ୍ୟ ସମ୍ପଦ-ରୂପେ ପରିଗଣିତ ହେଉଥିବା କେତେକ ବନ୍ୟଜନ୍ତୁ ସମୂଳେ ଲୋପ ପାଇବାକୁ ବସିଲେଣି । ଅପରପକ୍ଷେ ପ୍ରାକୃତିକ ଅସମତା ଯୋଗୁଁ ଅନ୍ୟ କେତେକ ପଶୁପକ୍ଷୀଙ୍କର ଅବାଞ୍ଛିତ ସଂଖ୍ୟା ବୃଦ୍ଧି ଘଟି ଏକ ଗୁରୁତର ସମସ୍ୟାର ଆକାର ନେଲାଣି ।

ଆମରି ଅଦୂରଦର୍ଶିତାର ଚରମ ପରିଣାମ ଆମରି ଦାୟାଦମାନଙ୍କୁ ହିଁ ଭୋଗକରିବାକୁ ପଡ଼ିବ । ସ୍ୱୟଂକୃତ ଏହି ସମସ୍ୟାର ପ୍ରଥମ ଲକ୍ଷଣମାନ ଏବେ ପ୍ରକାଶ ପାଇବାକୁ ଲାଗିଲାଣି । ଉତ୍ତରପ୍ରଦେଶରେ ମାଙ୍କଡ଼ଙ୍କ ସଂଖ୍ୟା ସମ୍ପ୍ରତି ଏକ କୋଟିରେ ପହଞ୍ଚିଲାଣି ବୋଲି ମୋର ବିଶ୍ୱାସ । ଜଙ୍ଗଲ ଧ୍ୱଂସ ପାଇବା ଫଳରେ ଦଳ ଦଳ ମାଙ୍କଡ଼ ବର୍ତ୍ତମାନ କ୍ଷେତବାଡ଼ିରେ ଚଢ଼ାଉ କରି ଚାଲିଛନ୍ତି । ଧର୍ମଗତ ବାରଣ ଥିବାହେତୁ ସାଧାରଣ ଲୋକେ ମାଙ୍କଡ଼ ମାରୁ-ନାହାନ୍ତି; ଫଳରେ ମାଙ୍କଡ଼ଙ୍କ ଦଳବଦ୍ଧ ଅବାରିତ ଉପଦ୍ରବ ଏବେ ସରକାରଙ୍କ ସମ୍ମୁଖରେ ଏକ ଘୋର ସଙ୍କଟରୂପେ ଦେଖାଦେଲାଣି । ଲକ୍ଷ ଲକ୍ଷ ମାଙ୍କଡ଼ ଯଦି କ୍ଷେତବାଡ଼ିରେ ପଶି ଫସଲ ଉଜାଡ଼ିବାରେ ଲାଗନ୍ତି, ତାଙ୍କୁ ସମ୍ଭାଳିବା ଯେ କେଡ଼େ ଦୁରୂହ ବ୍ୟାପାର—ସ୍ୱଳ୍ପ ଅନୁଚିନ୍ତାଦ୍ୱାରା ତାହା ଯେ କେହି ବୁଝିପାରିବେ ।

Digitized by srujanika@gmail.com

ଏହି ବହିଟି ଯେ ଦିନେ ଲେଖିବି—ପୂର୍ବରୁ ଏ ଧାରଣା ଯଦି ଥରେ ହେଲେ ମନକୁ ସ୍ପର୍ଶ କରିଥାନ୍ତା, ବିଗତ ଜୀବନର ସମସ୍ତ ସୁଯୋଗ ଜଙ୍ଗଲତଥ୍ୟ ଶିକ୍ଷା କରିବାରେ ଅଧିକ ଯତ୍ନର ସହ ବିନିଯୋଗ କରିଥାଆନ୍ତି ଏବଂ ଜଙ୍ଗଲ ପାହାଡ଼ରେ ମୁକ୍ତଭାବେ ବିଚରଣ କରି ଯେପରି ଅପାର ଆନନ୍ଦ ଉପଭୋଗ କରିଛି, ପାଠକପାଠିକାଙ୍କ ସମ୍ମୁଖରେ ପରିବେଷଣ କରିବା ଦ୍ୱାରା ତାହାକୁ ପୁନର୍ବାର ଆସ୍ୱାଦନ କରିଥାଆନ୍ତି । ପ୍ରକୃତି ବୁକୁରେ ମୁକ୍ତ ବନ୍ଧନହୀନ ଜୀବନର ବିପୁଳ ପୁଲକଧାରା ଅନ୍ତଃସ୍ରୋତା ଫଲ୍‌ଗୁ ପରି ପ୍ରବାହିତ । ମୁନିଋଷିଙ୍କ ପରି ସେ ଆନନ୍ଦଧାରାରେ ନିଜକୁ ସମ୍ପୂର୍ଣ୍ଣ ଭସାଇ ଦେଇ ନଥିଲେ ସୁଦ୍ଧା ସେଥିରେ ଅବଗାହନ ଓ ତାହାର ରସାସ୍ୱାଦନ କରିବାକୁ ଯଥେଷ୍ଟ ସୁଯୋଗ ପାଇଛି, ସେତିକି ପାଇଁ ମଧ୍ୟ ମୁଁ ନିଜକୁ ଅତି ଭାଗ୍ୟବାନ୍ ମନେକରେ ।

ପ୍ରକୃତିର ମର୍ମେ ମର୍ମେ ଅବାରିତ ଗତିରେ ବହିଚାଲିଥିବା ଜୀବନ-ମୁଖର ଚିରନ୍ତନ-ସ୍ରୋତରେ ଦୁଃଖ, ଶୋକ ବା ଅନୁଶୋଚନାର ସ୍ଥାନ ନଥାଏ । ମାଂସଭୋଜୀ ପଶୁପକ୍ଷୀଙ୍କ ଶିକାର ହୋଇଥିବା ପ୍ରାଣୀ ପାଇଁ ତା ଦଳର କେହି ବିଳାପ କରନ୍ତି ନାହିଁ । ସେମାନେ ନିଜେ ହିଁ ବିପଦରୁ ବର୍ତ୍ତିଯାଇଛନ୍ତି ଏବଂ ଜୀବନ-ମରଣ ସଂଗ୍ରାମର କିଛି ସମୟ ପାଇଁ ବିରତି ଘଟିବ ଏହାହିଁ ସେମାନଙ୍କ ପାଇଁ ପରମ ଆଶ୍ୱସ୍ତିର କାରଣ ହୋଇଉଠେ । ପରଦିନ ସେମାନେ ଯେ ପୁଣି ସେହିପରି ବିପଦର ସମ୍ମୁଖୀନ ହେବେ—ସ୍ରଷ୍ଟାଙ୍କର ଅସୀମ କୃପାରୁ ସେପରି ଆଶଙ୍କା କରିବା ଭଳି ଅଗ୍ରଦୃଷ୍ଟି ଜଙ୍ଗଲର ପଶୁପକ୍ଷୀଙ୍କର ନାହିଁ । ପ୍ରତ୍ୟକ୍ଷ ବିପଦରୁ ନିଜକୁ ରକ୍ଷାକରିବା ପାଇଁ ଯେତିକି ସତର୍କତା ଦରକାର, ସେତିକି ଛଡ଼ା ଜଙ୍ଗଲର ଜନ୍ତୁ ଯଦି ଅନାଗତ ବିପଦର ଆତଙ୍କରେ ଅହରହ ଥରହର ହେଉଥାଆନ୍ତେ—ତେବେ ବିପଦସଙ୍କୁଳ ଜୀବନର ମୁହୂର୍ତ୍ତେ ମାତ୍ର ଅତିବାହିତ କରିବା ସେମାନଙ୍କ ପକ୍ଷରେ ଅସମ୍ଭବ ହୋଇ ଉଠନ୍ତା ।

ପିଲାଦିନେ ଶିକାରୀ ପଶୁପକ୍ଷୀ ଅନ୍ୟକୁ ଆକ୍ରମଣ କରିବା ଦେଖିଲେ ତାହାକୁ ଦୁର୍ବଳ ଉପରେ ସବଳର ଅତ୍ୟାଚାର ମନେକରି ମୁଁ ବିଚଳିତ ହୋଇପଡୁଥିଲି । ଶିକାରୀ ଜନ୍ତୁଟି ଯେ ନିଜର ହିଂସ୍ରତା ଯୋଗୁଁ ଜୀବହତ୍ୟା ଘଟାଉନାହିଁ—ଅତି କ୍ରୂର ଓ ବିଦ୍ୱେଷିକାମସ୍ତ ମନେହେଉଥିଲେ ମଧ୍ୟ ଆକ୍ରମଣକାରୀର କାର୍ଯ୍ୟକଳାପ ଯେ ପ୍ରକୃତିର ଅଲଙ୍ଘ୍ୟ ନିୟମଦ୍ୱାରା ନିର୍ଦ୍ଧାରିତ ଓ ନିୟମିତ—ଏ ଧାରଣା ସେତେବେଳେ ମୋତେ ସ୍ପର୍ଶ କରିନଥିଲା । ଛଞ୍ଚାଣ, ଈଗଲ ଆଦି ଶିକାରୀ ପକ୍ଷୀ ତଥା ମାଂସଭୋଜୀ ପଶୁଙ୍କଦ୍ୱାରା ଆକ୍ରାନ୍ତ ହୋଇଥିବା ପ୍ରାଣୀଙ୍କୁ ରକ୍ଷା କରିବାକୁ ମୁଁ ତତ୍ପର ହୋଇଉଠୁଥିଲି; କିନ୍ତୁ ପରେ ଏ ବିଷୟ ବିଚାର କରି ବୁଝିଲି ଯେ ମୋର ହସ୍ତକ୍ଷେପ ଯୋଗୁଁ ଦ୍ୱିଗୁଣ ଜୀବନହାନି ଘଟୁଛି । ମାଂସଭୋଜୀ ପଶୁପକ୍ଷୀ ନିଜର ଓ ଶାବକଙ୍କର ଆହାର ପାଇଁ ଶିକାର ମାରନ୍ତି; ମୁହଁରୁ ତାଙ୍କର ଆହାର ଛଡ଼ାଇନେଲେ ସେମାନେ ଆଉ ଗୋଟିଏ ଶିକାର ମାରିବାକୁ ବାଧ୍ୟ ହେବେ । ଏଣେ ଉଦ୍ଧାର କରାଯାଇଥିବା ଆହତ ପ୍ରାଣୀଙ୍କ ଭିତରୁ ଶହେରୁ ଗୋଟିକୁ ମଧ୍ୟ ବଞ୍ଚାଇବା ଦୁଷ୍କର । ମାଂସଭୋଜୀ ପଶୁ-

Digitized by srujanika@gmail.com

ପକ୍ଷୀଙ୍କ ନଖ, ଦାନ୍ତ ବା ଚଞ୍ଚୁରେ ପଚ୍ଚ ରକ୍ତମାଂସ ଲାଗିଥିବା ହେତୁ ଆହତ ପ୍ରାଣୀର କ୍ଷତ-ଗୁଡ଼ିକ ଅତି ଶୀଘ୍ର ପାଚଉଠେ । ପଚନ ନିରୋଧ କରି ଜନ୍ତୁଟି ପାଇଁ ଦୀର୍ଘକାଳବ୍ୟାପୀ ଚିକିତ୍ସାର ବ୍ୟବସ୍ଥା କରିବା ଜଙ୍ଗଲରେ ବା ସମ୍ଭବ ହେବ କିପରି ?

ପ୍ରକୃତିର ଭାରସାମ୍ୟ ରକ୍ଷା କରିବାରେ ମାଂସଭୋଜୀ ପଶୁପକ୍ଷୀଙ୍କ ଭୂମିକା ଅତି ଗୁରୁତ୍ୱ-ପୂର୍ଣ୍ଣ । ତା'ପରେ, ମାଂସ ଛଡ଼ା ଅନ୍ୟ ଆହାର ଗ୍ରହଣ କରିବାକୁ ସେମାନେ ଅକ୍ଷମ; ତେଣୁ ଶିକାର ମାରିବା ଛଡ଼ା ଅସ୍ତିତ୍ୱ ବଜାୟ ରଖିବା ପାଇଁ ସେମାନଙ୍କର ଅନ୍ୟ ପନ୍ଥା ନାହିଁ । ନିୟମିତ ହତ୍ୟାସାଧନ କରୁଥିବା ଏ ସବୁ ଜନ୍ତୁଙ୍କ ଆକ୍ରମଣ ପ୍ରଣାଳୀ ନିରୀକ୍ଷଣ କଲେ ଜଣାଯିବ ଯେ ଆକ୍ରାନ୍ତ ଜନ୍ତୁଟିକୁ ଯେତେ ସମ୍ଭବ କମ୍ ଯନ୍ତ୍ରଣା ଦେଇ ସ୍ୱଳ୍ପ ସମୟ ଭିତରେ ମାରିଦେବା ପାଇଁ ତାହା ଉଦ୍ଦିଷ୍ଟ । ଆକ୍ରମଣକାରୀର ସ୍ୱାର୍ଥ ଦୃଷ୍ଟିରୁ ମଧ୍ୟ ସେଭଳି ମାରଣ ପଦ୍ଧତିର ଯଥାର୍ଥତା ରହିଛି । ଶିକାରକୁ ଶୀଘ୍ର ଶେଷ କରି ଲୁଚାଇ ନ ଦେଲେ ପ୍ରତିଦ୍ୱନ୍ଦ୍ୱୀଙ୍କ ବିରୋଧ ଏବଂ ଲୁଣ୍ଠନ-କାରୀଙ୍କ ଲୋଲୁପ ଦୃଷ୍ଟି ଆକର୍ଷଣ କରିବାର ସମ୍ଭାବନା ବଢ଼ିବ । ଆହାର ସଂଗ୍ରହ ତଥା ପ୍ରକୃତିର ଭାରସାମ୍ୟ ରକ୍ଷାକରିବା ପାଇଁ ଆବଶ୍ୟକ ହେଉଥିବା ଏହି ଅପ୍ରୀତିକର ବ୍ୟବସ୍ଥାଟି ଅତି ଶୀଘ୍ର ଓ ସ୍ୱଳ୍ପ ଯାତନା ସହ ସମାହିତ ହୋଇଯିବା ମୂଳରେ ପ୍ରକୃତିର ଯେ ନିଜର ଏକ ଅଦୃଶ୍ୟ ଇଙ୍ଗିତ ନାହିଁ, ତାହା କିଏ କହିପାରିବ ?

ବିଭିନ୍ନ ଜାତିର ଶିକାରୀ ପଶୁପକ୍ଷୀ ଭିନ୍ନ ଭିନ୍ନ ଉପାୟରେ ଶିକାର ମାରନ୍ତି । ସେଥିରୁ କେଉଁ ଉପାୟଟି ପ୍ରୟୋଗ କରାଯିବ, ତାହା ପାରିପାର୍ଶ୍ୱିକ ଅବସ୍ଥା, ଶିକାରୀର ଦୈହିକ ଅବସ୍ଥା ଏବଂ ଶିକାରର ଆକାର ଉପରେ ହିଁ ମୁଖ୍ୟତଃ ନିର୍ଭର କରେ । ବାଜପକ୍ଷୀ ଶିକାର ମାରିବା ପାଇଁ ସାଧାରଣତଃ ଭୂପୃଷ୍ଠକୁ ଅବତରଣ କରୁଥିଲେ ମଧ୍ୟ ସମୟ ସମୟରେ ଶ୍ରେଷ୍ଠ ଶ୍ରେଷ୍ଠ ଚଢ଼େଇଙ୍କୁ ସେ ଶୂନ୍ୟେ ଶୂନ୍ୟେ ଝାମ୍ପି ନେଇଯାଏ । ବାଘ ସାଧାରଣ ଶିକାରକୁ ଗୋଟିଏ ଚାପୁଡ଼ାରେ କାବୁ କରି ତଳେ ପକାଇ ଦେଇଥାଏ । ଶିକାର ଜନ୍ତୁ ଅପେକ୍ଷାକୃତ ବଡ଼ ବା ବଳବାନ୍ ହୋଇଥିଲେ ପ୍ରଥମେ ପଛ ଗୋଡ଼ର ମାଂସପେଶୀ ଛିନ୍ନ କରି ତାକୁ ଅଚଳ କରିଦେବାକୁ ସେ ବାଧ୍ୟ ହୁଏ ।

ଶିକାରୀ ଜନ୍ତୁ ସେମାନଙ୍କ ସ୍ୱାଭାବିକ ଅବସ୍ଥା ଓ ପରିବେଶରେ ସାଧାରଣତଃ ଉଚ୍ଛୃଙ୍ଖଳ ଭାବେ ଅକାରଣ ଜୀବନହାନି ଘଟାନ୍ତି ନାହିଁ । ତେବେ ପାଇନ୍‌ଓଧ, କଣ୍ଟାଶ ଓ ନେଉଳ ଆଦି କେତେକ ପ୍ରଜାତିର ଜନ୍ତୁ କେବଳ ଯୁଦ୍ଧୋନ୍ମାଦ ଯୋଗୁ ପ୍ରୟୋଜନରୁ ଅଧିକ ପରିମାଣରେ ଜୀବନହାନି ଘଟାଉଥିବାର ଦୃଷ୍ଟାନ୍ତ ରହିଛି । ଏସବୁ ଜନ୍ତୁ ସମୟବିଶେଷରେ ଯେ କେବଳ ମୁଦ୍ଧାଭିଳାଷ ଯୋଗୁ ସଂଘର୍ଷର ସୂତ୍ରପାତ କରନ୍ତି, ତାହାର ଦୁଇଟି ପ୍ରାମାଣିକ ଦୃଷ୍ଟାନ୍ତ ଏଠାରେ ଦେଉଛି ।

Digitized by srujanika@gmail.com

ପର୍ସି ୱିଣ୍ଡହାମ୍ *କୁମାୟୁଁର କମିସନର୍ ଥିବାବେଳେ ଥରେ ଉତ୍ତର ପ୍ରଦେଶର ଲାଟ୍ ସାର୍ ହାର୍‌କୋର୍ଟ ବଟ୍‌ଲର୍ ନବୋଦ୍‌ଘାଟିତ ଲକ୍ଷ୍ନୌ ଚିଡ଼ିଆଖାନା ପାଇଁ ଅଜଗର ସାପଟିଏ ଯୋଗାଇଦେବାକୁ ତାଙ୍କୁ ଅନୁରୋଧ କଲେ । ୱିଣ୍ଡହାମ୍ ଯେତେବେଳେ ଶୀତଦିନଆ ଗସ୍ତରେ ବାହାରିଥିଲେ । କାଲାଢୁଙ୍ଗୀରେ ପହଞ୍ଚିବା ମାତ୍ରେ ମୋତେ ଏ ବିଷୟ ଜଣାଇ ସେ ବିବାଦ କଲେ ଯେ କୁମାୟୁଁ ଜଙ୍ଗଲର ଟେକ ରକ୍ଷିବା ଛଡ଼ା ଏବଂ କମିସନରଙ୍କ ତରଫରୁ ଲାଟ୍ ସାହେବଙ୍କୁ ଦେବା ପାଇଁ ଯୋଗ୍ୟ ଉପହାର ବିବେଚିତ ହେବା ଭଳି ଏକ ଅଜଗର ସାପର ସନ୍ଧାନ ମୋତେ ଦେବାକୁ ପଡ଼ିବ । ଯୋଗକୁ ଠିକ୍ ସେହିଭଳି ଅଜଗରଟିଏ ଏଠାକାର ଜଙ୍ଗଲରେ ଥିବା କଥା ମୁଁ ଜାଣିଥିଲି । ପରଦିନ ଦୁଇଜଣ ଶିକାରୀ ଓ ୱିଣ୍ଡହାମ୍‌ଙ୍କ ସହିତ ହାତୀରେ ବସି ଅଜଗର ସନ୍ଧାନରେ ବାହାରିଲି । ସାପଟିର ବାସସ୍ଥାନ ସହିତ ଦୀର୍ଘ ଅନେକ ବର୍ଷର ପରିଚୟ ଥିବାରୁ ସେଠାକୁ ବାଟ କଢ଼ାଇନେବା କଷ୍ଟକର ହେଲି ନାହିଁ ।

ଅଜଗରଟି ସେଦିନ ତା ବସାଠାରୁ ଅଳ୍ପଦୂର ଏକ ଅଗଭୀର ନାଳରେ ପଣି ବଳାଗଣ୍ଡିଏ ପାଣିରେ ଲମ୍ବହୋଇ ପଡ଼ିଥିଲା । ନିର୍ମଳ ପାଣିତଳୁ ସାପଟି ପ୍ରଦର୍ଶନୀର କାଚବାକ୍‌ସରେ ରଖାହେଲା ପରି ଦିଶୁଥାଏ । ଠିକ୍ ସେହିଭଳି ଅଜଗରଟିଏ ସେ ଖୋଜୁଥିଲେ ବୋଲି କହି ୱିଣ୍ଡହାମ୍ ଖୁସିରେ ମାହୁନ୍ତଦ୍ୱାରା ହାଉଦାରୁ ଲମ୍ବ ଦଉଡ଼ିଟିଏ ଖୋଲିଇ ଆଣିଲେ ଓ ଦଉଡ଼ି ଆଗରେ ଫାଶ ପକାଇ ତାହାର ସାହାଯ୍ୟରେ ଅଜଗରକୁ ବାନ୍ଧି ଆଣିବାକୁ ଶିକାରୀଙ୍କୁ ନିର୍ଦ୍ଦେଶ ଦେଲେ । ତାଙ୍କ ବିବାଦ ଶୁଣି ଶିକାରୀ ଦୁହିଁଙ୍କ ହାଲୁକ ଶୁଖିଗଲା । ପ୍ରବଳ ଆତଙ୍କରେ ଦୁହେଁ ଉଚ୍ଚସ୍ୱରରେ ପ୍ରତିବାଦ କରିଉଠି କହିଲେ ଯେ ସେଭଳି ଦୁଃସାହସ ସେମାନେ କସ୍ମିନ୍‌କାଳେ କରିବେନାହିଁ । ୱିଣ୍ଡହାମ୍ ତାଙ୍କ ଓଜନଦାର ରାଇଫଲ୍‌ଟି ଧରିଥାନ୍ତି । ସାପ ଆକ୍ରମଣ କଲେ ସେ ନିଜେ ତାକୁ ଗୁଳିକରି ମାରିଦେବେ ବୋଲି କହି ଶିକାରୀଙ୍କୁ ସେ ହିମ୍ମତ୍ ଦେବାକୁ ଲାଗିଲେ । ତାଙ୍କ ଅଭୟବାଣୀରେ ଶିକାରୀ ଦୁହିଁଙ୍କର ଗଭୀର କୁଣ୍ଠାଭାବ ଆଦୌ କମୁନାହିଁ ଦେଖି ୱିଣ୍ଡହାମ୍ ସେମାନଙ୍କୁ ସାହାଯ୍ୟ କରିବାକୁ ମୋତେ ଡାକିଲେ । ସେଭଳି ହୁଣ୍ଡାପଣିଆରେ ମାତିବାକୁ ମୋର ଆଦୌ ଇଚ୍ଛା ନାହିଁ ବୋଲି ତାଙ୍କୁ ରୋକ୍‌ଠୋକ୍ ଶୁଣାଇଦେଲି । ଅଗତ୍ୟା ରାଇଫଲ୍‌ଟି ମୋତେ ଧରାଇ ଶିକାରୀଙ୍କୁ ସାହାଯ୍ୟ କରିବାକୁ ୱିଣ୍ଡହାମ୍ ନିଜେ ଅଣ୍ଟାଭିଡ଼ି ବାହାରିଲେ ।

ତା'ପରେ ଯାହା ଯାହା ଘଟିଗଲା, କ୍ୟାମେରାଟିଏ ଥିଲେ ଅତି ଉଚ୍ଚକୋଟୀର ହାସ୍ୟରସାତ୍ମକ ଚଳଚ୍ଚିତ୍ରଟିଏ ସେଦିନ ଅନାୟାସରେ ପ୍ରସ୍ତୁତ ହୋଇ ପାରିଥାନ୍ତା । କ୍ୟାମେରା ପରିବର୍ତ୍ତେ ସେଦିନ ଯେ ରାଇଫଲଟିଏ ଧରି ନିରୁପାୟ ଭାବେ ଛିଡ଼ାହୋଇ ରହିବାକୁ ପଡ଼ିଲା—

---

*'ମୋର ଭାରତ' ଓ 'କୁମାୟୁଁର ନରଖାଦକ' ବହି ଦୁଇଟି ଦ୍ରଷ୍ଟବ୍ୟ ।

—ଅନୁବାଦକ

Digitized by srujanika@gmail.com

ଏ କଥା ଭାବିଲେ ଏବେ ମଧ୍ୟ ଅବଶୋଷ ଆସେ । ସାପ ଲଞ୍ଜକୁ ଫାଶରେ ବାନ୍ଧି ତାକୁ ଘୋଷାରି ଘୋଷାରି ଆଣି ହାତୀ ପିଠିରେ ଲଦିଦେବା ଉଇଣ୍ଡ୍‌ହାମ୍‌ଙ୍କ ଅଭିପ୍ରାୟ ଥିଲା । ଶିକାରୀ ଦୁହିଁଙ୍କୁ ଏହି ଯୋଜନାଟି ବୁଝାଇ ଦେବା ମାତ୍ରେ ଫାଶଟି ତାଙ୍କର ହାତକୁ ବଢ଼ାଇ ଦେଇ ସେ ଦୁହେଁ କହିଲେ ଯେ ଉଇଣ୍ଡ୍‌ହାମ୍ ନିଜେ ଯଦି ସାପ ଲାଙ୍ଗୁଡ଼ରେ ଫାଶଟି ଓଟାଇଦିଅନ୍ତି, ତାକୁ ଶୁଖିଲାକୁ ଘୋଷାରି ଆଣିବାରେ ସେମାନେ ପୂର୍ଣ୍ଣପ୍ରାଣରେ ସାହାଯ୍ୟ ଓ ସହଯୋଗ ଦେବେ । ସାପ ଲାଙ୍ଗୁଡ଼ରେ ଫାଶ ପକାଇବା କାମଟି ତାଙ୍କ ପରି ପୁରୁଖା ଶିକାରୀଙ୍କ ପକ୍ଷରେ ହିଁ ଅଧିକ ସହଜ ହେବବୋଲି କହି ଉଇଣ୍ଡ୍‌ହାମ୍ ସେ ଦୁହିଁଙ୍କୁ ଟେକାଟେକ କରିବାକୁ ଲାଗିଲେ । ସେଥିରେ ମଧ୍ୟ ବିଫଳ ହୋଇ ଶେଷରେ ତିନିହେଁ ଧାଡ଼ିବାନ୍ଧି ସାପ ଆଡ଼କୁ ଧୀରେ ଧୀରେ ଆଗେଇଲେ । ତା'ପରେ ଯେଉଁ ତାମସା ଚାଲିଲା, ତାହା ବାସ୍ତବିକ ବର୍ଣ୍ଣନାର ବାହାରେ । ଅତି ସନ୍ତର୍ପଣରେ କେଇ ପାହୁଣ୍ଡ ଆଗେଇବା ପରେ ତିନିହେଁ ଚମକିଲା ପରି ପଛକୁ ହଟିଆସୁଥାନ୍ତି । କେତେଥର ଏହିପରି ଆଗପଛ ହେଲା ପରେ ଦର୍ଶକଙ୍କ ଅବଗତି ନିମନ୍ତେ ପ୍ରକାଶ କରିଗଲା ଯେ ସେମାନେ କେହି ପ୍ରକୃତରେ ଡରୁନାହାନ୍ତି—କେବଳ ସାପକୁ ଟିକେ ଚଳାଚଳ ପ୍ରତି ଅଭ୍ୟାସ କରାଇବା ପାଇଁ ଜାଣିଶୁଣି ଏଭଳି ଅଭିନୟ କରୁଛନ୍ତି ମାତ୍ର । କିଛି ସମୟ ଧରି ସାପକୁ ଏପରି 'ତାଲିମ୍' ଦେବାପରେ ତିନିଜଣଯାକ ଦଉଡ଼ିଟି ଧରି ପାଣିକୁ ଗୋଡ଼ ବଢ଼ାଇଲେ ।

ମାହୁନ୍ତ ସହିତ ହାତୀ ଉପରେ ବସି ମୁଁ ଏ ଦୃଶ୍ୟ ଦେଖୁଥାଏ । ତିନିଜଣଯାକ ପ୍ରତ୍ୟେକେ ପରସ୍ପରର ଅଲକ୍ଷ୍ୟରେ ଫାଶଠାରୁ ଦୂରରେ ରହିବାକୁ ଆପ୍ରାଣ ଚେଷ୍ଟା ଚଳାଇ-ଥାଆନ୍ତି । ଶେଷରେ ଅତି ସାବଧାନରେ ପାଦ ଚପି ଚପି ସାପ ପାଖଯାଏଁ ଗଲା ପରେ ପ୍ରତ୍ୟେକ ଫାଶଟିକୁ ସାପ ଲାଙ୍ଗୁଡ଼ରେ ଗଳାଇଦେବାକୁ ଅନ୍ୟ ଦୁହିଁଙ୍କୁ ଫୁସୁଲାଇବାକୁ ଲାଗିଲେ । ଏତିକିବେଳେ ସାପଟା ପୂର୍ବର 'ତାଲିମ୍' ଭୁଲି ପାଣିରୁ ଦୁଇଫୁଟ ଉପରକୁ ମୁଣ୍ଡ ଟେକି ଧୀରେ ଧୀରେ ସେମାନଙ୍କ ଆଡ଼କୁ ଆଗେଇ ଆସିଲା । "ଭାଗୋ ସାହେବ !" ବୋଲି ଉଚ୍ଚସ୍ୱରରେ ଥରଟିଏ ଚିତ୍କାର କରିଉଠି ଶିକାରୀ ଦୁହେଁ ଚବର ଚବର ହୋଇ କୂଳକୁ ଧାଇଁଲେ । ଉଇଣ୍ଡହାମ୍ ମଧ୍ୟ ଲସରପସର ହୋଇ ତାଙ୍କ ପଛେ ପଛେ ଧାଇଁଥାଆନ୍ତି । କୂଳରେ ପହଞ୍ଚିବା ପରେ ମଧ୍ୟ ପଛକୁ ଥରଟିଏ ନଅନାଇଁ ତିନିଜଣଯାକ ଯାଇ ଗହଳ ଝାଟି ବୁଦାରେ ପଶି ଲୁଚିଗଲେ । ଅଜଗରଟା ସେଇ ଅବସରରେ ଅତି ମନ୍ଥର ଗତିରେ ନାଳରୁ ଉଠି ଆସି ପାଖର ଗୋଟିଏ ପ୍ରକାଣ୍ଡ ଜାମୁଗଛ ତଳ ଖୋଲରେ ପଶିଗଲା । ଏଣେ ହାତୀ ଉପରେ ମାହୁନ୍ତ ଓ ମୁଁ ହସି ହସି ବେଦମ୍ ହୋଇଗଲୁ ।

ମାସକ ପରେ ଉଇଣ୍ଡହାମ୍‌ଙ୍କ ଠାରୁ ଚିଠି ଖଣ୍ଡିଏ ପାଇଲି । ପରଦିନ ସେ କାଳି-ଦୁଙ୍ଗୀରେ ପହଞ୍ଚିବେ ଓ ଅଜଗର ସାପଟିକୁ ଧରିବାକୁ ଆଉ ଥରେ ଚେଷ୍ଟାକରିବେ ବୋଲି ଲେଖିଥାଆନ୍ତି । ସେତେବେଳେ ଜେଫ ହପ୍‌କିନ୍‌ସ ବିଲାତରୁ ସଦ୍ୟ ଆସିଥିବା ତାଙ୍କର ଜଣେ ବନ୍ଧୁଙ୍କ ସହିତ ଆମ ଘରେ ଅତିଥି ଭାବେ ରହିଥାଆନ୍ତି । ଚିଠି ପାଇଲା ପରେ ସାପ ତା ବସାରେ ଅଛି କି ନାହିଁ ଦେଖିବା ପାଇଁ ତିନିହେଁ ଜାମୁଗଛ ପାଖକୁ ଗଲୁ । ଗଛଠାରୁ

Digitized by srujanika@gmail.com

ଅଳିଆ ଛଡ଼ାରେ ଥିବା ପଡ଼ିଆଟି ସମ୍ବରଙ୍କ ଚରଭୂମି; ବର୍ଷ ବର୍ଷ ଧରି ସମ୍ବରଙ୍କ ଖୋଜ ପଡ଼ି ଘାସ ଦଳି ହୋଇ ପଡ଼ିଆଟିରୁ ସବୁ ଧୂଳି ଉଡ଼ିଯାଇଥାଏ । ସେଠାରେ ପଦଚିହ୍ନ ଦେଖିଲୁ ଯେ ମାତ୍ର କେଇ ମିନିଟ୍ ପୂର୍ବରୁ ଓଧ ହଳେ ସାପଟିକୁ ମାରି ପଡ଼ିଆରେ ପକାଇ ଦେଇଯାଇଛନ୍ତି ।

ଓଧ ହଳେ ଏକାଠି ହୋଇ ଅଜଗର ସାପ ବା କୁମ୍ଭୀର ମାରିଦେବା ମୁଁ ଦେଖିଛି । ଓଧ ସାପ ବା କୁମ୍ଭୀର ମାଂସ ଖାଆନ୍ତି ନାହିଁ । ତେଣୁ ଏପରି ଆକ୍ରମଣ ମୂଳରେ ଯୁଦ୍ଧାଭିଳାଷ ଛଡ଼ା ଅନ୍ୟ କାରଣ ଥାଇ ନ ପାରେ । ଓଧର ଆକାର ତୁଳନାରେ ଅଜଗର ସାପ ବା କୁମ୍ଭୀର ଅତି ପ୍ରକାଣ୍ଡ ଓ ପରାକ୍ରମୀ ଜନ୍ତୁ । ସେଭଳି ପ୍ରତିଦ୍ୱନ୍ଦ୍ୱୀକୁ ମାରିବା ପାଇଁ ଓଧ ଦୁଇଟି ଅତି କୌଶଳର ସହିତ ଦୁଇପଟୁ ତା ବେକ ଉପରେ ଧଣ୍ଡ ଆସି ଆକ୍ରମଣ ଚଳାନ୍ତି । ସାପ ବା କୁମ୍ଭୀର ଗୋଟିଏ ଓଧଆଡ଼କୁ ମୁହାଁଇବା ମାତ୍ରେ ଅପରଟି ବିପରୀତ ପାଖରୁ କୁଦାମାରି ତା ବେକରୁ ମାଂସ ପୁଳାଏ କାମୁଡ଼ି ଛଡ଼ାଇ ନିଏ । ଜନ୍ତୁଟି ସେଆଡ଼କୁ ବୁଲିପଡ଼ିବା ମାତ୍ରେ ପ୍ରଥମ ଓଧଟି ତା ବେକ ଆରପାଖରୁ କାମୁଡ଼ାଏ ନିଏ । ଅଜଗର ବା କୁମ୍ଭୀର ସୁକୁମାର ଜନ୍ତୁ ନୁହଁନ୍ତି; ସେତେ ସହଜରେ ସେମାନେ ମରନ୍ତି ନାହିଁ । ଓଧ ଦୁଇଟି କିନ୍ତୁ କ୍ରମାଗତ ଭାବେ ଦୀର୍ଘ ସମୟ ଧରି ଆକ୍ରମଣ ଚଳାଇରଖନ୍ତି ଓ ବେକପଟିରୁ ପୁଳା ପୁଳା ମାଂସ ଛଡ଼ାଇ ମେରୁହାଡ଼ ପଦାକୁ ଦିଶିବା ପରେ ମେରୁମଜ୍ଜା ଛିନ୍ନ କରି ଜନ୍ତୁଟିର ପ୍ରାଣ ନିଅନ୍ତି ।

ପୂର୍ବୋକ୍ତ ଅଜଗର ସାପର ଲମ୍ବ ଥିଲା ସାଢ଼େ ସତର ଫୁଟ ଓ ଗୋଲେଇ ଛବିଶ ଇଞ୍ଚ । ସେଭଳି ପ୍ରକାଣ୍ଡ ସାପ ସହିତ ଟକ୍କରଦେବା ଓଧପରି କ୍ଷୁଦ୍ର ଜନ୍ତୁ ପକ୍ଷରେ ଅତି କଷ୍ଟକର ଓ ବିପଜ୍ଜନକ । ତେବେ ଆକାର କ୍ଷୁଦ୍ର ହେଲେ ମଧ୍ୟ ଓଧ ସାହସରେ କାହାକୁ କମ୍ ନୁହେ । ମୋ ବିଚାରରେ ମଣିଷ ପରି ଓଧ ମଧ୍ୟ ବିପଦବହ୍ୱାନ ଶିକାରରେ ବିଶେଷ ଆନନ୍ଦ ପାଏନାହିଁ । ମଣିଷଙ୍କ ପରି ଶିକାରକ୍ଷେତ୍ରରେ ସେ ଜାଣିଶୁଣି ବିପଦ ବରଣ କରେ ଓ ବିପଦ ବଢ଼ିବା ସହିତ ଶିକାରକୁ କାବୁକରିବା ପାଇଁ ତାର ଆଗ୍ରହ ବୃଦ୍ଧି ପାଏ ଏବଂ ସେଥିରେ ସଫଳ ହେବାରେ ତାକୁ ସେହି ଅନୁପାତରେ ଅଧିକ ଆନନ୍ଦ ଓ ସନ୍ତୋଷ ମିଳେ ।

ଆହାର ସଂଗ୍ରହର ଉଦ୍ଦେଶ୍ୟ ନ ଥାଇ ହିଂସ୍ରଜନ୍ତୁ ପରସ୍ପରକୁ ଆକ୍ରମଣ କରିବାର ଅନ୍ୟ ଏକ ଦୃଷ୍ଟାନ୍ତରେ ଦୁଇଟି ମହାବଳ ବାଘ ଗୋଟିଏ ଦନ୍ତାହାତୀ ସହିତ ଲଢ଼ାଇ କରି ତାକୁ ପ୍ରାଣରେ ମାରିଦେଇଥିଲେ । ଯୁଦ୍ଧୋନ୍ମାଦ ଯୋଗୁଁ ଏଭଳି ସଂଘର୍ଷର ସୂତ୍ରପାତ ହୁଏ ବୋଲି ମୋର ମନ୍ତବ୍ୟ ଯଦି ଗ୍ରହଣ କରି ନ ଯାଏ, ତେବେ ଅରଣ୍ୟର ଅଧିପତି ପ୍ରବଳପରାକ୍ରମୀ ଦନ୍ତାହାତୀ ସହିତ ଜଙ୍ଗଲର ରାଜାରାଣୀରୂପୀ ବାଘ ଓ ବାଘୁଣୀଙ୍କର ଆମରଣ ସଂଗ୍ରାମ ନିମନ୍ତେ ଅନ୍ୟ କାରଣ ଦର୍ଶାଇ ପାରୁନାହିଁ । ଏହି ଐତିହାସିକ ସଂଗ୍ରାମର ବିବରଣୀ ସେତେବେଳେ ସମ୍ବାଦପତ୍ର ଜରିଆରେ ସୁଦୂରପ୍ରସାରୀ ପ୍ରଚାର ଲାଭ କରିଥିଲା ଏବଂ ସେଥିପାଇଁ ନାନା

Digitized by srujanika@gmail.com

କାରଣ ଦର୍ଶାଇ ବହୁ ଖ୍ୟାତନାମା ଶିକାରୀ 'ଦ ପାୟୋନିୟର' ଏବଂ 'ଦ ଷ୍ଟେଟ୍ସମ୍ୟାନ' ସମ୍ବାଦପତ୍ରର ସମ୍ପାଦକଙ୍କ ନିକଟକୁ ପତ୍ର ଲେଖିଥିଲେ । ପ୍ରକାଶିତ ମତାନୁସାରେ ଜାତିଗତ ବୈରଭାବ, ପୂର୍ବରୁ କେବେ ତାଙ୍କ ଶାବକଙ୍କ ହତ୍ୟା ଘଟାଇଥିବା ପାଇଁ ବାଘଙ୍କର ହାତୀ ଉପରେ ପ୍ରତିଶୋଧ କିମ୍ବା ସାଧାରଣ ଶିକାର ପରି ହାତୀଟିକୁ ମାରି ଖାଇବାର ଉଦ୍ଦେଶ୍ୟ ଯୋଗୁଁ ଏହି ସଂଘର୍ଷ ସୃଷ୍ଟି ହୋଇଥିଲା ବୋଲି ମତ ପ୍ରକାଶ ପାଇଥିଲା । ପତ୍ରପ୍ରେରକଙ୍କ ଭିତରେ ପ୍ରତ୍ୟକ୍ଷଦର୍ଶୀ କେହି ନ ଥିଲେ; ପୂର୍ବଦୃଷ୍ଟାନ୍ତ ବା ଉଦାହରଣ ରୂପେ ଉଲ୍ଲେଖ କରିବାକୁ ଏହିପରି ଅନ୍ୟ ଘଟଣା ସେମାନଙ୍କ ଜ୍ଞାତସାରରେ ଘଟି ନ ଥିଲା । ତେଣୁ ଏସବୁ ତର୍କମାର ଯୁକ୍ତିସିଦ୍ଧତା ସମ୍ବନ୍ଧରେ ନିରର୍ଥକ ବାଦାନୁବାଦ ନ କରି ସେଗୁଡ଼ିକୁ କେବଳ ବ୍ୟକ୍ତିଗତ ମତଭାବେ ଗ୍ରହଣ କରିଯାଇପାରେ ।

'ଇଟ୍‌ଇ-ଖବର'ର ତତ୍ତ୍ୱାବଧାରକଙ୍କର ଏକ ପତ୍ରରୁ ଏହି ଘଟଣା ବିଷୟରେ ମୁଁ ପ୍ରଥମେ ଜାଣିଲି । ମୃତ ହାତୀଟିକୁ ଦାହ କରିବା ପାଇଁ ଦୁଇଶହ ଗ୍ୟାଲନ୍ ପାରଫିନ୍ ତେଲ ଯଥେଷ୍ଟ ହେବ କି ନାହିଁ—ସେ ବିଷୟରେ ମୋର ମତ ମାଗି ଭଦ୍ରଲୋକ ପତ୍ର ଲେଖିଥିଲେ । ନୈନିତାଲ୍ ଅଞ୍ଚଳର ତତ୍ତ୍ୱାବଧାରକଙ୍କ ଅଫିସରେ ପହଞ୍ଚି ଶୁଣିଲି ଯେ, ଟନକ୍‌ପୁର ନଈବନ୍ଧ ତଳ ଗୋଟିଏ ପଥୁରିଆ ଜାଗାରେ ହିଁ ଲେ ବାଘ ହାତୀଟିକୁ ମାରିଦେଇଛନ୍ତି । ପଥର ଯୋଗୁ ଗାତ ଖୋଳି ପୋତିବା ସମ୍ଭବ ନ ହେବାରୁ ହାତୀଟିକୁ ଦାହ କରିବା ପାଇଁ ସେଠାକାର ଦପ୍ତରରୁ ଖର୍ଚ୍ଚ ଦାବି କରିଯାଇଛି । ଘଟଣାଟି ଏତେ ଆଶ୍ଚର୍ଯ୍ୟଜନକ ମନେହେଲା ଯେ ଆଉ ଥିରି ନିଧିରପାରି ଦିଶିଶେଷରେ ନିଜେ ଯାଇ ଟନକ୍‌ପୁରରେ ପହଞ୍ଚିଲି । ସେତେବେଳକୁ ଦିଶ ଦିନ ବିତିଗଲାଣି । ଘଟଣାସ୍ଥଳରେ ମୁଁ ପହଞ୍ଚିବାବେଳକୁ ସେଠାରୁ ଅଧିକାଂଶ ଚିହ୍ନ ଲିଭି-ଯାଇଥିଲା ବା ଧୋଇଯାଇଥିଲା ଏବଂ ଅବଶିଷ୍ଟାଂଶ ହାତୀ ସହିତ ପୋଡ଼ି ନିଶ୍ଚିହ୍ନ ହୋଇଥିଲା ।

ଟନକ୍‌ପୁରର ନାଏବ ତହସିଲଦାର ମୋର ପୁରୁଣା ବନ୍ଧୁ । ଭଦ୍ରଲୋକ ଘଟଣାଟି ଆଖିରେ ଦେଖି ନ ଥିଲେ ମଧ୍ୟ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଓ ନିଜର ଅନୁସନ୍ଧାନରୁ ସେ ବିଷୟରେ ସମ୍ପୂର୍ଣ୍ଣ ଅବଗତ ଥିଲେ । ଘଟଣାଟି ସମ୍ବନ୍ଧରେ ଏଠାରେ ଯାହା ଉପସ୍ଥାପନ କରୁଛି, ସେ ସବୁ ତଥ୍ୟ ଯୋଗାଇ ଦେଇଥିବାରୁ ନାଏବ ତହସିଲଦାରଙ୍କ ନିକଟରେ ମୁଁ ଋଣୀ ।

ଟନକ୍‌ପୁର ଶାରଦା ନଦୀ ଦକ୍ଷିଣ କୂଳରେ ଅଯୋଧ୍ୟା—ରୋହିଲଖଣ୍ଡ ପାର୍ଶ୍ୱ ରେଳପଥର ପ୍ରାନ୍ତରେ ଅବସ୍ଥିତ । ଶାରଦା ନଦୀ ସେହିଠାରେ ହିମାଳୟର ପାଦ ପର୍ବତମାନଙ୍କରୁ ଅବତରଣ କରି ସମତଳଗାମିନୀ ହୋଇଛି । ବ୍ୟବସାୟକେନ୍ଦ୍ର ରୂପେ ସହରଟିର ଗୁରୁତ୍ୱ ଅଛି । ତିରିଶ ବର୍ଷ ପୂର୍ବେ ନଦୀଟି ଟନକ୍‌ପୁର ସହର ପାଖ ଶହେ ଫୁଟ ଉଚ୍ଚ ବନ୍ଧତଳ ଦେଇ ବହିଯାଉଥିଲା । ତଳ ପାର୍ବତ୍ୟ ନଦୀମାନଙ୍କର ଗତିପଥ ଅନବରତ ବଦଳୁଥାଏ । ପୂର୍ବବର୍ଣ୍ଣିତ ଘଟଣାଟି ଘଟିବା ସମୟରେ ଶାରଦା ନଦୀର ପ୍ରଧାନ ଜଳଧାର ଥିଲା ଟନକ୍‌ପୁର ବନ୍ଧଠାରୁ ଦୁଇମାଇଲ ଦୂରରେ । ବନ୍ଧ ଓ ଜଳଧାର ମଧ୍ୟରେ ଥିବା ସରୁ ସରୁ କେତୋଟି

Digitized by srujanika@gmail.com

କରନାଲୀର ମଝିମଝିରେ ଗ୍ରେଟ ଗ୍ରେଟ ପଠାଗୁଡ଼ିଏ । ଏହି ପଠାଗୁଡ଼ିକ ବଡ଼ ବଡ଼ ଗଛ, ଝାଟିବୁଦା ଓ ଗହଳ ଘାସବଣରେ ଭର୍ତ୍ତି ।

ସେଦିନ ଟନକ୍‌ପୁରର କେଉଟ ଦୁଇଜଣ ନଦୀରୁ ମାଛ ମାରିବାକୁ ଯାଇଥିଲେ । ମାଛଧରା ସାରି ଜାଲ ଶୁଖାଇ ଫେରିବାକୁ ଡେରି ହେଲା । ଜାଲ ଝାଳେଇ ଧରି ଦୁହେଁ ଘରମୁହାଁ ହେଲା ବେଳକୁ ଦିନ ଉତ୍ତରେଇ ହେଲାଣି । ଦୁଇ ମାଇଲ ବାଟ ଚାଲି ଟନକ୍‌ପୁର ବନ୍ଧପାଖ କରନାଲୀ କୂଳରେ ଦୁହେଁ ପହଞ୍ଚିଲେ । କରନାଲୀଟି ସେଠାରେ ଚାଳିଶ ଗଜ ଓସାର । ପାଣିରେ ପଶି ପାରହେବା ପାଇଁ କେଉଟ ଦୁହେଁ ଘାସବଣରୁ ବାହାରିପଡ଼ିବାମାତ୍ରେ ଦେଖିଲେ ଯେ ଆର କୂଳରେ ଠିକ୍ ଟନକ୍‌ପୁର ବନ୍ଧତଳେ ବାଘ ଦୁଇଟି ଛିଡ଼ା ହୋଇଛନ୍ତି । ବାଟଘାଟରେ ବାଘ ଭେଟିବା ସେମାନଙ୍କ ପକ୍ଷରେ କିଛି ନୂଆ କଥା ନୁହେଁ; ସେଥିପୂର୍ବରୁ କେତେଥର ସେମାନେ ବାଟରେ ଏହିପରି ବାଘ ଭେଟିଥିଲେ । ତେଣୁ ବିଶେଷ ବ୍ୟସ୍ତ ବା ବିଚଳିତ ନ ହୋଇ ବାଘ ଦୁଇଟି ବାଟରୁ ହଟିଯିବାଯାଏ ଅପେକ୍ଷା କରିବାକୁ ଦୁହେଁ ସେହିଠାରେ ବସିପଡ଼ିଲେ । କେଉଟ ଦୁହେଁ ବିଚଳିତ ହୋଇ ନ ଥିବା କଥାଟି ଉଲ୍ଲେଖଯୋଗ୍ୟ ଓ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ଭୟଜନିତ ଲୋକଙ୍କ ମନରେ ନାନା କାଳ୍ପନିକ ବିପଦ ରୂପ ନିଏ; ପରେ ସେମାନଙ୍କ ବିବୃତିରୁ ପ୍ରକୃତ ଓ କାଳ୍ପନିକ ତଥ୍ୟମାନ ପୃଥକ୍ କରିବା କଷ୍ଟକର ହୋଇପଡ଼େ । ଯେ ଯାହାହେଉ, ଏ କଥା ନିଶ୍ଚିତ ଯେ, କେଉଟମାନେ ବାଘ ଦୁଇଟିକୁ ଠିକ୍ ସାମନାସାମନି ଭେଟିଥିଲେ ଓ ମଉଳା ଆଲୁଅରେ ଅଳ୍ପ ବ୍ୟବଧାନରୁ ବାଘଙ୍କୁ ସ୍ପଷ୍ଟ ଦେଖିପାରୁଥିଲେ ମଧ୍ୟ ସେଥିଯୋଗୁ ସେ ଦୁହେଁ ଆଦୌ ବିଚଳିତ ହୋଇ ନ ଥିଲେ ।

କେଉଟ ଦୁହେଁ ବସିଥିଲାବେଳେ ସେମାନଙ୍କର ଅତି ନିକଟରେ ଘାସ ଚକଡ଼ାଏ ହଲଚଲ ହୋଇଉଠିଲା ଓ ଠିକ୍ ପରେ ପରେ ମସ୍ତବଡ ଦନ୍ତାହାତୀଟାଏ ଘାସବଣରୁ ପଦାକୁ ବାହାରି ଆସିଲା । ଟନକ୍‌ପୁରର ଲୋକେ ଓ ବିଶେଷ କରି ସେଠାକାର ଜଙ୍ଗଲ ବିଭାଗର କର୍ମଚାରୀମାନେ ସେ ହାତୀଟିକୁ ଭଲଭାବେ ଚିହ୍ନିଥିଲେ । "ଚେନେ" ଜଙ୍ଗଲ ବଙ୍ଗଳାର ଝୁଣ୍ଟିଗୁଡ଼ିକୁ ବରାବର ଉପାଡ଼ି ଦେଉଥିବାରୁ ସେ ହାତୀଟି ଜଙ୍ଗଲ ବିଭାଗ କର୍ମଚାରୀଙ୍କର ଚକ୍ଷୁଶୂଳ ହୋଇଥିଲା । ତେବେ ସେତିକି ଛଡ଼ା ଆଉ କାହାରି କିଛି ଅନିଷ୍ଟ ବା କ୍ଷୟକ୍ଷତି ଘଟାଇ ନ ଥିବାରୁ ତାକୁ 'ମାରଣାହାତୀ' ବୋଲି ଧରାଯାଉ ନ ଥିଲା ।

ପାଣି ପାଖରେ ପହଞ୍ଚି ଆରକୂଳରେ ବାଘ ଦୁଇଟିଙ୍କୁ ଦେଖିଦେବାମାତ୍ରେ ହାତୀ ହଠାତ୍ ଶୁଣ୍ଢ ଟେକି ବୋବାଳି ଛାଡ଼ି ସେଆଡ଼କୁ ଆଗେଇବାକୁ ଲାଗିଲା । ବାଘ ଦୁଇଟି ଦଙ୍ଗେ ଦଙ୍ଗେ ତା ଆଡ଼କୁ ମୁହାଁଇ ତିଆର୍ ହୋଇ ଛିଡ଼ାହେଲେ । ହାତୀ ଆହୁରି ପାଖେଇବା ଦେଖି ବାଘରୁ ଗୋଟିଏ ଯୁଦ୍ଧାହ୍ୱାନ ଜଣାଇଲା ପରି ହେଣ୍ଟାଳ କରି କରି ତା ସାମ୍ନାରେ ପଇଁତରା ମାରିବାକୁ ଲାଗିଲା । ସେହି ଅବସରରେ ଆର ବାଘଟି ଅତି ଚତୁରତାର ସହ ବୁଲି ଯାଇ ପଛପଟୁ ହାତୀ ପିଠିକୁ କୁଦିପଡ଼ିଲା । ପିଠିରୁ ବାଘକୁ ଖସାଇଦେବା ଉଦ୍ଦେଶ୍ୟରେ ହାତୀ ଶୁଣ୍ଢ

Digitized by srujanika@gmail.com

ଉଠାଇ ମୁଣ୍ଡ ଟେକିଦେବା ମାତ୍ରେ ପ୍ରଥମ ବାଘଟି ସାମନାରୁ କୁଦା ମାରି ତା ମୁଣ୍ଡ ଉପରକୁ ଚଢ଼ିଗଲା । ହାତୀ ପ୍ରଚଣ୍ଡ ରାଗରେ ରଡ଼ି ଛାଡ଼ୁଥାଏ; ବାଘ ଦୁଇଟି ତାର ଜବାବ ଦେଲା ପରି ପ୍ରବଳ ଗର୍ଜନ କରୁଥାଆନ୍ତି । ମହାବଳ ବାଘର କ୍ରୁଦ୍ଧ ଗର୍ଜ୍ଜନ ଭଳି ଭୀତିପ୍ରଦ ଶବ୍ଦ ସଂସାରରେ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ବାଘର ଗର୍ଜନ ସହିତ ହାତୀର ବିକଟାଳ ରଡ଼ି ଯେପରି ଶବ୍ଦତାଣ୍ଡବ ସୃଷ୍ଟି କଲା, ସେଥିରେ କେଉଟ ଦୁହେଁ ପ୍ରାଣର ଆଶା ଛାଡ଼ି, ଜାଲ ଖୋଲେଇ ଫୋପାଡ଼ି ଅତର୍ଦ୍ଧରେ ଗୋଟିଏ ବୁଲଣି ବାଟରେ ଟନକ୍‌ପୁର ଆଡ଼େ ଧାଇଁଲେ ।

ସଞ୍ଜବେଳ । ଟନକ୍‌ପୁରରେ ଘରେ ଘରେ ରାତ୍ର ଖୋରାକର ଆୟୋଜନ ଚାଲିଛି । ଏତିକିବେଳେ ହାତୀ ଓ ବାଘଙ୍କ ତୁଳସ୍ପର୍ଶୀ ଗର୍ଜନରେ ସହରସାରା ହୁଲସ୍ଥୁଲ ପଡ଼ିଗଲା । ଠିକ୍ ସେତିକି ବେଳକୁ କେଉଟଦୁହେଁ ଧଇଁସଇଁ ହୋଇ ପହଞ୍ଚି ଲଢ଼େଇର ଖବର ଜଣାଇଲେ । ସହରବାସୀଙ୍କ ଭିତରୁ ଥୋକାଏ ଭରସି କରି ନଈବନ୍ଧ ଆଡ଼େ ଯାଉଥିଲେ । ଜନ୍ତୁଗୁଡ଼ିକ ଲଢ଼ି ଲଢ଼ି ସେହିଆଡ଼େ ଆସୁଛନ୍ତି ବୋଲି କେହି ହୁରି ଉଠାଇଦେବା-ମାତ୍ରେ ସେମାନେ ଛନ୍ନଛଡ଼ା ହୋଇ ଯେ ଯୁଆଡ଼େ ପଳାଇଗଲେ । ମୁହୂର୍ତ୍ତକ ଭିତରେ ଘରେ ଘରେ ତାଟି କବାଟ ପଡ଼ିଗଲା । ସହରଯାକ ଲୋକ ଭୟରେ କାଷ୍ଠ ହୋଇ କବାଟ କଳି କେବଳ ଶବ୍ଦକୁ କାନ ଡେରି ରହିଲେ ।

ଲଢ଼େଇ କେତେ ସମୟ ଯାଏଁ ଚାଲିଲା ଠିକ୍ ଜାଣିପାରିଲା ନାହିଁ । ପ୍ରାୟ ରାତି ଅଧକୁ ଯୁଦ୍ଧବିରତି ଘଟିଲା ବୋଲି କେତେକ କହୁଥିବା ସ୍ଥଳେ ସଂଗ୍ରାମ ରାତିସାରା ଅବିରତ ଲାଗି-ରହିଥିଲା ବୋଲି ଅନ୍ୟମାନେ ମତଦେଲେ । ଲଢ଼ାଇ ଯେଉଁଠାରେ ଚାଲିଥିଲା, ସେଠାରୁ ଅଳ୍ପ ଦୂରରେ ଠିକ୍ ନଈବନ୍ଧ ଉପରେ ମିଃ ମାର୍ଥେନ୍ ନାମକ ଜଣେ ଅବସରପ୍ରାପ୍ତ ଭଦ୍ରଲୋକଙ୍କ ବଙ୍ଗଳା । ତାଙ୍କ କହିବା ଅନୁସାରେ ଲଢ଼େଇ ଦୀର୍ଘ କେଇ ଘଣ୍ଟା ଧରି ଅବିରାମ ଗତିରେ ଚାଲିଥିଲା ଓ ସେତିକି ସମୟ ଯେପରି ଗର୍ଜନ-ତର୍ଜନ ଅନବଚ୍ଛିନ୍ନ ଭାବେ ଲାଗିରହିଥିଲା, ସେଭଳି ଭୟଙ୍କର ଶବ୍ଦ ସେ ଜୀବନରେ କେବେ ଶୁଣିନାହାନ୍ତି । ରାତି ଭିତରେ ବନ୍ଧୁକ ଆବାଜ ମଧ୍ୟ ଶୁଣାଯାଇଥିଲା; ଜିଏ କେଉଁଠାରୁ ବନ୍ଧୁକ ଫଏର୍ କଲା ତାହା କେହି କହି-ପାରିଲେ ନାହିଁ । ତେବେ ବନ୍ଧୁକ ଆବାଜ ପରେ ମଧ୍ୟ ଯୁଦ୍ଧମାନ ଜନ୍ତୁଗୁଡ଼ିକ ଲଢ଼େଇରୁ ଓହରି ନଥିଲେ ବୋଲି ସମସ୍ତେ ଏକମତ ହେଲେ ।

ପରଦିନ ସକାଳୁ ଲୋକେ ନଈବନ୍ଧର ଏକ ଉଚ୍ଚ ସ୍ଥାନରେ ଠୁଳହୋଇ ଦେଖିଲେ ଯେ ବନ୍ଧତଳେ ପ୍ରକାଣ୍ଡ ପଥରମାନ ବିଛାଇ ହୋଇଥିବା ଏକ ସ୍ଥାନରେ ଦନ୍ତାହାତୀଟିଏ ମରିପଡ଼ିଛି । ହାତୀର କ୍ଷତଗୁଡ଼ିକର ଯେଉଁ ବିବରଣୀ ନାଏବ-ତହସିଲଦାରଙ୍କଠାରୁ ଶୁଣିଲି, ମନେହେଲା ଯେ ରକ୍ତହାନି ଯୋଗୁଁ ହିଁ ତାର ମୃତ୍ୟୁ ଘଟିଛି । ବାଘଙ୍କର କ'ଣ ହେଲା ଜଣାପଡ଼ିଲା ନାହିଁ । ହାତୀକୁ ଖାଇବା ପାଇଁ ସେମାନେ ପ୍ରୟାସ କରି ନ ଥିଲେ; ଆଖପାଖ କେଉଁଠାରେ ମୃତ ବା ଆହତ ବାଘ ମଧ୍ୟ କାହାରି ଦୃଷ୍ଟିଗୋଚର ହୋଇନଥିଲେ ।

Digitized by srujanika@gmail.com

ଜାତିଗତ ଦ୍ୱେଷ, ଶାବକର ହତ୍ୟା ପାଇଁ ପ୍ରତିଶୋଧ କିମ୍ବା ଖାଦ୍ୟ ସଂଗ୍ରହ କରିବାର ପ୍ରୟାସ—ଏଥିରୁ କୌଣସି କାରଣରୁ ବାଘ ଦୁଇଟି ହାତୀକୁ ଆକ୍ରମଣ କରିଥିବେ ବୋଲି ମୋର ବିଶ୍ୱାସ ନୁହେଁ । ତେବେ ନବେ ପାଉଣ୍ଡ ଓଜନର ଦାନ୍ତ ଥିବା ପ୍ରକାଣ୍ଡ ଦନ୍ତାହାତୀକୁ ହଳେ ବାଘ ଯେ ଆକ୍ରମଣ କରି ମାରିପକାଇଥିଲେ—ଅସ୍ୱାଭାବିକ ଏବଂ ଅତି ଆଶ୍ଚର୍ଯ୍ୟକର ମନେହେଉଥିଲେ ମଧ୍ୟ ଏ ଘଟଣାର ସତ୍ୟତା ସମ୍ବନ୍ଧରେ ସନ୍ଦେହର ଅବକାଶ ନାହିଁ । ମୋ ବିଶ୍ୱରରେ ସାମାନ୍ୟ ଟିମିକି ଖେଳରୁ ଅପ୍ରତ୍ୟାଶିତ ଓ ଆକସ୍ମିକ ଭାବେ ମହାଭାରତ ସୃଷ୍ଟି ହୋଇଥିଲା । ବାଘ ଦୁଇଟିଙ୍କୁ ସାମନାରେ ଦେଖି ହାତୀ ବୋଧହୁଏ ବାଟରୁ ତାଙ୍କୁ ହୁରୁଡ଼ାଇ ଦେବାକୁ ଚାହିଁଥିଲା । ସେତେବେଳେ ଦନ୍ଦବାଦ ଉତ୍ତର ଆରମ୍ଭ । ପ୍ରଣୟରତ ବାଘ-ବାଘୁଣୀ ହାତୀର ଔଦ୍ଧତ୍ୟ ବରଦାସ୍ତ କଲେନାହିଁ; ପରନ୍ତୁ ହାତୀକୁ ସେଠାରୁ ହଟାଇଦେବାକୁ ସେମାନେ ମଧ୍ୟ ଅଡ଼ିବସିଲେ । ସାମାନ୍ୟ କାରଣରୁ ବାଦବିବାଦ ଆରମ୍ଭ ହୋଇ ତାହା ଶେଷରେ ଘୁମୂଳ ସଂଗ୍ରାମରେ ପରିଣତ ହେଲା । ହାତୀ ମୁଣ୍ଡ ଉପରକୁ କୁଦିପଡ଼ିଥିବା ବାଘ ବୋଧହୁଏ ନଖରେ ତା ଅଖିଦୁଇଟି ଡାଡ଼ିଦେଇଥିଲା । ଅନ୍ଧ ହାତୀଟି ବାଟ ବାରି ନପାରି ହଟି ହଟି ଅସି ଶେଷରେ ପଥର କନ୍ଦରେ ପଶିଲା । ଟଳମଟଳ ହେଉଥିବା ଟିକ୍‌କଣ ପଥର ଉପରେ ଗୋଡ଼ ଜମାଇ ଛିଡ଼ାହେବା ତା ପକ୍ଷରେ ନିଶ୍ଚୟ ଦୁଷ୍କର ହୋଇଥିବ । ସେ ଭିତରେ ବାଘ ଦୁଇଟି ମଧ୍ୟ ଆହତ ହୋଇ ଅଧିକ ଉନ୍ମତ୍ତ ହୋଇ ଉଠିଥିବେ ଏବଂ ଅସମର୍ଥ ପ୍ରତିଦ୍ୱନ୍ଦ୍ୱୀର ଦୁର୍ଦ୍ଦଶାର ପୂର୍ଣ୍ଣ ସୁଯୋଗ ନେଇ ନିର୍ଦ୍ଦୟଭାବେ ତାକୁ ହତ୍ୟା କରିବାକୁ ପାଶ୍ଚାତ୍‌ପଦ ହୋଇ ନଥିବେ ବୋଲି ମୋର ବିଶ୍ୱାସ ।

ମାଂସଭୋଜୀ ପଶୁ ଶିକାରକୁ ଦାନ୍ତରେ କାମୁଡ଼ି ମାରନ୍ତି । ଶିକାରକୁ ଅଟକାଇବା, ଟେକିନେବା ଏବଂ ସମସ୍ତଶେଷରେ ତାକୁ ଅଚଳ କରିଦେବା ପାଇଁ ସେମାନେ ନଖ ବ୍ୟବହାର କରନ୍ତି । ଶିକାରକୁ ଅନୁଧାବନ କରି ମାରୁଥିବା ଜନ୍ତୁଗୁଡ଼ିକୁ ବାଦ୍‌ଦେଲେ ଅନ୍ୟ ମାଂସଭୋଜୀ ପଶୁ ଓ ବଣେଇ କରି ଛପି ଛପି ଆକ୍ରମଣ କରୁଥିବା ଜନ୍ତୁଙ୍କ ଶିକାର କରୁଥିବା ଅବସ୍ଥାରେ ଦେଖିବାର ସୁଯୋଗ ସାଧାରଣତଃ ମିଳେ ନାହିଁ । ଅତି ଆକସ୍ମିକ ଭାବେ ତାହା ଦେଖିବାର ସୁଯୋଗ କେବେ ଘଟିଗଲେ ମଧ୍ୟ ଆକ୍ରମଣକାରୀ ଏତେ ବେଗରେ ତା ଶିକାରକୁ ମାରିଦିଏ ଯେ, ଆକ୍ରମଣରେ ବିଭିନ୍ନ ପର୍ଯ୍ୟାୟମାନ ଲକ୍ଷ୍ୟ କରିବା ଅତ୍ୟନ୍ତ ଦୁଷ୍କର ହୋଇପଡ଼େ । ବହୁବର୍ଷର ଅନୁଭୂତି ଭିତରେ ମହାବଳ ବା ଚିତାବାଘ ଶିକାର ମାରିବା ମୁଁ ଅନ୍ତତଃ କୋଡ଼ିଏ ଥର ଦେଖିଥିବି; କିନ୍ତୁ ଶିକାରକୁ ଧରିନେବା ପରେ ବାଘ ଠିକ୍ କଣ କରେ ଓ

Digitized by srujanika@gmail.com

କେଉଁ ଉପାୟରେ ତାର ପ୍ରାଣ ନିଏ, ତାହାର ପୂର୍ଣ୍ଣ ଚିତ୍ରଟିଏ ଦେବା ମୋ ପକ୍ଷରେ ସମ୍ଭବ ହେବ ନାହିଁ ।

ମହାବଳ ଓ ଚିତାବାଘ ଶିକାରକୁ ସାଧାରଣତଃ ପଛପଟୁ ଆକ୍ରମଣ କରନ୍ତି । ଆଘାତରୁ ରକ୍ଷାପାଇବା ପାଇଁ ଶିଙ୍ଘାଳ ଜନ୍ତୁଙ୍କୁ ସେମାନେ ପଛପଟୁ ଆକ୍ରମଣ କରିବା ସ୍ୱାଭାବିକ । ମୁଁ ବୋଧହୁଏ କୋଡ଼ିଏଟି ଦୃଷ୍ଟାନ୍ତରୁ ବାଘ ଗୋଟିଏ ପ୍ରାପ୍ତବୟସ୍କା ହରିଣୀକୁ ସାମନାରୁ ଆକ୍ରମଣ କରିବାର ଗୋଟିଏ ମାତ୍ର ଦୃଷ୍ଟାନ୍ତ ମୁଁ ଦେଖିଛି । ଅନ୍ୟ ସବୁଠାରେ ମହାବଳ ବା ଚିତାବାଘ ଛପି ଛପି ପାଖେଇବା ପରେ ଅଳ୍ପ ବ୍ୟବଧାନରୁ ଶିକାର ପାଖକୁ ଛୁଟିଆସିଥିଲା କିମ୍ବା କୁଦାକେ ତାକୁ ମାଡ଼ିବସିଥିଲା ଓ ନଖରେ ଅଟକାଇ ଧରି ତଣ୍ଟି ଚୂଁଣି କନ୍ତୁଟିକୁ ଭୂଇଁରେ ଲେଟାଇ ଦେଇଥିଲା । ଏତେ ଅଳ୍ପ ସମୟ ଭିତରେ ଏସବୁ ସମାହିତ ହୋଇଥିଲା ଯେ ଆକ୍ରମଣର ଆରମ୍ଭ ଓ ଅକାଳ ଜନ୍ତୁଟିର ମୃତ୍ୟୁ ଭିତରେ କଣ କଣ ଘଟିଲା, ତାହା ଜାଣିପାରିଲି ନାହିଁ ।

ପଛପଟୁ ଆକ୍ରମଣ ଚଲାଇବାବେଳେ ଜନ୍ତୁଙ୍କ ଖୁରା ଆଘାତରୁ ନିଜକୁ ରକ୍ଷା କରିବା ପାଇଁ ବାଘକୁ ବିଶେଷ ସାବଧାନ ହେବାକୁ ପଡ଼େ । ପ୍ରାପ୍ତବୟସ୍କ ବଡ଼ ବଡ଼ ସମ୍ବର ବା ହରିଣଙ୍କ ଜୋର୍ କମ୍ ନୁହେଁ । ସେମାନଙ୍କ ଖୁରାଗୁଡ଼ାକ ମଧ୍ୟ ଏତେ ଧାରୁଆ ଯେ ପଛଗୋଡ଼ର ଗୋଟିଏ ନାତରେ ସେମାନେ ବାଘର ପେଟ ଚିରି ଅନ୍ତବୁଜୁଳା ବାହାର କରିଦେଇ ପାରନ୍ତି । ବାଘ ଭୂଇଁରେ ତାକୁ ମାଡ଼ିବସିଲା ପରେ ଜନ୍ତୁଟି ତାର ସମସ୍ତ ଜୋର୍ ଲଗାଇ ଉଠିପଡ଼ିବାକୁ ଚେଷ୍ଟାକରେ । ବାଘ କିନ୍ତୁ ଏପରି କୌଶଳରେ ତା ବେକ ମୋଡ଼ି ମାଡ଼ିଧରେ ଯେ ସେତେ ଛଟପିଟି ହେଲେ ମଧ୍ୟ ସେ ନାତ ମାରିପାରେ ନାହିଁ ଏବଂ ଛଡ଼ାହେବାକୁ ଚେଷ୍ଟାକଲେ ତା ବେକ ମୋଡ଼ିହୋଇ ଭାଙ୍ଗିଯାଏ । ଅଧିକାଂଶ ସମୟରେ ଭୂଇଁରେ ପଡ଼ିବାବେଳକୁ ବେକର ଖଣ୍ଡା ଖସି ବା ହାଡ଼ ଭାଙ୍ଗି ଜନ୍ତୁଟି ଅଚଳ ହୋଇଯାଇଥାଏ । ବେଳେବେଳେ ବାଘ ଦାନ୍ତରେ କାମୁଡ଼ି ତାର ବେକ ଭାଙ୍ଗିଦିଏ କିମ୍ବା ତଣ୍ଟି ଚୂଁଣି ଶ୍ୱାସରୋଧ କରି ତାର ପ୍ରାଣ ନିଏ ।

ମହାବଳ ବାଘ ପଛ ଫଡ଼ିଆର ମାଂସପେଶୀ ନଖରେ ଛଡ଼ାଇ ଶିକାରକୁ ଅଚଳ କରିଦେବାର କେତୋଟି ଘଟଣା ମୋ ନଜରକୁ ଆସିଛି; କିନ୍ତୁ ଚିତାବାଘ ସେପରି କରିବା କେବେହେଲେ ଦେଖିନାହିଁ । ମହାବଳ ବାଘ ଘଟାଇଥିବା ଏହିଭଳି ଏକ ଘଟଣା ନିମ୍ନରେ ବର୍ଣ୍ଣନା କରୁଛି ।

Digitized by srujanika@gmail.com

ମୋର ଜଣେ ବନ୍ଧୁ ଆସି ଦିନେ ଖବର ଦେଲେ ଯେ ନୈନିତାଲ୍‌ଠାରୁ ନଅ ମାଇଲ ଦୂର 'ଦେମ୍‌ଧାର' ପାହାଡ଼ ପିଠିରେ କୌଣସି ହିଂସ୍ରଜନ୍ତୁ ତାଙ୍କ ଗାଈରୁ ଗୋଟିକୁ ମାରି-ଦେଇଛି । ଏହି ବନ୍ଧୁଜଣକ ସେଠାରେ ଗୋଠେ ଗାଈଗୋରୁ ପାଳୁଥାଆନ୍ତି । ମହାବଳ ବା ଚିତାବାଘ ମଝିରେ ମଝିରେ ସେଥିରୁ ଗୋଟିଏ ଦୁଇଟି ମାରିଦେବା ତାଙ୍କର ଦେହସହା ହୋଇଯାଇଥିଲା । ବାଘ ଗବାଦି ପଶୁଙ୍କର ତଣ୍ଟି ଝୁଣି ମାରିଦିଏ । ମୃତ ଗାଈଟିର ତଣ୍ଟି ବା ବେକରେ କୌଣସି କ୍ଷତ ନ ଥାଇ କେବଳ ତା ପଛ ଫଡ଼ିଆର ମାଂସପେଶୀଗୁଡ଼ିକ ଛିନ୍ନଭିନ୍ନ ହୋଇଥିବା ଦେଖି ତାଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା ଏବଂ ମହାବଳ ବା ଚିତାବାଘ ସେପରି କରି ନ ଥିବେ ଭାବି ସେ ସନ୍ଦେହ କଲେ ଯେ ତାଙ୍କର ଅଜଣା ଅନ୍ୟ କୌଣସି ଜନ୍ତୁ ଗାଈଟିକୁ ଏପରି କଲବଲ କରି ମାରିଛି । ସେ ଖବର ନେଇ ମୋ ପାଖରେ ଆସି ହାଜର ହେଲାବେଳକୁ ଦିନ ବଢ଼ି ନ ଥିଲା । ଦୁଇଘଣ୍ଟା ଭିତରେ ତାଙ୍କ ସହିତ ଘଟଣାସ୍ଥଳରେ ପହଞ୍ଚି ଦେଖିଲି ଯେ ବଡ଼ ଗାଈଟିଏ ପରିଷ୍କାର ଓସାର ଗୋଟିଏ ପୋଡ଼ାସରିରେ * ମରି ପଡ଼ିଛି; ଅନ୍ଧମକୋଷ୍ଟା ତାକୁ ହଟାଇବାକୁ ବା ଲୁଚାଇ ଦେବାକୁ ଚେଷ୍ଟା କରିନାହିଁ । ଘଟଣା ବିଷୟରେ ଶୁଣିଲାବେଳକୁ ହିମାଳୟର କଳାଭାଲୁ ଗାଈଟିକୁ ମାରିଥିବ ବୋଲି ସନ୍ଦେହ କରୁଥିଲି । ଏ ଧରଣର ଭାଲୁ ନିୟମିତ ମାଂସ ଖାଉ ନ ଥିଲେ ମଧ୍ୟ କେବେ କେମିତି ଜନ୍ତୁଟିଏ ମାରି ଖାଇଦିଏ; ମହାବଳ ବା ଚିତାବାଘ ପରି ସେଥିରେ ଦକ୍ଷତା ନ ଥିବାରୁ ଶିକାରକୁ ସେ ଅତି ବାଭତ୍ସଭାବେ କ୍ଷତବିକ୍ଷତ କରିପକାଏ ।

ମୃତ ଗାଈଟିକୁ ପରୀକ୍ଷା କରି ଦେଖିଲି ଯେ ଅତି ଅସ୍ୱାଭାବିକ ମନେହେଲେ ମଧ୍ୟ ମହାବଳ ବାଘ ହିଁ ଏ କାଣ୍ଡ କରିଅଛି । ପଛ ଫଡ଼ିଆର ମାଂସପେଶୀଗୁଡ଼ିକୁ ଛିଡ଼ାଇ ଗାଈଟିକୁ ଅଚଳ କରିଦେବା ପରେ ବାଘ ପେଟ ବିଦାରି ତାକୁ ମାରିଛି ଓ ପଛ ଫଡ଼ିଆରୁ ଫଡ଼ାଫଡ଼ା ମାଂସ ନଖରେ ବିଦାରି ଖାଇଛି । ବାଘ ଦାନ୍ତ ନ ଲଗାଇ କେବଳ ନଖ ବ୍ୟବହାର କରିଥିବା ଦେଖି ଆଶ୍ଚର୍ଯ୍ୟ ହେଲି । ମଠାଳ ଭୂଇଁରେ ପାଦଚିହ୍ନ ଛାପ ବାରି ନ ହେବାରୁ ବାଘକୁ ଅନୁସରଣ କରି ପାରିଲି ନାହିଁ । ଆଖପାଖର ଜଙ୍ଗଲ ସବୁ ତନ୍ନତନ୍ନ କରି ଖୋଜି ମଧ୍ୟ ବାଘର ଚିହ୍ନବର୍ଣ୍ଣ ଦେଖିଲି ନାହିଁ । ସୂର୍ଯ୍ୟ ବୁଡ଼ିବା ବେଳକୁ ମଡ଼ ପାଖର ଗୋଟିଏ ଗଛରେ ଚଢ଼ି ରାତି ତମାମ ଜଗିବସିଲି । ବାଘ କିନ୍ତୁ ମଡ଼ ପାଖକୁ ଆଉ ଫେରିଲା ନାହିଁ । ଏହାପରେ ବାଘଟି ଠିକ୍ ସେହିପରି ଆହୁରି ଛଅଟି ଗାଈ ଓ ଦନୋଟି ମଇଁଷି ମାରିଲା । ପ୍ରତ୍ୟେକ ବାର ମଡ଼କୁ ଥରଟିଏ ଖାଇବା ପରେ ସେ ତା' ପାଖ ଆଉ ପଶି ନ ଥିଲା ।

ବାଘର ଶିକାର ମାରିବା ପ୍ରଣାଳୀ ତାର ଦୈହିକ ଅବସ୍ଥା ଉପରେ ହିଁ ନିର୍ଭର କରେ । ଜନ୍ତୁଙ୍କୁ କଲବଲ କରି ମାରିବା ଭଳି ସ୍ୱଭାବଗତ ନିଷ୍ଠୁରତା ମହାବଳ ବାଘଠାରେ ଦେଖା-ଯାଏ ନାହିଁ । ମୋର ତେଣୁ ସନ୍ଦେହ ହେଲା ଯେ, ଏ ବାଘଟି ତାର ସ୍ୱାଭାବିକ ଦୈହିକ ଅବସ୍ଥାରେ ନାହିଁ । ଶିକାର ମାରିବା ପାଇଁ ଏବଂ ମଡକୁ ହଟାଇନେବା ପାଇଁ ବାଘ ତାର ଶ୍ୱାନଦନ୍ତ

* ପୋଡ଼ାସରି (Firetrack)

Digitized by srujanika@gmail.com

ବ୍ୟବହାର କରେ । ଏ ବାଘଟି କିନ୍ତୁ ଦାନ୍ତ ନ ଲଗାଇ କେବଳ ନଖ ବ୍ୟବହାର କରିଥିବାରୁ ଅନୁମାନ କଲି ଯେ ସମ୍ଭବତଃ ଗୁଳିମାଡ଼ରେ ତା ତଳପାଟି ଜଖମ ହୋଇଛି । ମଲା ଗାଈଟିକୁ ଦେଖିଲାବେଳୁ ମୋର ଏପରି ଧାରଣା ହୋଇଥିଲା; ବାଘ ଶିକାର ମାରିବା ଭିତରେ ସମୟର ବ୍ୟବଧାନ କ୍ରମେ ବୃଦ୍ଧି ପାଇବା ଓ ଶିକାରରୁ ତାର ଖୋରାକ କ୍ରମେ କମିଆସୁଥିବା ଦେଖି ସେ ଧାରଣା ଅଧିକ ଦୃଢ଼ ହେଲା । ସମ୍ଭବତଃ ଶିକାର ଖାଉଥିବା ଅବସ୍ଥାରେ ଗୁଳିମାଡ଼ ହୋଇଥିବା ଯୋଗୁଁ ବାଘ ଥରଟିଏ ଖାଇବା ପରେ ଶିକାର ପାଖକୁ ଆଉ ଫେରୁ ନ ଥିଲା । କ୍ରମବର୍ଦ୍ଧମାନ ବ୍ୟବଧାନରେ ସମୁଦାୟ ଦଶଟି ଗାଈ ମଇଁଷି ମାରିବା ପରେ ବାଘର ଉପଦ୍ରବ ଆପେ ଆପେ ବନ୍ଦ ହୋଇଗଲା । ସେ ଅଞ୍ଚଳର କେହି ତାର ମୃତଦେହ ବା ଦେହାବଶେଷ ଦେଖି ନ ଥିବାରୁ ଅନୁମାନ କରୁଛି ଯେ ଉଚ୍ଛୃଙ୍ଖଳ ଶିକାରର ଶରବ୍ୟ ହୋଇଥିବା ଏହି ଦୁର୍ଦ୍ଦଶାଗ୍ରସ୍ତ ବାଘଟି ମୁମୂର୍ଷୁ ଅବସ୍ଥାରେ କୌଣସି ପାହାଡ଼ଗୁମ୍ଫା ବା ପଥରଖୋଲରେ ପଶି ସେହିଠାରେ ଶେଷ ନିଶ୍ୱାସ ତ୍ୟାଗ କରିଥିବ ।

ପଛ ଫଡ଼ିଆରୁ ନିସ୍ତମିତ ମାଂସପେଶୀ ଛିନ୍ନକରି ମହାବଳ ବାଘ କେବଳ ନଖଦ୍ୱାରା ଶିକାର ମାରିବା ବା ମାଂସ ଛଡ଼ାଇ ଖାଇବାର ଏଭଳି ଦୃଷ୍ଟାନ୍ତ ମୁଁ ଆଉ କେବେ ଦେଖି-ନାହିଁ । ତେବେ ଅଧିକରି ଦୁଇଟି ଘଟଣାରେ ବାଘ ମଇଁଷିର ଫଡ଼ିଆରୁ ମାଂସପେଶୀ ଛଡ଼ାଇ ଦେଇଥିବା ମୋର ଦୃଷ୍ଟିଗୋଚର ହୋଇଛି । ସେଥର କିନ୍ତୁ ବଡ଼ ବଡ଼ ମଇଁଷିଙ୍କ ସମ୍ମୁଖ-ସଂଗ୍ରାମରେ ଅସ୍ତ୍ର କରି ନ ପାରି ତାଙ୍କୁ ଅଚଳ କରିଦେବା ପାଇଁ ବାଘ ଫଡ଼ିଆର ମାଂସପେଶୀ ଛଡ଼ାଇ ଦେବାକୁ ବାଧ୍ୟହୋଇଥିଲା । *

* 'କୁମାୟୁଁ ନରଖାଦକ' ବହିଟି ଦ୍ରଷ୍ଟବ୍ୟ—ଅନୁବାଦକ ।

Digitized by srujanika@gmail.com

## ଛଅ

ଟମ୍ ଦେଇଥିବା ଛୁଟିକିଣିଟିର ରବର ନଷ୍ଟ ହୋଇଯିବା ପରେ ବାଟୁଲିଖଡ଼ାଟିଏ ତିଆରି କଲି । ବାଟୁଲିଖଡ଼ା ଧନୁ ଅପେକ୍ଷା କମ୍ ଲମ୍ବ—କିନ୍ତୁ ବେଶି ଶକ୍ତ । ଧନୁରେ ଗୋଟିଏ ଗୁଣ ଥିବା ସ୍ଥଳେ ସେଥିରେ ଦୁଇଟି ଗୁଣ ଓ ତା ମଝିରେ ବାଟୁଲି ରଖିବା ପାଇଁ ଚ୍ଚ୍ଚେଟ କାଲିଖଣ୍ଡିଏ ଥାଏ । ବାଟୁଲିଖଡ଼ା ବ୍ୟବହାର କରିବା ପାଇଁ ଯଥେଷ୍ଟ ଅଭ୍ୟାସ ଦରକାର । ଠିକ୍ ସମୟରେ ମୁଠା ବୁଲାଇ ନ ଦେଲେ ବାଟୁଲି ବାଙ୍କ ବାଁ ହାତ ବୁଢ଼ା ଆଙ୍ଗୁଠି ଗୁଚ୍ଛରେ ଲାଗିବା ପ୍ରାୟ ନିଶ୍ଚିତ କଥା । ବାଟୁଲିଖଡ଼ାରେ ଛୁଟିକିଣିଠାରୁ ପ୍ରାୟ ଦୁଇଗୁଣ ବେଗରେ ବାଟୁଲି ଯାଏ । ତେବେ ଛୁଟିକିଣି ପରି ସେଥିରେ ନିଶାଣ ଏତେ ପକ୍କା ହୁଏ ନାହିଁ ।

ନୈନିତାଲରେ ଠିକ୍ ଆମ ଘର * ସାମନା ସଡ଼କ ଆରପାଖେ ପରେଡ଼ଗ୍ରାଉଣ୍ଡ ଟ୍ରେଜେରି; ଟ୍ରେଜେରିର ଗୁର୍ଖା ଜଗୁଆଳମାନେ ସୈନ୍ୟବାହିନୀର ଲୋକ । ଗୁର୍ଖାମାନେ ବାଟୁଲିଖଡ଼ା ମାରିବାରେ ଓସ୍ତାଦ; ସେମାନଙ୍କ ସହିତ ନିଶାଣରେ ପ୍ରତିଯୋଗିତା କରିବା ପାଇଁ ଟ୍ରେଜରି ହତାରୁ ମୋତେ ବରାବର ଡାକରା ଆସେ । ସେଠାରେ ଅଳ୍ପ ଉଚ୍ଚ ଏକ କାଠଖୁଣ୍ଟିରେ ଟ୍ରେଜରିର ପ୍ରକାଣ୍ଡ ଘଣ୍ଟାଟି ଝୁଲୁଥାଏ । ଖୁଣ୍ଟି ଉପରେ ରଖାଯାଇଥିବା ଡ୍ରିଅ୍ସିଲ ଖୋଲଟିକୁ କୋଡ଼ିଏ ଗଜ ଦୂରରୁ ବାଟୁଲି ମାରି ଝଡ଼ାଇଦେବାକୁ ଚେଷ୍ଟା ଚାଲେ । ଜଗୁଆଳଦଳର ହାବିଲଦାର ହିଁ ମୋ ସହିତ ପ୍ରତିଯୋଗିତା କରନ୍ତି । ହାବିଲଦାର ଅଳ୍ପ ଉଚ୍ଚ ହୋଇଥିଲେ ହେଁ ଦେହରେ ତାଙ୍କର କଡ଼ିଡ଼ିଏ ଜୋର୍; ବାଟୁଲି ମାରିବାରେ ତାଙ୍କ ନିଶାଣ ମଧ୍ୟ ସେମିତି ପକ୍କା । କିନ୍ତୁ ସେ ମୋତେ ଯେ କେବେ ବଳି ପାରୁ ନ ଥିଲେ—ଏହା ମୋ ଅପେକ୍ଷା ଦେଖଣାହାରିମାନଙ୍କୁ ବେଶି ଆନନ୍ଦ ଦେଉଥିଲା ପରି ମନେହେଉଥିଲା ।

ଛୁଟିକିଣି ଅଭାବରେ ବାଟୁଲିଖଡ଼ା ବ୍ୟବହାର କରିବାକୁ ବାଧ୍ୟ ହୋଇଥିଲି । ମଢ଼େଇ ତିଆରି ପାଇଁ ଚଢ଼େଇ ମାରିବାରେ ତାହାକୁ ବ୍ୟବହାର କରିବା ଭଲ ଦକ୍ଷତା ହାସଲ କରିଥିଲେ ମଧ୍ୟ ଛୁଟିକିଣି ପରି ବାଟୁଲିଖଡ଼ାକୁ କେବେ ଆଦର ପାରି ନ ଥିଲି । ସେତିକିବେଳକୁ "ଫେନିମୋର୍ କୁପର୍"ଙ୍କ ରୋମାଞ୍ଚକର ଉପନ୍ୟାସଗୁଡ଼ିକ ପଢ଼ି ଭାବିଲି ଯେ କୁପରଙ୍କ ବର୍ଣ୍ଣିତ ଲୋହିତଭାରତୀୟମାନେ ଯଦି ଧନୁଶରରେ ଅନାୟାସରେ ଶିକାର ମାରିପାରୁଥିଲେ,

*ନୈନିତାଲର ଆୟାରପଟ୍ଟା ଅଞ୍ଚଳରେ ଓକ୍ ଗଛର ବେଷ୍ଟନୀ ଭିତରେ ଥିବା ଏହି ଘରର ନାମ 'ଗୁର୍ଣ୍ଣି ହାଉସ୍' । ଘରଟିକୁ କରବେଟ୍ ୧୯୪୭ ମସିହା ନଭେମ୍ବର ଏକୋଇଶ ତାରିଖରେ ତାଙ୍କର ବନ୍ଧୁ ଶ୍ରୀ ପି. କେ. ବର୍ମାଙ୍କୁ ବିକ୍ରୟ କରି କେନିଆ ଚାଲିଯାଇଥିଲେ—ଅନୁବାଦକ ।

Digitized by srujanika@gmail.com

ତେବେ ମୁଁ ମଧ୍ୟ ନ ପାରିବି କାହିଁକି ? ଧନୁଶର ତିଆରି କରିବାକୁ ମନ ବଳାଇଲି; କିନ୍ତୁ ଆମ ଅଞ୍ଚଳରେ ଧନୁଶରର ପ୍ରଚଳନ ନ ଥିବାରୁ ନମୁନାଟିଏ କେଉଁଠୁ ପାଇଲି ନାହିଁ । ବାରମ୍ବାର ବିଫଳ ହେବା ପରେ ଯାଇ ମନମୁତାବକ ଧନୁଟିଏ ତିଆରି କଲି । ଧନୁ ସହିତ ଠିକ୍ ଯୋଡ଼ିଏ ତୀର । ଆଗରେ ତାର ଲୁହାକଣ୍ଟା ବନ୍ଧା । ସାମାନ୍ୟ ସେତିକି ଅସ୍ତ୍ର ଧ୍ୟ କରଗତ କରିବା ପରେ ଲେଦରଷ୍ଟକିଙ୍ଗ ବୀରମାନଙ୍କ ପଦାଙ୍କ ଅନୁସରଣ କରିବା ପାଇଁ ପ୍ରସ୍ତୁତ ହୋଇ ବାହାରିପଡ଼ିଲି ।

ଆଜିକାଲି ପରି ସେତେବେଳେ ପତଳା ତଳି ଥିବା ଜୋତା ବାହାରି ନ ଥିଲା । ଚମଡ଼ା ଜୋତା ମାଡ଼ି ଜଙ୍ଗଲରେ ନିଃଶବ୍ଦରେ ଚାଲିବା କିମ୍ବା ଗଛ ଚଢ଼ିବା ସମ୍ଭବ ହୁଏ ନାହିଁ । ଧନୁଶରରେ ମୟୂର ବା ବଣକୁକୁଡ଼ାଟିଏ ମାରିବା ଆଶାରେ ଜଙ୍ଗଲରେ ପଶିଥିବା-ବେଳେ ବଡ଼ ଜନ୍ତୁଙ୍କ ହାବୁଡ଼ରେ ପଡ଼ିଯିବାର ଭୟ ମୋତେ ସଦାସର୍ବଦା ଘାରୁଥିଲା । ନିଃଶବ୍ଦରେ ଚାଲିବା ଛଡ଼ା ଆବଶ୍ୟକ ସ୍ଥଳେ ଗଛରେ ଚଢ଼ି ନିଜକୁ ରକ୍ଷା କରିବା ଉଦ୍ଦେଶ୍ୟରେ ମୁଁ ସେତେବେଳେ ନିଷ୍ଠମିତ ଜୋତା ମୋଜା ଖୋଲି ଖାଲିପାଦରେ ବଣରେ ପଶୁଥିଲି ।

ହିମାଳୟ ପାଦପର୍ବତରୁ ଚଢ଼ି ଆସୁଥିବା ଦୁଇଟି ନାଳ ଆମ କାଲାଦୁଙ୍ଗୀ ଘରର ହତାଠାରୁ ଅଳ୍ପ ଦୂରରେ ଆସି ମିଶିଛନ୍ତି । ଏଥିରୁ ଗୋଟିଏ ନାଳ ଠିକ୍ ଆମ ବଗିଚ୍ଚ ପାଖେଇ କଡ଼େ କଡ଼େ ଯାଇଛି । ବଡ଼ ବର୍ଷା ପରେ ସେ ନାଳଟିରେ ପାଣି ଆସିଲେ ଆମ ଘରର ଝିଅମାନେ ସେଥିରେ ଗାଧୁଅନ୍ତି । ଆଉ ନାଳଟି ପ୍ରାୟ ସବୁବେଳେ ଶୁଖିଲି ଥାଏ । ନାଳ ପାରହୋଇଥିବା ପଶୁଜନ୍ତୁଙ୍କ ଖୋଜଦାଗ ସେହି ଶୁଖିଲା ବାଲିରେ ସ୍ପଷ୍ଟଭାବେ ଫୁଟି ହୋଇ ରହିଯାଏ । ଦୁଇନାଳ ମଝିରେ ଥିବା ତିନି ମାଇଲ ଓସାର ଓ ଦୁଇମାଇଲ ଲମ୍ବ ଚକଡ଼ାଏ ଗହଳ ଜଙ୍ଗଲରେ ନାନାପ୍ରକାର ପଶୁଙ୍କ ଛଡ଼ା ମୁଁ ଖୋଜୁଥିବା ବହୁ ରକମ ପକ୍ଷୀ ମଧ୍ୟ ମିଳନ୍ତି । ଆମ ବାଡ଼ିଲେ ନାଳ ଆରପାଖରୁ ଏହି ଜଙ୍ଗଲଟିର ଆରମ୍ଭ । ଜଙ୍ଗଲରେ ପଶିବା ପାଇଁ ପାରହେବାକୁ ନାଳ ଉପରେ କାଠଗଡ଼ଟିଏ ପଡ଼ିଥାଏ । ସେଠାରୁ ଅଳ୍ପ ଛଡ଼ାରେ ଆମ ବଗିଚ୍ଚ ପାଖ ନାଳକୂଳରେ ସଙ୍କାଳିଆ ଗଛଟିଏ । ଦିନେ ସେହି ଗଛରେ ଚଢ଼ି ନାଳ ଆର କୂଳରୁ ପାଣି ପିଇବାକୁ ଗଡ଼ୁଥିବା ମହାବଳ ବାଘଙ୍କ ଗତିବିଧି ଓ କାର୍ଯ୍ୟକଳାପ ବିଷୟର ଲକ୍ଷ୍ୟ କରୁଥିଲି । ପରବର୍ତ୍ତୀ ଜୀବନରେ ଚଳଚ୍ଚିତ୍ର କ୍ୟାମେରାଟିଏ କରଗତ ହେବା ପରେ ପାଣି ପିଉଥିବା ମହାବଳ ବାଘଙ୍କର ଚଳଚ୍ଚିତ୍ର ଉଠାଇବା ପାଇଁ ସେହି ଗଛ ଉପରେ ମୁଁ ଦୀର୍ଘ ସମୟ କଟାଇଛି ।

ଦୁଇ ନାଳ ମଧ୍ୟସ୍ଥିତ ଜଙ୍ଗଲରେ ହିଁ ଜୀବନର ଶେଷ ଥର ପାଇଁ ମହାବଳ ବାଘ ମାରିଥିଲି (୧) । ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବସାନ ପରେ ସୈନ୍ୟବାହିନୀ (୨)ରୁ ଅବ୍ୟାହତ

(୧) ଜୀବନର ଶେଷ ଭାଗରେ କର୍‌ବେଟ୍ ଶିକାର ଛାଡ଼ି ଜନ୍ତୁଙ୍କର ଚଳଚ୍ଚିତ୍ର ଉଠାଇବାରେ ହିଁ ମନୋନିବେଶ କରିଥିଲେ ।

(୨) କର୍‌ବେଟ୍ ପ୍ରଥମ ଓ ଦ୍ୱିତୀୟ ମହାଯୁଦ୍ଧରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ଏବଂ ସେନାବାହିନୀରେ କର୍ଣ୍ଣେଲ୍ ପଦ ଲାଭ କରିଥିଲେ—ଅନୁବାଦକ ।

Digitized by srujanika@gmail.com

ପାଇ ଘରକୁ ଫେରି ଦେଖିଲି ଯେ ବାଘ ଆମ ବାଡ଼ିତଳେ ଜଙ୍ଗଲରେ ଆସ୍ଥାନ ଜମାଇ ଗାଁରୁ ପରେ ପରେ ଗୋଟିଏ ଘୋଡ଼ା, ବାଛୁରୀଟିଏ ଓ ବଳଦ ହଲେ ମାରିଲାଣି । ଜଙ୍ଗଲରୁ ତାକୁ ଘଉଡ଼ାଇ ତଡ଼ିଦେବାକୁ ବହୁତ ଚେଷ୍ଟାକଲି । ବାଘ କେଉଁଥିରେ ହେଲେ ଚଳ୍ଚ-ନାହିଁ ଦେଖି ଶେଷରେ ତାକୁ ମାରିଦେବାକୁ ବାଧହେଲି । କମାଗତଭାବେ ମ୍ୟାଲେରିଆ ଭୋଗି ମୁଁ ସେତେବେଳେ ଖୁବ ଦୁର୍ବଳ ହୋଇପଡ଼ିଥିଲି; ହାତ ଦୁର୍ବଳତା ଏତେ ଥରୁଥାଏ ଯେ ରାଇଫଲ ସଳଖରେ ଧରିପାରିବିନାହିଁ ବୋଲି ମ୍ୟାଗି ଆଶଙ୍କା କଲା । (୧) । ତେଣୁ କଣାରେ ଆଡ଼ବାଙ୍କ ହେବାପାଇଁ ବାଟ ନ ରଖି ବାଘକୁ ପାଖକୁ ଡାକି ତା ପ୍ରତି ଦଣ୍ଡବିଧାନ କରିବାକୁ ସ୍ଥିରକଲି । ଡାକରା ପାଇ ବାଘ ଆସି ହାଜର ହେଲା (୨) ଏବଂ ମୋଅ.ଡ଼େ ଅନାଇଥିବା ଅବସ୍ଥାରେ ଆଖିକୁ ଗୁଳିକରି ତାକୁ ମାରିଦଅ.ଗଲା । ଆତ୍ମପକ୍ଷ ସମର୍ଥନ କମ୍ବା ଏ କ୍ଷେତ୍ରରେ ଆତ୍ମରକ୍ଷା ପାଇଁ ସୁଯୋଗ ନ ଦେଇ ଅପରାଧୀ ପ୍ରତି ପ୍ରାଣଦଣ୍ଡ ବିଧାନ କରିବାକୁ ନ୍ୟାୟ ବିଗ୍ଭର ନା ହତ୍ୟାକାଣ୍ଡ କୁହାଯିବ ତାହା ବିଗୃର୍ଯ୍ୟ । କିନ୍ତୁ ତାହା କରିବା ଛଡ଼ା ସେତେବେଳେ ମୋ ପାଇଁ ଅନ୍ୟ ପନ୍ଥା ନଥିଲା (୩) । ଗାଁଠାରୁ ଦୁଇମାଇଲ ଦୂର ବଣ ଭିତରେ ଚକଡ଼ାଏ ଭୂତିଆସ୍ଥ ଝୋପରେ ବାଘ ବସା କରିଥିଲା । ପରିସ୍ଥିତି ଅନ୍ୟପ୍ରକାର ହୋଇଥିଲେ ତାକୁ ଘଉଡ଼ାଇ ଦେବାକୁ ଅ.ଧୁର ଚେଷ୍ଟା କରିଥାଅନ୍ତି ଏବଂ ସେଠାରେ ଥିବାଯାଏ ସେ ଯାହା କ୍ଷୟକ୍ଷତି ଘଟାଇଥାଅ.ନ୍ତା, ନିଜେ କ୍ଷତିପୂରଣ ଦେଇ ତାହା ଭରଣା କରିଥାଆନ୍ତି (୪) । କିନ୍ତୁ ଯୁଦ୍ଧ ପରେ ପରେ ଦେଶସାରା ଗୃହପାଳିତ ପଶୁଙ୍କର ଘୋର ଅଭାବ ଦେଖାଦେଇ ଥାଏ; ବେଶି ଦାମ ଦେଲେ ମଧ୍ୟ ଘୋଡ଼ା ବା ଗୋରୁଗାଈ କିଣିବାକୁ ମିଳୁ ନ ଥାଆନ୍ତି । ଗାଈ ବଳଦ ମରିଗଲେ ଗରିବ ଚାଷୀ ଉଚ୍ଛନ୍ନ ହୋଇଯିବେ । ଏଣେ ଯେତେ ଘଉଡ଼ାଇଲେ ମଧ୍ୟ ବାଘ ସେଠାରୁ ହଟିବାକୁ ନାରାଜ । ଏପରି ସ୍ଥଳେ ତାକୁ ମାରିଦେବା ଯେତେ ଅପ୍ରୀତିକର ହେଲେ ମଧ୍ୟ ଅନାବଶ୍ୟକ ନ ଥିଲା ।

---

(୧) ଲେଖକଙ୍କ ଭଉଣୀ—'ମୋର ଭାରତ' ବହିଟି ଦ୍ରଷ୍ଟବ୍ୟ ।

(୨) ମୂହାବଲ ଓ ଚିତାବାଘଙ୍କ ସ୍ୱର ଅନୁକରଣ କରି କରବେଟ୍ ସେମାନଙ୍କୁ ପାଖକୁ ଡାକଆଣି ପାରୁଥିଲେ । ଏହି ଉପାୟ ଅବଲମ୍ବନ କରିଥିବାର ବହୁ ଦୃଷ୍ଟାନ୍ତ ପ୍ରାୟ ତାଙ୍କର ପ୍ରତ୍ୟେକ ବହିରେ ଉଲ୍ଲେଖ କରାଯାଇଛି ।

(୩) ଆତ୍ମରକ୍ଷାର ସୁଯୋଗ ନ ଦେଇ ଜନ୍ତୁଟିଏ ମାରିଦେବା କର୍‌ବେଟ୍‌ଙ୍କ ନୀତିବିରୁଦ୍ଧ ଥିଲା । ଅବସ୍ଥାଚକ୍ରରେ ପଡ଼ି ସେପରି କରିବାକୁ କେବେ ବାଧ୍ୟହେଲେ, ସେଥିପାଇଁ ନିଜ ତରଫରୁ କୈଫିୟତ୍ ଦେବା ଆବଶ୍ୟକ ବୋଲି ସେ ମନେକରୁଥିଲେ । 'କୁମାୟୁଁର ନରଖାଦକ' ଓ 'ମନ୍ଦିରର ବାଘ' ବହି ଦୁଇଟି ଦ୍ରଷ୍ଟବ୍ୟ ।

(୪) ଏଭଳି ବଦାନ୍ୟତା କରବେଟ୍‌ଙ୍କର ଏକ ବିଶେଷତ୍ୱ ଥିଲା । ଦାନଶୀଳତାର ଏଭଳି ବହୁ ଦୃଷ୍ଟାନ୍ତ ତାଙ୍କ ଜୀବନରେ ଦେଖାଯାଏ—ଅନୁବାଦକ ।

Digitized by srujanika@gmail.com

ବିଷୟବସ୍ତୁକୁ ଫେରିବା । ପିଲାଦିନେ ମାଗର୍ ସହିତ ନାଳକୂଳ ଜଙ୍ଗଲରେ ଅନ୍ଧିସନ୍ଧି ସବୁ ବୁଲି ଦେଖିଥିଲି ଓ ଯେଉଁଠାରୁ ଦୂରେଇ ରହିବା ଉଚିତ, ସେହିସବୁ ଜାଗାକୁ ଠିକ୍ ଭାବେ ଚିହ୍ନି ରଖିଥିଲି । ଚଢ଼େଇ ମାରିବାକୁ ବାହାରି ଶେଷରେ ବାଘ ହାବୁଡ଼ରେ କାଳେ ପଡ଼ିଯିବି—ପିଲାଦିନ ସାରା ଏଇ ଭୟ ମୋତେ ଏପରି ଭାବେ ଘାରିଥିଲା ଯେ ଦୁଇ ନାଳ ମଝି ଜଙ୍ଗଲରେ ବାଘ ନାହାନ୍ତି ବୋଲି ନିଶ୍ଚିତଭାବେ ଜାଣିବା ପରେ ଯାଇ ନାଳ ପାରହେବାକୁ ମୁଁ କାଠଗଡ଼ରେ ପାଦ ଦେଉଥିଲି । ଜଙ୍ଗଲରେ ବାଘ ଥିବା ନଥିବା ବାଁ ପାଖ ଶୁଖିଲା ନାଳର ବାଲି ଶେଯଟିକୁ ପରୀକ୍ଷାକରି ଜଣାପଡ଼େ । ଦୁଇ ନାଳ ଆରପାଖ ବଡ଼ ଜଙ୍ଗଲରେ ହିଁ ମହାବଳ ବାଘ ରହନ୍ତି ଓ ସନ୍ଧ୍ୟା ପୂର୍ବରୁ ଶୁଖିଲା ନାଳଟିକୁ ପ୍ରଥମେ ପାରହୋଇ ଦୁଇନାଳ ମଝି ଜଙ୍ଗଲବାଟେ ଆମ ବାଡ଼ିତଳ ନାଳକୁ ପାଣି ପିଇବାକୁ ଗଡ଼ନ୍ତି । ଜଙ୍ଗଲକୁ ବାହୁଡ଼ିବା-ବେଳେ ଶୁଖିଲା ନାଳଟିକୁ ତାଙ୍କୁ ପୁଣି ପାରହେବାକୁ ପଡ଼େ । ବାଲିରେ ପଡ଼ିଥିବା ପଞ୍ଝାଛାପରୁ ବାଘ ଆସିଥିବା ଓ ଫେରିଥିବା କଥା ଜଣାପଡ଼େ । କେବେ କେମିତି ନାଳ ମଝି ଜଙ୍ଗଲରେ ଶିକାର ମାରି ବାଘ ସେହିଠାରେ ଅଟକି ରହିଗଲେ, ତାର ଫେରିବା ବାଟର ପଞ୍ଝାଛାପ ବାଲିରେ ଦେଖିବାକୁ ମିଳେନାହିଁ । ସେସବୁ ସମୟରେ ସେ ଜଙ୍ଗଲରେ ନପଶି ଚଢ଼େଇ ଖୋଜିବାକୁ ମୁଁ ଅନ୍ୟଆଡ଼େ ଯାଏ ।

ବନ୍ୟଜନ୍ତୁଙ୍କ ଗତିବିଧି ଲକ୍ଷ୍ୟକରିବା ପାଇଁ ଶୁଖିଲା ନାଳର ବାଲିଶେଯକୁ ବରାବର ପରୀକ୍ଷା କରୁଥିଲି । ମୋ ପିଲାଦିନ ସାରା ସେହି ନାଳଟି ଥିଲା ଜଙ୍ଗଲ ତଥ୍ୟ ଶିକ୍ଷାର ଏକ



ଅସରନ୍ତି ଉତ୍ସ । ନାଳ ପାର ହୋଇଥିବା ଜଙ୍ଗଲର ପଶୁଜନ୍ତୁ ତଥା ସରୀସୃପଙ୍କର ଗତିଚିହ୍ନ ବାଲିରେ ସ୍ପଷ୍ଟଭାବେ ଛାପିହୋଇ ରହିଥାଏ । ଜୀବନର ବିଭିନ୍ନ ପର୍ଯ୍ୟାୟରେ ଛୁଟିକଣି, ଧନୁଶର, ମାନ୍ଧାତା ଅମଳର ସେଇ ଦାରୁଖିନ୍ଦା ବନ୍ଧୁକଟି ଓ ଶେଷରେ ଅତ୍ୟାଧୁନିକ ରାଇଫଲ ହାତରେ ଧରି ଗଭୀର ମନୋଯୋଗ ସହ ଦିନ ଦିନ, ବର୍ଷ ବର୍ଷ ଧରି ଏହି ସବୁ ଗତିଚିହ୍ନ ପରୀକ୍ଷାଦ୍ୱାରା ଅଳ୍ପ ଅଳ୍ପ କରି ଯେତିକି ତଥ୍ୟ ହାସଲ କରିଥିଲି—ଜଙ୍ଗଲ ସମ୍ବନ୍ଧରେ ଜ୍ଞାନ ବୃଦ୍ଧି କରିବା ଛଡ଼ା ସାମ୍ପ୍ରତିକ ଓ ପରବର୍ତ୍ତୀ ଜୀବନରେ ତାହା ବହୁଦିଗରୁ ମୋର ଅଶେଷ ଉପକାର କରିଛି ।

ଶିକ୍ଷା ଗ୍ରହଣର ଏହି କାର୍ଯ୍ୟକ୍ରମ ସୂର୍ଯ୍ୟୋଦୟଠାରୁ ଆରମ୍ଭ ହୁଏ । ବଡ଼ିସକାଳୁ ପ୍ରସ୍ତୁତ ହୋଇ ଖାଲିପାଦରେ ବାଟ ଚାଲି ମୁଁ ନିଃଶବ୍ଦରେ ଯାଇ ନାଳରେ ପଶେ ଓ ବାଲି-ଶେଯକୁ ପରୀକ୍ଷାକରି ପୂର୍ବରାତିରେ ପାର ହୋଇଥିବା ଜନ୍ତୁଙ୍କ ସମ୍ବନ୍ଧରେ ସିଦ୍ଧାନ୍ତ ଗ୍ରହଣ

Digitized by srujanika@gmail.com

କରେ । ନିରବଚ୍ଛିନ୍ନ ସାଧନାଦ୍ୱାରା ପଶୁଜନ୍ତୁଙ୍କୁ ସେମାନଙ୍କ ଗତିଚନ୍ଦ୍ରାରୁ ହିଁ ନିର୍ଭୁଲ ଭାବେ ଚିହ୍ନିବା ପଦ୍ଧତି ଜଙ୍ଗଲ ତଥ୍ୟ ଅଧ୍ୟୟନରେ ମୋର ପ୍ରଥମ ପାଠ ଶେଷହେଲା । ପଶୁପକ୍ଷୀଙ୍କ କାର୍ଯ୍ୟକଳାପ, ସେମାନଙ୍କ ପ୍ରକୃତି ଓ ପ୍ରବୃତ୍ତି, ଭାବ ଓ ଭାଷା, ପ୍ରକୃତିକୁ ସୁନ୍ଦର, ସଜୀବ ଓ ସମୃଦ୍ଧ କରିବାରେ ସେମାନଙ୍କ ଅବଦାନ ଓ ଭୂମିକା—ପ୍ରାଥମିକ ପାଠ୍ୟକ୍ରମରେ ସେ ସବୁ ଶିକ୍ଷା ଗ୍ରହଣ କରିବାକୁ ପ୍ରତ୍ୟକ୍ଷରେ ପ୍ରୟାସ କରିନଥିଲେ ସୁଦ୍ଧା ନିଜର ଅଲକ୍ଷ୍ୟରେ ସେଥିରୁ ମଧ୍ୟ କିଛି ଜ୍ଞାନ ଅର୍ଜନ କରିପାରିଥିଲି ।

ବାଲ୍ୟ-ଜୀବନର ସେହିକି ଅନୁଭୂତିକୁ ଭିତ୍ତିକରି ସେତେବେଳେ ପ୍ରାଣିଜଗତକୁ ବିଭିନ୍ନ ଶ୍ରେଣୀରେ ଯେପରି ବିଭକ୍ତ କରିଥିଲି, ତାହାର ଏକ ସମୀକ୍ଷା ଏଠାରେ ଦେଉଛି ।

ପକ୍ଷୀଙ୍କଠାରୁ ଆରମ୍ଭ କରିଯାଉ । ବଣ-ଜଙ୍ଗଲର ବିଭିନ୍ନ ପକ୍ଷୀଙ୍କୁ ସେତେବେଳେ ମୁଁ ଛଅଟି ଶ୍ରେଣୀରେ ବିଭକ୍ତ କରିଥିଲି ।

(୧) ଯେଉଁମାନେ ପ୍ରକୃତିର ଶୋଭା ବର୍ଦ୍ଧନ କରନ୍ତି :

—ସୁନ୍ଦରୀ, ହଳଦିବସନ୍ତ ଓ ଫୁଲ୍‌ଚି ଇତ୍ୟାଦି ।

(୨) ଯେଉଁମାନଙ୍କର ଲଳିତ ସଙ୍ଗୀତ ପ୍ରାକୃତିକ ପରିବେଶକୁ ସ୍ୱରସିକ୍ତ ଓ ମଧୁରତର କରି ତୋଳେ :

—କସ୍ତୁରି, ଶାମା ଓ ଶୁଇ ଇତ୍ୟାଦି ।

(୩) ବୃକ୍ଷଲତାର ପୁନରୁତ୍ପାଦନରେ ସାହାଯ୍ୟ କରି ପ୍ରକୃତିକୁ ଯେଉଁମାନେ ସଜୀବ ଓ ସମୃଦ୍ଧ କରନ୍ତି :

—ସିନ୍ଦୁରମୁଣ୍ଡି, ଧନେଶ ଚଢ଼େଇ ଓ ବୁଲ୍‌ବୁଲ୍ ଆଦି ।

(୪) ଯେଉଁମାନେ ଜଙ୍ଗଲବାସୀ ଜୀବଜନ୍ତୁଙ୍କୁ ବିପଦର ସଙ୍କେତ ଦିଅନ୍ତି :

—କଜଳପାତି, ନାଲି ବଣକୁକୁଡ଼ା ଓ କୁଣ୍ଡାଖିଆ ।

(୫) ଜୀବଜଗତରେ ଭାରସାମ୍ୟ ରକ୍ଷା କରିବାରେ ଯେଉଁମାନେ ଅଂଶ ଗ୍ରହଣ କରନ୍ତି :

—ଈଗଲ, ବାଜପକ୍ଷୀ ଓ ପେଚା ।

(୬) ଯେଉଁମାନେ ସମାର୍ଜକ ଭାବେ କାର୍ଯ୍ୟକରି ପ୍ରାକୃତିକ ପରିବେଶକୁ ନିର୍ମଳ ଓ ପରିଷ୍କାର ରଖନ୍ତି :

—ଶାଗୁଣା, ଚିଲ ଓ କୁଆ ପ୍ରଭୃତି ।

ସେହିପରି ପଶୁମାନଙ୍କୁ ମୁଁ ସେତେବେଳେ ସମୁଦାୟ ପାଞ୍ଚଟି ଶ୍ରେଣୀରେ ଅନ୍ତର୍ଭୁକ୍ତ କରିଥିଲି ।

(୧) ଯେଉଁମାନେ ପ୍ରକୃତିର ଶୋଭାବର୍ଦ୍ଧନ କରନ୍ତି :

—ହରିଣ, କୃଷ୍ଣସାର ଓ ମାଙ୍କଡ଼ ଇତ୍ୟାଦି ।

Digitized by srujanika@gmail.com

(୨) ଭୂଖନନଦ୍ୱାରା ଯେଉଁମାନେ ଅଙ୍କୁରୋଦ୍‌ଗମରେ ସାହାଯ୍ୟ କରନ୍ତି :
—ଶଲ୍ଲୁ, ବାର୍‌ହା ଓ ଝିଙ୍କ ପ୍ରଭୃତି ।
୩) ଯେଉଁମାନେ ବିପଦର ସଙ୍କେତ ଦିଅନ୍ତି :
—ହରିଣ, ମାଙ୍କଡ଼ ଓ ଗୁଣ୍ଡିଚମୂଷା ।
(୪) ଯେଉଁମାନେ ପ୍ରକୃତିର ଭାରସାମ୍ୟ ରକ୍ଷାକରନ୍ତି :
—ମହାବଳ ଓ ଚିତାବାଘ, ବଣଆକୁକୁର ଇତ୍ୟାଦି ।
(୫) ଯେଉଁମାନେ ସମାର୍ଜକ ଭାବେ କାର୍ଯ୍ୟକରନ୍ତି :
—ଗଧିଆବାଘ, ବିଲୁଆ ଓ ବଣଘୁଷୁରି ଇତ୍ୟାଦି ।

ସାପଙ୍କୁ ମଧ୍ୟ ଦୁଇଟି ଶ୍ରେଣୀରେ ବିଭକ୍ତ କରିଥିଲି ।
(୧) ବିଷାକ୍ତ—ଗୋଖର, ଚିତି ଓ ବୋଡ଼ା ପ୍ରଭୃତି ।
(୨) ଅବିଷାକ୍ତ—ଅଜଗର, ଢମଣା ଓ ଧଣ୍ଡ ଇତ୍ୟାଦି ।

ଜୀବଜଗତର ପ୍ରଧାନ ପଶୁପକ୍ଷୀ ଓ ସରୀସୃପଙ୍କୁ ସେମାନଙ୍କର କାର୍ଯ୍ୟାନୁସାରେ ବିଭିନ୍ନ ଶ୍ରେଣୀଭୁକ୍ତ କରିଥିଲି । କ୍ରମେ ଅନ୍ୟାନ୍ୟ ଜୀବଜନ୍ତୁଙ୍କ ସହିତ ପରିଚିତ ହେବା ସଙ୍ଗେ ସଙ୍ଗେ ସେମାନଙ୍କୁ ମଧ୍ୟ ସେଥିରେ ଅନ୍ତର୍ଭୁକ୍ତ କରିବାକୁ ଲାଗିଲି ।

ଏହା ପରେ ଆରମ୍ଭହେଲା ଜଙ୍ଗଲତଥ୍ୟ ଶିକ୍ଷାର ଦ୍ୱିତୀୟ ପର୍ଯ୍ୟାୟ । ଏହି କ୍ରମରେ ପଶୁପକ୍ଷୀଙ୍କ ସ୍ୱର ଅନୁଧ୍ୟାନ ଓ ଅନୁକରଣ କରି ସେମାନଙ୍କ ଭାଷା ଶିଖିବାରେ ମନଦେଲି । ଶବ୍ଦ ସଂଯୋଜନାର ପରିସର ଭିତରେ ମନୁଷ୍ୟର କଣ୍ଠସ୍ୱର ଯେତେଦୂର ପରିବର୍ତ୍ତନ କରାଯାଇ ପାରେ, ତାହାକୁ ପୂର୍ଣ୍ଣମାତ୍ରାରେ ଏଥିରେ ପ୍ରୟୋଗ କରିବାକୁ ପଡ଼ିଲା । ଜଙ୍ଗଲର ସବୁ ଜନ୍ତୁଙ୍କ ପାଇଁ କୌଣସି ଗୋଟିଏ ଭାଷା ନାହିଁ । ଭିନ୍ନ ଭିନ୍ନ ପଶୁପକ୍ଷୀଙ୍କ ଶବ୍ଦ ଓ ସ୍ୱରରେ ପାର୍ଥକ୍ୟ ଥିଲେ ମଧ୍ୟ ପ୍ରତ୍ୟେକର ଭାଷାକୁ ଅନ୍ୟମାନେ ସହଜରେ ବୁଝିପାରନ୍ତି । ଭୃଙ୍ଗରାଜ, ଘଣ୍ଟରଘୁମା ଓ ହରବା ଆଦି ପକ୍ଷୀ ଅନ୍ୟମାନଙ୍କ ସ୍ୱରକୁ ଅନୁକରଣ ମଧ୍ୟ କରନ୍ତି । ଭୃଙ୍ଗରାଜର * ସ୍ୱରାନୁକୃତି ପକ୍ଷିପାଳକମାନଙ୍କ ପାଇଁ ଅଶେଷ ଆନନ୍ଦ ଓ ଆମୋଦର କାରଣ ହୋଇଥାଏ । ଭୃଙ୍ଗରାଜ ଅଧିକାଂଶ ପକ୍ଷୀଙ୍କ ସ୍ୱରକୁ ଠିକ୍ ନକଲ କରିବା ଛଡ଼ା ପଶୁଙ୍କ ଭିତରୁ ହରିଣର ସ୍ୱରକୁ ମଧ୍ୟ ଅବିକଳ ଅନୁକରଣ କରେ । ଭୃଙ୍ଗରାଜ କେବଳ ଅନୁକରଣପ୍ରିୟ ନୁହେଁ—ଅନ୍ୟ ପକ୍ଷୀଙ୍କ ତୁଳନାରେ ସେ ଅସାଧାରଣ ସାହସୀ ଓ ଅତି କୌତୁକପ୍ରିୟ । ନିଜର ସାହସ, ରହସ୍ୟପ୍ରିୟତା, ଅନୁକରଣ ଶକ୍ତିକୁ କିନ୍ତୁ ଭୃଙ୍ଗରାଜ ନିଜର ସ୍ୱାର୍ଥସିଦ୍ଧି ପାଇଁ ଯେପରି ଉପଯୋଗ କରେ—ତାହା ଦେଖିବାକୁ ଯେତିକି ଆଶ୍ଚର୍ଯ୍ୟକର, ସେତିକି ଆମୋଦଦାୟକ ।

ବଣକୁକୁଡ଼ା, କୁଣ୍ଡାଖିଆ ଓ କସ୍ତୁରା ଆଦି ଭୂଇଁରେ ଚରୁଥିବା ପକ୍ଷିଗୁଡ଼ିକ ହିଁ ଭୃଙ୍ଗରାଜର କୌତୁକର ଶରବ୍ୟ ହୁଅନ୍ତି । ଏସବୁ ପକ୍ଷୀ ଦଳ ଦଳ ହୋଇ ଚରିବୁଲୁଥିବା-

* ଭୃଙ୍ଗରାଜ—Racket-tailed drongo—କଜଳପାତି ଜାତୀୟ ପକ୍ଷୀବିଶେଷ—ଅନୁବାଦକ ।

Digitized by srujanika@gmail.com

ବେଳେ ଭୃଙ୍ଗରାଜ ସେମାନଙ୍କ ଠାବକରେ ଓ ନିକଟସ୍ଥ ଗୋଟିଏ ଗଛଡ଼ାଳରେ ବସି ନିଜର ସ୍ୱାଭାବିକ ସ୍ୱରରେ ଗାଇବା ଛଡ଼ା ଅନ୍ୟ ପକ୍ଷୀଙ୍କ ସ୍ୱରକୁ ମଧ୍ୟ ଅନୁକରଣ କରି ଗାଇ ଗାଇ ଜଙ୍ଗଲ ମୁଖରିତ କରିଦିଏ । ପ୍ରାଣଭରି ଗୀତ ଗାଇଲାବେଳେ ମଧ୍ୟ ସତର୍କତା ଢିଲେ ହେଲେ କୋହଳ କରେନାହିଁ; ଗୃଧ୍ରଆଡ଼କୁ ତୀକ୍ଷ୍ଣ ଦୃଷ୍ଟି ରଖି ବାଜ, ଛଞ୍ଚାଣ, ବଣବିରାଡ଼ି, ସାପ ଆଉ ଛୁଟିକଣି ଧରିଥିବା ମୋ ପରି ଦୁଷ୍ଟ ପିଲାଙ୍କ ଆକ୍ରମଣ ପ୍ରତି ସେ ସଦାସର୍ବଦା ଜାଗ୍ରତ ଥାଏ । ବିପଦର ସାମାନ୍ୟ ସୂଚନା ପାଇଲେ ଉଚ୍ଚସ୍ୱରରେ ସଙ୍କେତ ଦେଇ ଭୂମିସ୍ଥ ପକ୍ଷୀମାନଙ୍କୁ ସେ ସତର୍କ କରାଇଦିଏ; ଆସନ୍ନ ବିପଦ ସମ୍ବନ୍ଧରେ ଭୃଙ୍ଗରାଜର ସେପରି ସଙ୍କେତକୁ କୌଣସି ପକ୍ଷୀ ଉପେକ୍ଷା କରନ୍ତିନାହିଁ । ସେତିକି ସାହାଯ୍ୟ ବିନିମୟରେ ଭୃଙ୍ଗରାଜ ନିଜର ଖୋରାକତକ ପାଉଣା ସ୍ୱରୂପ ଅନ୍ୟ ପକ୍ଷୀଙ୍କଠାରୁ ଆଦାୟ କରେ ।

ଭୂଇଁରେ ଚରୁଥିବା ଚଢ଼େଇଗୁଡ଼ିକ ଶୁଖିଲା ଘାସପତ୍ର ଖେଳାଇ ପୋକଜୋକ ଖୋଜୁଥିବାବେଳେ ଭୃଙ୍ଗରାଜ ଗଛଡ଼ାଳରେ ବସି ସେମାନଙ୍କ ଉପରେ ତୀକ୍ଷ୍ଣ ନଜର ରଖିଥାଏ । ପତ୍ରଗହଳରୁ କେହି ରସାଳିଆ ପୋକ ବା କଅଁଳ କଙ୍କଡ଼ାବିଛାଟିଏ ପାଇଗଲେ ଭୃଙ୍ଗରାଜ ତୀରବେଗରେ ତା ଉପରକୁ ଝାମ୍ପମାରେ । ଝାମ୍ପ ମାରିବାବେଳେ ସେ ଆକ୍ରମଣ-ମୁଖୀ ଛଞ୍ଚାଣପରି ଉଚ୍ଚସ୍ୱରରେ ଚିତ୍‌କରେଇ ଉଠେ କିମ୍ବା ଛଞ୍ଚାଣର ଶିକାର ହୋଇଥିବା କୌଣସି ପକ୍ଷୀର କଣ୍ଠସ୍ୱରକୁ ଅବିକଳ ଅନୁକରଣ କରି କରୁଣ ଆର୍ତ୍ତନାଦ କରେ । ଛଞ୍ଚାଣ-ଭୟରେ ଭୂଇଁରେ ଥିବା ପକ୍ଷୀଗୁଡ଼ିକ ଛତ୍ରଭଙ୍ଗ ହୁଅନ୍ତି । ଭୃଙ୍ଗରାଜ ସେହି ଅବସରରେ ସେମାନଙ୍କ କଷ୍ଟଲବ୍ଧ ଆହାର ଛଡ଼ାଇ ଆଣି ଗଛଡ଼ାଳରେ ବସି ଖାଏ । ଖିଆ ସରିବାପରେ ସେ ପୁଣି ସେମିତି ଗୀତ ଆରମ୍ଭ କରିଦିଏ—ମନେହୁଏ ସତେ ଯେପରି କୌଣସି ଅପକର୍ମ ବା କାହାର ଅନିଷ୍ଟ କରିବା ତା ପରି ଶାନ୍ତଶିଷ୍ଟ ଓ ସଙ୍ଗୀତପ୍ରିୟ ପକ୍ଷୀ ପକ୍ଷରେ ଆଦୌ ସମ୍ଭବ ନୁହେଁ ।

ଭୃଙ୍ଗରାଜ ବିଶେଷକରି ହରିଣପଲକୁ ଅନୁସରଣ କରେ ଓ ହରିଣ ଚରିବାବେଳେ ଘାସଲଟାରୁ ହୁରୁଡ଼ି ଆସୁଥିବା ଝିଣ୍ଟିକା ଆଦି ପୋକଜୋକ ଧରି ଖାଏ । ଚିତାବାଘ ଦେଖିଲେ ହରିଣ ଯେପରି ଆତଙ୍କଧ୍ୱନି କରନ୍ତି—ଦୀର୍ଘକାଳର ପରିଚୟ ଫଳରେ ଭୃଙ୍ଗରାଜ ସେ ଶବ୍ଦକୁ ଅବିକଳ ଅନୁକରଣ କରିପାରେ । ଥରେ ଚିତାବାଘ ମାରିଥିବା ଗୋଟିଏ ବର୍ଷକର ହରିଣଛୁଆକୁ ଠାବକରି ଚଳଚ୍ଚିତ୍ର ଉଠାଇବା ଉଦ୍ଦେଶ୍ୟରେ ସେଠାକୁ ଗଲି । ନିକଟରେ ବଡ଼ ଗଛ ନ ଥିଲା । ତେଣୁ ମଲା ହରିଣଛୁଆଟିକୁ ଲଇରେ ଗୋଟିଏ ବୁଦାରେ ଖଟାଇଦେଇ ଅଳ୍ପ ଦୂରରେ ଆଉ ଗୋଟିଏ ବୁଦାକୁ ପିଠିକରି ବସିଲି । ଚଳଚ୍ଚିତ୍ର କ୍ୟାମେରାଟିକୁ ଆଣ୍ଠୁ ଉପରେ ସଜାଡ଼ି ଧରିଥାଏ । ଏତିକିବେଳେ ପ୍ରାୟ ପଚିଶଟି କସ୍ତୁରୀ ଚଢ଼େଇଙ୍କ ପଲ ସହିତ ଭୃଙ୍ଗରାଜଟିଏ କାହୁଁ ଉଡ଼ିଆସି ସେଠାରେ ପହଞ୍ଚିଗଲା । ମଲା ହରିଣଛୁଆଟିକୁ ଦେଖି ଭୃଙ୍ଗରାଜ ଅନୁସନ୍ଧାନ କରିବାକୁ ତାଆଡ଼େ ଆଗେଇଥିଲା । ହଠାତ୍ ଅଳ୍ପ ଦୂରରେ ମୋତେ ଭୂଇଁରେ ବସିଥିବା ଦେଖି ନ ବୁଝିଲାପରି ମୋ ଆଡ଼େ ଅନାଇ କିଛି

Digitized by srujanika@gmail.com

ସମସ୍ତ ଅଟକି ରହିଗଲା । ମୋଠାରୁ ବିପଦର ଆଶଙ୍କା ନାହିଁ ପ୍ରତ୍ୟୟ ହେବାପରେ ସେ ଉଡ଼ିଯାଇ କସ୍ତୁରୀ ଚଢ଼େଇଙ୍କ ସହିତ ପୁଣି ଯୋଗଦେଲା । ଚଢ଼େଇଗୁଡ଼ିକ ମୋ ବାଁପାଖରେ ଜାଗାଏ ଉଚ୍ଚ ସ୍ୱରରେ କେଁକଟର ଲଗାଇଥାନ୍ତି । ଚିତାବାଘ ମୋ ଡାହାଣ ପାଖରୁ ଆସିବ ବୋଲି ଅନୁମାନ କରିଥିଲି । ଭୃଙ୍ଗରାଜଟି କିନ୍ତୁ ପ୍ରଥମେ ଚିତାବାଘକୁ ପାଖରେ କେଉଁଠି ଦେଖିଦେଲା ଓ ଠିକ୍ ହରିଣଙ୍କୁ ଅନୁକରଣ କରି ଉଚ୍ଚସ୍ୱରରେ ଆତଙ୍କଧ୍ୱନି କରିଉଠିଲା । କସ୍ତୁରୀ ଚଢ଼େଇପଲକ ତରକି କରି ସ୍ଥିରଦେଇ ଗଛ ଡାଳକୁ ଉଡ଼ିଗଲେ ଓ ସେଇଠାରୁ କ୍ରମାଗତ ଭାବେ ଆତଙ୍କ ଧ୍ୱନି କରିବାକୁ ଲାଗିଲେ ।

ଚିତାବାଘକୁ ମୁଁ ନିଜେ ଦେଖିପାରୁ ନ ଥିଲେ ମଧ୍ୟ ଭୃଙ୍ଗରାଜର କାର୍ଯ୍ୟକଳାପ ଉପରେ ନଜର ରଖି ତା ଗତିବିଧି ଅନୁମାନ କରି ପାରୁଥାଏ । ଭୃଙ୍ଗରାଜର ଅନୁପ୍ରବେଶ ଓ ଗଣ୍ଡଗୋଳ ଯୋଗୁ ବିରକ୍ତ ହୋଇ ଚିତାବାଘ ତା ନଜର ଏଡ଼ାଇବା ଚେଷ୍ଟାରେ ପଛପଟୁ ଛପି ଛପି ଆସି ହଠାତ୍ ମୋର ଅତି ନିକଟରେ ହାଜର ହୋଇଗଲା । ମୋ ପାଖର ବୁଦାଟିର ଡାଳପତ୍ରର ଗହଳ ନ ଥିଲା; ପତ୍ର ଫାଙ୍କରେ ମୋତେ ଦେଖି ଦେଇ ଅନୁଚ୍ଚସ୍ୱରରେ ଘାଉଁ କରି ଥରଟିଏ ଗର୍ଜି ଉଠି ଚିତାବାଘ ପଛେଇ କରି ଜଙ୍ଗଲ ଭିତରକୁ ହଟିଗଲା । ଭୃଙ୍ଗରାଜ କିନ୍ତୁ ତା ପିଛା ଛାଡ଼ିଲାନାହିଁ । ହରିଣପରି ଆତଙ୍କଧ୍ୱନି କରି କରି ଚିତାବାଘ ପଛେ ପଛେ ଗୋଡ଼ାଇ ସେ ମହା ଆନନ୍ଦରେ ତାକୁ ଚ୍ଛଗୁଲାଇବାକୁ ଲାଗିଥାଏ । ତାର ଅନୁକରଣ ଚତୁରୀ ଦେଖି ମୋର ଈର୍ଷା ହେଲା । ମୁଁ ମଧ୍ୟ ହରିଣ ପରି ଆତଙ୍କ ଧ୍ୱନି କରିବାକୁ ଶିଖିଛି; ଭୃଙ୍ଗରାଜ ସହିତ ତାଳ ଦେଇ ଥରେ ଅଧେ ତା'ପରି ବୋବେଇଦେଇ ପାରିବି; କିନ୍ତୁ ଭୃଙ୍ଗରାଜ ବାରମ୍ବାର ସ୍ୱର ବଦଳାଇ ଅବିରତ ଗତିରେ ଭିନ୍ନ ଭିନ୍ନ ବୟସର ହରିଣଙ୍କ ସ୍ୱରକୁ ଯେପରି ସହଜରେ ଅନୁକରଣ କରୁଥାଏ—ତାହା ମୋ ପକ୍ଷରେ ଅସାଧ୍ୟ ।

ଚିତାବାଘ ଶିକାର ପାଖକୁ ଫେରିବାମାତ୍ରେ ମୋତେ ଯେ ସହଜରେ ଦେଖି ପାରିବ—ଭୂଇଁରେ ବସିବାବେଳୁ ମୁଁ ଏହା ଭଲଭାବେ ଜାଣିଥିଲି । ତେବେ ହେଁତକରେ ହୁରୁଡ଼ି ନ ଯାଇ ମଲା ହରିଣଟିକୁ ହଟାଇ ନେବାକୁ ସେ ନିଶ୍ଚୟ ଚେଷ୍ଟାକରିବ ଓ ସେହି ଅବସରରେ ଚଳଚ୍ଚିତ୍ରଟିଏ ଉଠାଇ ନେଇ ପାରିବି ବୋଲି ଆଶା କରିଥିଲି । କାର୍ଯ୍ୟତଃ ଠିକ୍ ତାହା ହିଁ ଘଟିଲା । ଭୃଙ୍ଗରାଜର ଦାଉରୁ ରକ୍ଷାପାଇବା ମାତ୍ରେ ଚିତାବାଘ ତା ଶିକାର ପାଖକୁ ଫେରିଲା । ମୋର ଉପସ୍ଥିତି ଓ କ୍ୟାମେରାର ଶବ୍ଦଯୋଗୁଁ ବିରକ୍ତ ପ୍ରକାଶ କରି ଘାଉଁ ଘାଉଁ ହେବାସତ୍ତ୍ୱେ ଠିକ୍ ମୋର ଆଶା ଅନୁସାରେ ଲଇଗୁଡ଼ିକୁ ଛଡ଼ାଇ ହରିଣ ଛୁଆକୁ ସେଠାରୁ ହଟାଇ ନେବାକୁ ସେ ଚେଷ୍ଟାକଲା । ସେତିକି ସମୟ ଅବିରତ ଗତିରେ କ୍ୟାମେରା ଚଳାଇ ରଖି ମୁଁ ପ୍ରାପ୍ତ ପଚିଶଫୁଟର ଫଟୋ କାଗଜ ଉପଯୋଗ କରିପାରିଲି ।

ଭୃଙ୍ଗରାଜ ମଣିଷ ପରି କଥା କହିବା ମୁଁ କେବେ ଶୁଣିନାହିଁ; କିନ୍ତୁ ମଣିଷପରି ଭିନ୍ନ ଭିନ୍ନ ତାଳରେ ଶିଟି ମାରିବା ସେ ସହଜରେ ଶିଖିପାରେ । ଅଯୋଧ୍ୟା—ତିରହୁତ୍ ରେଳପଥର ମାନ୍‌କାପୁର ରେଳକେନ୍ଦ୍ର ଦାୟିତ୍ୱରେ ଥିବା ଆଙ୍ଗ୍ଲୋଭାରତୀୟ ଷ୍ଟେସନ୍

Digitized by srujanika@gmail.com

ମାଷ୍ଟର ଜଣକ ଭୃଙ୍ଗରାଜ ଓ ଶାମା ଆଦି ପକ୍ଷୀଙ୍କୁ ସିଟି ମାରିବାକୁ ଶିଖାଉଥିବା ଓ ସେଗୁଡ଼ିକୁ ବିକ୍ରିକରି ଉପୁରି କିଛି ଉପାର୍ଜନ କରୁଥିବା ମୁଁ ଜାଣେ । ସୂକ୍ଷ୍ମ କାରୁକାର୍ଯ୍ୟ କରା ସୁନ୍ଦର ପିଞ୍ଜରାଟିଏ ସହିତ ତାଙ୍କର ତାଲିମପ୍ରାପ୍ତ ଶାମା ବା ଭୃଙ୍ଗରାଜଟିଏ ଭଦ୍ରଲୋକ ମୋଟ୍ ଧରଣ ଟଙ୍କାରେ ବିକ୍ରୟ କରନ୍ତି । ଯାତ୍ରୀମାନଙ୍କ ଖିଆପିଆ ପାଇଁ ସକାଳ ଓ ଦିନଗାଡ଼ି ମାନ୍କା-ପୁରଠାରେ ଯଥେଷ୍ଟ ସମୟ ଅଟକି ରହେ । ସେ ଭିତରେ ଯାତ୍ରୀଙ୍କ ଭିତରୁ ଅନେକ ଚଢ଼େଇଙ୍କ ବୋଲି ଶୁଣିବା ପାଇଁ ଷ୍ଟେସନମାଷ୍ଟରଙ୍କ ବଙ୍ଗଳାକୁ ଧାଆନ୍ତି । ସେଥିରୁ କେତେଜଣ ପସନ୍ଦ ମୁତାବକ ପିଞ୍ଜରା ସହିତ ଚଢ଼େଇଟିଏ ଖରିଦ୍ କରି ମନଖୁସିରେ ଗାଡ଼ିକୁ ଫେରିବା ଦେଖାଯାଏ ।

Digitized by srujanika@gmail.com

# ସାତ

ପ୍ରକୃତରୂପୀ ମହାଗ୍ରନ୍ଥର ଆରମ୍ଭ ବା ଶେଷ ନାହିଁ ବୋଲି ପୂର୍ବରୁ କହିଛି । ତେଣୁ ଜଙ୍ଗଲତଥ୍ୟ ସନ୍ଧାନରେ ଏ ବହିରେ ଯାହା ଲେଖିଛି, ସେଥିରୁ କୌଣସି ବିଷୟରେ ମୁଁ ସମ୍ପୂର୍ଣ୍ଣ ଅବଗତ ବା ପ୍ରବୀଣ ବୋଲି ଦାବି କରିବାର ଆସ୍ପର୍ଦ୍ଧା ମୋର ନାହିଁ । ଜୀବନର ଅଧିକାଂଶ ଭାଗ ବଣଜଙ୍ଗଲରେ କଟାଇବା ଏବଂ ଜଙ୍ଗଲ ସମ୍ବନ୍ଧରେ ଜାଣିବାର ଆଗ୍ରହକୁ ଚରିତାର୍ଥ କରିବା ଭିତରେ ସାମାନ୍ୟ ଯେତିକି ତଥ୍ୟ ସଂଗ୍ରହ କରିଛି, ତାହା ମୁକ୍ତ ଭାବରେ ଏଠାରେ ଉପସ୍ଥାପନ କରିବା ସୁଯୋଗ ନେଉଛି ମାତ୍ର । ମୋର ମତାମତ ବା ସିଦ୍ଧାନ୍ତ ପାଠକଙ୍କ ନିକଟରେ ଗ୍ରହଣୀୟ ନ ହେଲେ ମଧ୍ୟ ତାହା ଅନ୍ତତଃ ନିରର୍ଥକ ବାଦାନୁବାଦ ବା ବିବାଦର କାରଣ ନ ହେଉ ବୋଲି ନିବେଦନ ।

କୌଣସି ବିଷୟକୁ ଆମେ ସମସ୍ତେ ଗୋଟିଏ ଦୃଷ୍ଟି କୋଣରେ ଦେଖୁନା; ଅଧିକାଂଶ ସମୟରେ ଦୃଷ୍ଟି କୋଣର ଭିନ୍ନତା ଯୋଗୁ ହିଁ ଆମ ଭିତରେ ମତପାର୍ଥକ୍ୟ ଘଟିଥାଏ । ଲୋକେ କଣ ଦେଖିବାକୁ ଚାହାନ୍ତି, ତାହା ମୁଖ୍ୟତଃ ସେମାନଙ୍କ ମାନସିକ ଗଢ଼ଣ ଓ ମନୋଭାବ ଉପରେ ନିର୍ଭର କରେ ଏବଂ ବସ୍ତୁତଃ ସେମାନେ କେବଳ ତାହା ହିଁ ଦେଖିପାରନ୍ତି । ତିନିଜଣ ଲୋକ ଏକ ସଙ୍ଗରେ ଗୋଲାପଫୁଲଟିଏ ଦେଖିଲେ ଫୁଲଟିର ରଙ୍ଗ ହୁଏତ ଜଣକୁ ଆକୃଷ୍ଟ କରେ, ଜଣେ ତାର ରମ୍ୟ ଗଠନରେ ମୁଗ୍ଧ ହୁଏ ଓ ତୃତୀୟ ଜଣକ ସମ୍ଭବତଃ ଫୁଲର ରଙ୍ଗ ଓ ଗଠନ ପ୍ରତି ସମାନଭାବେ ଦୃଷ୍ଟି ଦେଇଥାଏ । ତେଣୁ ଗୋଲାପ ଫୁଲ ବିଷୟରେ ସେମାନଙ୍କ ମଧ୍ୟରେ ଯଦି ମତାନୈକ୍ୟ ଦେଖାଯାଏ—ମୋ ମତରେ ସେ ଭିତରୁ କାହାର ମନ୍ତବ୍ୟକୁ ଭ୍ରମାତ୍ମକ ବୋଲି ଆକ୍ଷେପ ନ କରି ବରଂ ଦୃଷ୍ଟିକୋଣର ପାର୍ଥକ୍ୟର ଏହା ଏକ ସ୍ୱାଭାବିକ ପରିଣାମ ବୋଲି ଗ୍ରହଣ କରିନେବା ଅଧିକ ସମୀଚୀନ ହେବ ।

ଉତ୍ତରପ୍ରଦେଶର ଅଧୁନାତନ ପ୍ରଧାନମନ୍ତ୍ରୀଙ୍କର * ସହିତ ଥରେ ଆଲୋଚନା କରୁ କରୁ ଗୋଟିଏ ବିଷୟରେ ଆମର ମତ ମିଳିଲାନାହିଁ । ପ୍ରଧାନମନ୍ତ୍ରୀ ମୋତେ କହିଥିଲେ, "ଆମ ଭିତରେ ଏ ବିଷୟରେ ମତଭେଦ ରହିଛି—ବନ୍ଧୁଭାବେ ଦୁହେଁ ଅନ୍ତତଃ ସେତିକି ମାନିନେବା ।" ପ୍ରଧାନମନ୍ତ୍ରୀଙ୍କ ଏହି ସୁନ୍ଦର ଉକ୍ତିଟିର ନଜିରଦେଇ ପାଠକଙ୍କୁ ସବିନୟ ଆବେଦନ କରୁଛି ଯେ କୌଣସି ବିଷୟରେ ମୋ ସହିତ ମତ ନ ମିଳିଲେ ମଧ୍ୟ ଆମର ବନ୍ଧୁତା ଅକ୍ଷୁର୍ଣ୍ଣ ରହିଥାଉ ।

---

* ଭାରତ ସ୍ୱାଧୀନ ହେବାର କିଛି ବର୍ଷ ପରଯାଏ 'ରାଜ୍ୟ' ଗୁଡ଼ିକୁ 'ପ୍ରଦେଶ' ଓ 'ମୁଖ୍ୟମନ୍ତ୍ରୀ' ମାନଙ୍କୁ 'ପ୍ରଧାନମନ୍ତ୍ରୀ କୁହାଯାଉଥିଲା—ଅନୁବାଦକ ।

Digitized by srujanika@gmail.com

ପିଲାଦିନେ ଶୁଖିଲା ନାଳଟିରେ ପଶି ଜଙ୍ଗଲବାସୀ ଜୀବଜନ୍ତୁଙ୍କ ଗଡଚିହ୍ନମାନ ବାରିବାର ପରୀକ୍ଷା କରୁଥିଲା ବୋଲି ପୂର୍ବରୁ ଉଲ୍ଲେଖ କରିଛୁ । ଅଳ୍ପବୟସର ସମ୍ବର, ଛୋଟ ଛୋଟ ଅଣ୍ଟିରା ମଲଗାଈ ଜାତୀୟ ଜନ୍ତୁଙ୍କ ଖୁରାଦାଗ ସହିତ ବଣଘୁଷୁରିର ଖୁରାଦାଗର ଅନେକ ମେଳ ଥିବାରୁ ପ୍ରଥମେ ପ୍ରଥମେ ସେ ଭିତରେ ପାର୍ଥକ୍ୟ ଲକ୍ଷ୍ୟ କରି ପାରୁ ନ ଥିଲି । ଏହି ଜନ୍ତୁଗୁଡ଼ିକ ପାଣି ପିଇବାକୁ ଗଡ଼ିବାବେଳେ ସେମାନଙ୍କ ଉପରେ ଆଖି ରଖିଲି ଏବଂ ଠିକ୍ ପରେ ପରେ ତାଙ୍କ ଯିବା ବାଟଟିକୁ ପରୀକ୍ଷା କରିବାକୁ ଲଗିଲି । କିଛି ଦିନ ଏହିପରି କରିବା ପରେ ବଣଘୁଷୁରି ଓ ଅନ୍ୟାନ୍ୟ ଦ୍ୱିଶଫ * ଜନ୍ତୁଙ୍କ ଖୁରାଦାଗ ଭିତରେ ପାର୍ଥକ୍ୟ ବାରିହେଲି ।

ହରିଣ ଓ ଘୁଷୁରିଙ୍କ ଖୁରା ପଛକୁ ଓ ସାମାନ୍ୟ ଉପରକୁ ଦୁଇଟି ଛୋଟ ଛୋଟ ଖୁରା ଅଛି । ହରିଣ ତୁଳନାରେ ଘୁଷୁରିର ସେହି ଖୁରା ଦୁଇଟି ଅପେକ୍ଷାକୃତ ବଡ଼ । ମାଟି ଖୁବ୍ ଟାଣ ନ ଥିଲେ ଘୁଷୁରି ଗୃହାଲାବେଳେ ଭୂଇଁରେ ତାହାର ଦାଗ ପଡ଼ିଯାଏ, କିନ୍ତୁ ହରିଣରେ ଗୋଡ଼ ନରମ ମାଟିରେ ଗଳି ନ ଯିବାଯାଏ ଏହି ଖୁରା ଦୁଇଟି ଭୂଇଁକୁ ଛୁଏଁ ନାହିଁ । ସେହିପରି ଚିତାବାଘ ଓ ଅଳ୍ପ ବୟସ୍କ ମହାବଳ ବାଘର ପଞ୍ଝାଦାଗ ଆକାରରେ ପ୍ରାୟ ସମାନ ହୋଇଥିଲେ ମଧ୍ୟ ମହାବଳର ଆଙ୍ଗୁଳିଗୁଡ଼ିକ ପଞ୍ଝା ଅନୁପାତରେ ଅପେକ୍ଷାକୃତ ଲମ୍ବ ହୋଇଥିବାରୁ ତାହା ସହଜରେ ଚହ୍ନି ହୁଏ । କୁକୁର ବେଢ଼ିଙ୍କ ପଞ୍ଝାଦାଗ ପରୀକ୍ଷା କଲେ ତଳପା ଓ ଅଙ୍ଗୁଳିର ଦୈର୍ଘ୍ୟର ଅନୁପାତକ ପାର୍ଥକ୍ୟ ସମ୍ବନ୍ଧରେ ଧାରଣା କରିହେବ । ତଳପା ଅନୁପାତରେ କୁକୁରର ଆଙ୍ଗୁଳିଗୁଡ଼ିକ ବଡ଼ ଓ ବେଢ଼ିର ଅଙ୍ଗୁଳି ଅପେକ୍ଷାକୃତ ସାନ । ସେହିପରି ଗଧିଆ ବାଘ ଓ ବଳିଆକୁକୁରଙ୍କ ପଞ୍ଝାଦାଗ ସହିତ ଚିତାବାଘର ପଞ୍ଝାଚ୍ଛାପର ବହୁତ ମେଳ ଥିବାରୁ ଗଡଚିହ୍ନ ପରୀକ୍ଷା କଲାବେଳେ ସମସ୍ତ ସମୟରେ ମନରେ ସନ୍ଦେହ ଜନ୍ମିଥାଏ । ନିମ୍ନଲିଖିତ ଦୁଇଟି ମୌଳିକ ନିୟମର ପ୍ରୟୋଗ ଦ୍ୱାରା ଏପରି ସନ୍ଦେହ ଦୂର କରାଯାଇପାରେ ।

(୧) ଶିକାରକୁ ଅନୁଧାବନ କରୁଥିବା ଜନ୍ତୁଙ୍କ ଆଙ୍ଗୁଳିଗୁଡ଼ିକ ତଳପା ଅନୁପାତରେ ଅଧିକ ଲମ୍ବ ଓ ଛପିଛପି ଶିକାରକୁ ଆକ୍ରମଣ କରୁଥିବା ଲୁକ୍କାୟିନପନ୍ଥୀ ଜନ୍ତୁଙ୍କର ଆଙ୍ଗୁଳି ତଳପା ଅନୁପାତରେ ଅପେକ୍ଷାକୃତ ଛୋଟ ହୋଇଥାଏ ।

(୨) ଅନୁଧାବନକାରୀ ଜନ୍ତୁଙ୍କ ଅଙ୍ଗୁଳି ଗ୍ରୁପ ଅଗରେ ନଖଦାଗ ବାରି ହୁଏ, କିନ୍ତୁ ଲୁକ୍କାୟିନପନ୍ଥୀ ହିଂସ୍ରଜନ୍ତୁ କେବଳ ଉତ୍ତେଜିତ ଥିବାବେଳେ କମ୍ପା ଲମ୍ଫ ପ୍ରଦାନ କରିବା ଅବସ୍ଥାରେ ଭୂଇଁରେ ଅଙ୍ଗୁଳି ଗ୍ରୁପ ସହିତ ନଖ ଦାଗ ପଡ଼େ ।

ସର୍ପବହୁଳ ଅଞ୍ଚଳମାନଙ୍କରେ ବସବାସ କରୁଥିବା ଲୋକଙ୍କ ପାଇଁ ଗଡଚିହ୍ନ ପରୀକ୍ଷା କରି ସାପର ଗଡପଥ ନିର୍ଣ୍ଣୟ କରିବା ସମୟ ସମୟରେ ଜରୁରି ହୋଇପଡେ । ଏହା ନିଡ଼ା

* ଦ୍ୱିଶଫ—ଯେଉଁ ପଶୁମାନଙ୍କ ଖୁରା ଦ୍ୱିଖଣ୍ଡିତ—ଅନୁବାଦକ ।

Digitized by srujanika@gmail.com

ସାପର ମୋଟେଇ ଓ ସେ ବିଷାକ୍ତ କି ନୁହେଁ—ଗତିରେଖା ପରୀକ୍ଷାଦ୍ୱାରା ଏ ବିଷୟରେ ମଧ୍ୟ ଧାରଣା କରିହୁଏ ।

ଗତିଚିହ୍ନ ପରୀକ୍ଷାଦ୍ୱାରା ସାପର ଗତିପଥ କିପରି ନିର୍ଣ୍ଣୟ କରାଯିବ, ତାହା ଆଲୋଚନା କରିବା ପୂର୍ବରୁ ସେଥିସହିତ ସମ୍ବନ୍ଧଯୁକ୍ତ ଏକ ଉଦାହରଣ ଦେଉଛି ।

ମନେକରନ୍ତୁ, ପାଖ ପାଖ ହୋଇ ରୁଆ ହୋଇଥିବା କିଆରିଏ ଡାଳ ଉପରେ ଖଣ୍ଡି ଲୁହା ଚକଟିଏ ଗଡ଼ାଇ ଦିଆଗଲା । ଚକଟି ଯେଉଁଆଡ଼କୁ ଗଡ଼ିଲା, ଡାଳଗୁଡ଼ିକ ସେହିଆଡ଼କୁ ଆଉଜିଯିବେ । ସେଠାରେ ଉପସ୍ଥିତ ନ ଥିଲେ ମଧ୍ୟ ପରେ ଡାଳଗୁଡ଼ିକୁ ଦେଖି ଚକଟି କେଉଁଆଡ଼କୁ ଗଡ଼ିଥିଲା ସହଜରେ ଅନୁମାନ କରିହେବ ।

ଭୂଇଁରେ ବିଛୁଇ ହୋଇ ପଡ଼ିଥିବା ପ୍ରତ୍ୟେକ ଧୂଳି ବାଲି ବା ପାଉଁଶକୁ ଖାଲି ଆଖିରେ କିମ୍ବା ପରିବର୍ଦ୍ଧନକାରୀ କାଚ ସାହାଯ୍ୟରେ ପରୀକ୍ଷାକଲେ ଦେଖିବେ ତାହା ପ୍ରକୃତରେ ମସୃଣ ନୁହେଁ; ସେଥିର କଣାଗୁଡ଼ିକ ଅତି ଛୋଟ ଛୋଟ ସ୍ତୂପ ଆକାରରେ ରାଶିକୃତ ହୋଇ ରହିଛି । ସାପ ତାର ଉପରେ ଦେଇ ଗଲେ ସ୍ତୂପଗୁଡ଼ିକ ସେହିଆଡ଼କୁ ଭୁଷୁଡ଼ି ପଡ଼ି ତାର ଗମନର ଦିଗ ସୂଚାଇ ଦିଏ ।

ସାପ ବିଷାକ୍ତ କି ନୁହେଁ—ଗତିରେଖା ପରୀକ୍ଷାଦ୍ୱାରା ତାହା ନିର୍ଣ୍ଣୟ କରିବା କଷ୍ଟସାଧ୍ୟ ହୋଇଥିଲେ ମଧ୍ୟ ଅସମ୍ଭବ ନୁହେଁ । ଗତିଚିହ୍ନରୁ ସାପର ଜାତି ନିରୂପଣ ପାଇଁ ନିର୍ଦ୍ଦିଷ୍ଟ କୌଣସି ନିୟମ ନାହିଁ । ଭାରତବର୍ଷରେ ମିଳୁଥିବା ସମୁଦାୟ ତିନିଶହ ରକମର ସାପଙ୍କ ଭିତରୁ ଅଳ୍ପ କେତୋଟିଙ୍କର ଗତିଚିହ୍ନ ପରୀକ୍ଷା କରିବାକୁ ମୁଁ ସୁଯୋଗ ପାଇଛି । ଗତିଚିହ୍ନରୁ ସାପର ଜାତି ଚିହ୍ନଟ କରିବା ପାଇଁ ଯେଉଁ ସୂତ୍ର ମୁଁ ପ୍ରୟୋଗ କରେ, ବିଷାକ୍ତ ସାପଙ୍କ ଭିତରୁ ଅହିରାଜ ଓ ଅବିଷାକ୍ତଙ୍କ ଭିତରୁ ଅଜଗରକୁ ସେଥିରୁ ବାଦ୍ ଦେବାକୁ ପଡ଼ିବ ବୋଲି ଆରମ୍ଭରୁ କହିରଖୁଛି ।

ଅହିରାଜ ଛଡ଼ା ଅନ୍ୟ ସବୁ ବିଷଧର ସାପ ବସ୍ତୁତଃ ଲୁକ୍‌କାୟନପନ୍ଥୀ; ଶିକାର ପାଖକୁ ସେମାନେ ଲୁଚି ଲୁଚି ଅଗ୍ରସର ହୁଅନ୍ତି କିମ୍ବା ନିଜେ ଲୁଚି ରହି ଶିକାର ପାଖେଇବା ପାଇଁ ଅପେକ୍ଷା କରନ୍ତି । ଶିକାରର ପଶ୍ଚାଦ୍‌ଧାବନ କରିବାକୁ ପଡ଼ୁ ନ ଥିବାରୁ ସେମାନଙ୍କ ଗତିବେଗ ଅପେକ୍ଷାକୃତ ମନ୍ଥର ଏବଂ ଗତିପଥ ଦୀର୍ଘ କୁଟିଳ ହୋଇଥାଏ । ଚନ୍ଦନବୋଡ଼ା କିମ୍ବା ଭାରତର ସର୍ବାପେକ୍ଷା ବିଷଧର ଚିତିସାପକୁ ଉଦାହରଣ ସ୍ୱରୂପ ନିଆଯାଉ । ଏସବୁ ସାପଙ୍କ ଗତିପଥରେ ଅଳ୍ପ ପରିଧିର ଗୁଡ଼ିଏ ମୋଡ଼ ଥିବା ଦେଖାଯାଏ; କିନ୍ତୁ ଅହିରାଜ ବିଷଧର ହୋଇଥିଲେ ମଧ୍ୟ ଅନ୍ୟ ସାପଙ୍କୁ ସେ ଗୋଡ଼ାଇ କରି ଖାଉଥିବାରୁ ସେମାନଙ୍କଠାରୁ ତାର ଗତିବେଗ ଖରତର ହେବା ସ୍ୱାଭାବିକ । ଅହିରାଜ ଘୋଡ଼ା ସହିତ ସମାନ ବେଗରେ ଧାଇଁପାରେ ବୋଲି ସାଧାରଣରେ କୁହାଯାଏ । ଘୋଡ଼ାରେ ବସି ଅହିରାଜକୁ ଅନୁସରଣ କରିବା କିମ୍ବା ତାହାଦ୍ୱାରା ଅନୁସୃତ ହେବାର ଅନୁଭୂତି କେବେ ଘଟି ନ ଥିବାରୁ ଏହି ଉକ୍ତିକୁ ସମର୍ଥନ ବା ଖଣ୍ଡନ କରିପାରୁନାହିଁ । ମୁଁ ମାରିଥିବା ଅହିରାଜଙ୍କ ଭିତରୁ ବୃହତ୍ତମଟିର ଲମ୍ବ

Digitized by srujanika@gmail.com

ଥିଲି ଚଉଦ ଫୁଟ । ତେବେ ଏପ୍ରକାର ସାପ ସତରେ ଫୁଟ ପର୍ଯ୍ୟନ୍ତ ଲମ୍ବ ହୁଅନ୍ତି ଏବଂ ଅତି ବେଗରେ ଧାଇଁ ପାରନ୍ତି ବୋଲି ନିଜ ଅନୁଭୂତିରୁ ମୁଁ ଜାଣେ ।



ଅଜଗରକୁ ବାଦ୍ ଦେଲେ ଅନ୍ୟସବୁ ଅବିଷାକ୍ତ ସାପ ବିଷଧର ସାପଙ୍କ ଅପେକ୍ଷା କୃଶକାୟ, ଚଞ୍ଚଳ ଓ ବେଗବାନ । କଳାପଥରିଆ, ଡମଣା ଆଦି ଅବିଷାକ୍ତ ସାପ ଶିକାରକୁ ଅନୁଧାବନ ବା ଶତ୍ରୁ ପାଖରୁ ପଳାୟନ କଲାବେଳେ ପ୍ରବଳ ବେଗରେ ଅଗ୍ରସର ହୁଅନ୍ତି । ସେମାନଙ୍କ ଗତିଚିହ୍ନ ସେହି ଅନୁପାତରେ ସରଳ ହୁଏ ଓ ବନ୍ଧୁର ଭୂମିର ଉଦ୍‌ଗତ ବା ଉତ୍ଥିତ ଅଂଶଗୁଡ଼ିକୁ କେବଳ ସ୍ପର୍ଶ କରିଥାଏ । ବିଷଧର ସାପଙ୍କ ଭିତରୁ କେବଳ ଅହିରାଜ ସେତିକି ବେଗରେ ଅଗ୍ରସର ହେଉଥିବାରୁ ତାହାର ଗତିଚିହ୍ନ ମଧ୍ୟ ଠିକ୍ ସେହିପରି ହୋଇଥାଏ । ତେବେ ଅଧିକାଂଶ ସ୍ଥାନରେ ଅହିରାଜ ଅତି ବିରଳ ହୋଇଥିବାରୁ ଅପେକ୍ଷାକୃତ ସରଳ ଗତିରେଖାଗୁଡ଼ିକୁ ଅବିଷାକ୍ତ ସାପର ବୋଲି ଗ୍ରହଣ କରାଯାଇପାରେ । ଅବିଷାକ୍ତ ସାପଙ୍କ ମଧ୍ୟରେ ପୁଣି ଅଜଗର ଅତି ଶିଥିଳ ଓ ମନ୍ଥର । ତେଣୁ ଉପରୋକ୍ତ ସୂତ୍ର ତାହା ପ୍ରତି ପ୍ରଯୁଜ୍ୟ ହେବନାହିଁ ବୋଲି ମୁଁ ଆଗରୁ ଉଲ୍ଲେଖ କରିଛି ।

ଗତି ଚିହ୍ନର ପ୍ରସ୍ଥରୁ ସାପର ଗୋଲେଇ ବିଷୟରେ ମଧ୍ୟ ମୋଟାମୋଟି ଧାରଣା କରିହୁଏ । ଭୂମିର କଠିନତା ବା କୋମଳତା ନେଇ ଗତିଚିହ୍ନର ପ୍ରସ୍ଥରେ ପାର୍ଥକ୍ୟ ଘଟେ । ପତଳା ବାଲିରେ ଗତିଚିହ୍ନ ସରୁ ଓ ବହଳ ବାଲିରେ ତାହା ଓସାର ହୋଇଥାଏ । ତେଣୁ ଗତିରେଖାକୁ ଟିକିଏ ସୂତା ଜାଗାରେ ମାପି ହାରାହାରି ପ୍ରସ୍ଥ ବାହାର କଲା ପରେ ତାହାକୁ ସୂତ୍ରରେ ଗୁଣିଦେଲେ ଗୁଣିତକ ସାପର ଗୋଲେଇ ସହିତ ସମାନ ହୁଏ ।

ଭାରତରେ ପ୍ରତିବର୍ଷ ପ୍ରାୟ କୋଡ଼ିଏ ହଜାର ଲୋକ ସାପକାମୁଡ଼ାରେ ପ୍ରାଣ ହରାନ୍ତି । ଏଥିରୁ ଅଧାଅଧି ଲୋକ ବିଷକ୍ରିୟା ଯୋଗୁ ପ୍ରାଣତ୍ୟାଗ କରନ୍ତି; ବାକିତକ କେବଳ ଯନ୍ତ୍ରଣା ଓ ଭୟଯୋଗୁଁ ମୃତ୍ୟୁ ବରଣ କରନ୍ତି ବୋଲି ମୋର ବିଶ୍ୱାସ । ଯୁଗ ଯୁଗ ଧରି ସର୍ପବହୁଳ ପରିବେଶମାନଙ୍କରେ ଜୀବନଯାପନ କରି ସୁଦ୍ଧା ଆମ ଦେଶର ଲୋକେ ସାପ-ବିଷୟରେ ବିଶେଷ କିଛି ଜାଣନ୍ତି ନାହିଁ । ମୁଷ୍ଟିମେୟ କେତେଜଣଙ୍କୁ ବାଦ୍‌ଦେଲେ ଦେଶର ଅଧିକାଂଶ ଲୋକ ସବୁ ସାପଙ୍କୁ ବିଷଧର ବୋଲି ଧରିନିଅନ୍ତି ଏବଂ ଅବିଷାକ୍ତ ସାପଙ୍କ ଦଂଶନରେ ମଧ୍ୟ ଆସନ୍ନ ମୃତ୍ୟୁ ଭୟରେ ଅବଶ ହୋଇପଡ଼ନ୍ତି । ବଡ଼ ବଡ଼ ଅବିଷାକ୍ତ ସାପଙ୍କର ଦଂଶନ ଅତୀବ କଷ୍ଟଦାୟକ; ଯନ୍ତ୍ରଣା ଓ ଭୟଜନିତ ଅବସନ୍ନତା ହିଁ ଦଂଶିତ ବ୍ୟକ୍ତିକୁ ମୃତ୍ୟୁମୁଖକୁ ଟାଣିନିଏ ।

Digitized by srujanika@gmail.com

ଗାଁଗହଳରେ ସାପକାମୁଡ଼ା ଭଲ କରିଦେଉଥିବା ବୈଦ୍ୟ ଓ ଗୁଣିଆଙ୍କର ଅଭାବ ନାହିଁ । ଆମ ଦେଶର ସାପଙ୍କ ଭିତରୁ ଶତକଡା ଦଶଭାଗ ମାତ୍ର ବିଷାକ୍ତ । ତେଣୁ ଅନେକ ସମୟରେ ରୋଗୀ ଆପେ ଆପେ ଭଲ ହୁଏ, କିନ୍ତୁ ବୈଦ୍ୟ ଓ ଗୁଣିଆ ସେଥିପାଇଁ ସୁନାମ ନିଅନ୍ତି । ଗୁଣିଗାରେଡ଼ି, ଜଡ଼ିବୁଟି ବା ଜାରମହୁରି—ହଳାହଳ ବିଷକୁ ଏସବୁ କାଟି ପାରେନାହିଁ । ତେବେ ବୈଦ୍ୟ ଓ ଗୁଣିଆମାନେ ବିନା ଖର୍ଚ୍ଚରେ ଗରିବଙ୍କର ସେବା କରନ୍ତି ଓ ଭୟରେ ମୃତପ୍ରାୟ ହୋଇଥିବା ଲୋକ ମନରେ ଯେତିକି ସାହସ ଓ ଶକ୍ତି ସଞ୍ଚାର କରିଦିଅନ୍ତି, ଅନ୍ତତଃ ଅବିଷାକ୍ତ ସାପଦ୍ୱାରା ଦଂଶିତ ହୋଇଥିବା ଲୋକଠାରେ ଜାରମହୁରି ଓ ଜଡ଼ିବୁଟିଠାରୁ ତାହା ଯଥେଷ୍ଟ କାର୍ଯ୍ୟ କରୁଥିବ ବୋଲି ମୋର ବିଶ୍ୱାସ ।

ଦେଶର ଅଧିକାଂଶ ଡାକ୍ତରଖାନାରେ ସର୍ପାଘାତର ଚିକିତ୍ସା ପାଇଁ ସୁବିଧା କରାଯାଇଛି । କିନ୍ତୁ ଉପଯୁକ୍ତ ପରିବହନ ବ୍ୟବସ୍ଥାର ଅଭାବରୁ ଦୂରଦୂରାନ୍ତରର ଗରିବ ଗ୍ରାମବାସୀମାନେ ତାହାର ସୁବିଧା ନେଇପାରନ୍ତି ନାହିଁ । ସର୍ପାଘାତ ପରେ ନିଜେ ଚାଲି ଚାଲି କିମ୍ବା ଆତ୍ମୀୟସ୍ୱଜନଙ୍କ କାନ୍ଧରେ ବୁହାହୋଇ ଡାକ୍ତରଖାନାରେ ପହଞ୍ଚିବାବେଳକୁ ଅଧିକାଂଶଙ୍କର ଅବସ୍ଥା ଚିକିତ୍ସାକୁ ବଳେଇ ଯାଇଥାଏ ।

ଡାକ୍ତରଖାନାମାନଙ୍କରେ ବିଭିନ୍ନ ବିଷଧର ସାପଙ୍କର ଯେଉଁ ନକ୍ସା ସବୁ ଦେଖିବାକୁ ମିଳେ, ତାର ଉପଯୋଗିତା ସମ୍ବନ୍ଧରେ ମୋର ବିଶେଷ ସନ୍ଦେହ ରହିଛି । ବିଷଧର ସାପ ମାରିବା ପାଇଁ ପୁରସ୍କାର ଦେବାରେ ଅବା ତାହା ସାହାଯ୍ୟ କରୁଥିବ ! କିନ୍ତୁ ରୋଗୀ ସେ ଛବି ଦେଖି ତାକୁ ଦଂଶନ କରିଥିବା ସାପକୁ ଚିହ୍ନଟ କରିବା ସାଧାରଣତଃ ସମ୍ଭବ ହୁଏନାହିଁ । ଅଧିକାଂଶ ସମୟରେ ଅନ୍ଧାରରେ ଖାଲିପାଦରେ ଚାଲୁଥିବା ଲୋକଙ୍କୁ ସାପ କାମୁଡ଼େ । ସାପଟିକୁ ମାରି ଡାକ୍ତରଖାନାରେ ପହଞ୍ଚାଇଲେ ଡାକ୍ତରମାନେ ହୁଏତ ତାକୁ ଚିହ୍ନଟ କରିବାରେ ନକ୍ସାଟିକୁ ବ୍ୟବହାର କରନ୍ତେ । କିନ୍ତୁ ସାପକୁ ମାରିଦେଲେ ରୋଗୀ ମଧ୍ୟ ମରିଯିବ ବୋଲି ଏକ ବିଶ୍ୱାସ ଥିବାରୁ ଲୋକେ ସାପକୁ ନ ମାରି ଛାଡ଼ିଦିଅନ୍ତି । ଫଳରେ ଦଂଶନ କରିଥିବା ସାପ ଡାକ୍ତରଙ୍କ ନଜରକୁ ଅଣାଯାଏନାହିଁ । ତେଣୁ ନକ୍ସା ଗୁଡ଼ିକ ବ୍ୟବହାର ନ ହୋଇ କେବଳ ଡାକ୍ତରଖାନାର ସାଜସଜ୍ଜାର ସାମଗ୍ରୀ ହୋଇ ରହିଯାଏ । ବିଷାକ୍ତତା ସମ୍ବନ୍ଧରେ ସନ୍ଦେହ ହେଲେ, ସାପଟିକୁ ମାରିଦେଇ ମୁଁ ତାକୁ ପରୀକ୍ଷା କରିନିଏ । ସାପର ଦୁଇପାଟି ଦାନ୍ତ ଥିଲେ ତାକୁ ମୁଁ ଅବିଷାକ୍ତ ବୋଲି ଗ୍ରହଣ କରେ । ବିଷାକ୍ତ ସାପର ଉପର ପାଟିରେ ବିଷଦାନ୍ତ ଥାଏ । ଚିତି ଆଦି ସାପଙ୍କ ବିଷଦାନ୍ତ କବ୍‌ଜାଯୁକ୍ତ ଓ ସଚଳ; ଗୋଖରଜାତୀୟ ସାପଙ୍କଠାରେ ତାହା କବ୍‌ଜାବିହୀନ, ଶକ୍ତ ଓ ଅଚଳ । ଚିତିସାପ କାମୁଡ଼ାରେ ଗୁଡ଼ାଏ ଦାନ୍ତର ଦାଗ ବସିଯାଏ; ଗୋଖର ସାପ କାମୁଡ଼ିଲେ କେବଳ ବିଷଦାନ୍ତ ଦୁଇଟି ଛିଦ୍ର ଫୁଟିଥାଏ । ସମସ୍ତ ସମୟରେ ସଳଖରେ ଚିହ୍ନ ନ ବସିଲେ କିମ୍ବା ଅଙ୍ଗୁଳିପରି ଛୋଟ ସ୍ଥାନରେ ବସିଗଲେ ଆକ୍ରାନ୍ତ ଲୋକଠାରେ ଗୋଟିଏ ମାତ୍ର ଦଂଶନକ୍ଷତ ଦେଖିବାକୁ ମିଳେ ।

Digitized by srujanika@gmail.com

ଅତି ଅଳ୍ପ ବୟସରୁ ଜଙ୍ଗଲ ସହିତ ମୋର ପରିଚୟ । ସେତେବେଳେ ମୋର ଶ୍ରବଣଶକ୍ତି * ବେଶ ତୀକ୍ଷ୍ଣ ଥିଲା; କଣ୍ଠ ଓ ଓଷ୍ଠ ଥିଲା କୋମଳ ଓ ନିୟନ୍ତ୍ରଣକ୍ଷମ । ତେଣୁ ଶବ୍ଦରୁ ଜଙ୍ଗଲର ପଶୁପକ୍ଷୀଙ୍କୁ ଚିହ୍ନଟ କରିବା ଏବଂ ନିୟମିତ ଅଭ୍ୟାସଦ୍ୱାରା ତାଙ୍କ ସ୍ୱର ଅନୁକରଣ କରିବା କଷ୍ଟକର ହୋଇ ନ ଥିଲା । ସେତିକିରୁ ଯଥେଷ୍ଟ ମନେକରି କିନ୍ତୁ ସନ୍ତୁଷ୍ଟ ହୋଇପାରିଲି ନାହିଁ । ଅରଣ୍ୟକୁ ସଙ୍ଗୀତମୁଖର କରି ତୋଳୁଥିବା କେତୋଟି ଗାୟକପକ୍ଷୀଙ୍କ ଛଡ଼ା ଜଙ୍ଗଲର ଜୀବଜନ୍ତୁ ଯେ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ନ ଥାଇ ଶବ୍ଦ କେବେ କରନ୍ତି ନାହିଁ—ପରିସ୍ଥିତି ଓ ପ୍ରୟୋଜନ ଅନୁସାରେ ସ୍ୱର ବଦଳାଇ ସେମାନେ ଭିନ୍ନ ଭିନ୍ନ ବାର୍ତ୍ତା ପ୍ରେରଣ କରନ୍ତି—ଏସବୁ ପିଲାଦିନରୁ ମୋର ବୁଝିବାକୁ ବାକି ନଥିଲା । ତେଣୁ କେବଳ ଶବ୍ଦ ଅନ୍ଧଭାବେ ଅନୁକରଣ କରିବା କିମ୍ବା ପଶୁପକ୍ଷୀଙ୍କ ଚିହ୍ନଟ ପାଇଁ ତାହାକୁ ଉପଯୋଗ କରିବାରେ ମଜ୍ଜି ନ ଯାଇ ପ୍ରତିଟି ଶବ୍ଦର ଅର୍ଥ ଓ ତାତ୍ପର୍ଯ୍ୟ ବୁଝିବା ପାଇଁ ଯତ୍ନବାନ୍ ହେଲି ।

ଜଙ୍ଗଲରେ ଦିନେ ଗଛ ଡାଳରେ ବସି ନିକଟର ଗୋଟିଏ ପଡ଼ିଆରେ ହରିଣପଲ ଚରୁଥିବା ଦେଖିଥିଲି । ପନ୍ଦରଟି ହରିଣ ହରିଣୀଙ୍କ ସହିତ ପଲରେ ପାଞ୍ଚୋଟି ବର୍ଷିକିଆ ଛୁଆ ମଧ୍ୟ ଥାଆନ୍ତି । ଛୁଆରୁ ଗୋଟିଏ ଘାସରେ କିଛି ସମୟ ଶୋଇରହିବା ପରେ ଉଠି ଛିଡ଼ାହେଲା ଓ ଭିଡ଼ିମୋଡ଼ି ହୋଇ ଗୋଡ଼ ଗୁଡ଼ିକ ଅଳସ ଭାଙ୍ଗିଲା ପରେ ହଠାତ୍ ପଡ଼ିଆ ଆରପାଖ ଗୋଟିଏ ଉପୁଡ଼ା ଗଛ ଆଡ଼କୁ ତୀରବେଗରେ ଧାଇଁଗଲା । ସଙ୍ଗେ ସଙ୍ଗେ ଅନ୍ୟ ଚାରୋଟି ଛୁଆ ମଧ୍ୟ ତା ପଛେ ପଛେ ଛୁଟିଲେ ଓ ଆଗପଛ ହୋଇ ସମସ୍ତେ ଅତି ସୁନ୍ଦର ଠାଣିରେ ଗଛଟିକୁ ଡେଇଁ ପାରହୋଇଗଲେ । ପଡ଼ିଆଧାର ପାଖରୁ ବୁଲିପଡ଼ି ଗଛଟିକୁ ପୁଣି ଡେଇଁଯିବା ପରେ ସାମନାରେ ଥିବା ହରିଣଛୁଆଟି ନିଜକୁ ରୋକି ନ ପାରି ଜଙ୍ଗଲରେ ପଶିଗଲା । ତାର ପଛରେ ଚାରୋଟି ମଧ୍ୟ ତାକୁ ଅନୁସରଣ କରି ଗଛ ଗହଳରେ ଲୁଚିଗଲେ ।

ହରିଣୀଟିଏ ପଡ଼ିଆରେ ଶୋଇ ରହି ଛୁଆଙ୍କ ଖେଳକୌତୁକ ଦେଖୁଥିଲା । ଛୁଆଗୁଡ଼ିକ ବଣରେ ପଶିଯିବା ମାତ୍ରେ ସେ ଛିଡ଼ା ହୋଇପଡ଼ି ଉଚ୍ଚସ୍ୱରରେ ଥରଟିଏ ଭୁକିଲା ପରି ଶବ୍ଦ କଲା । ସେ ଶବ୍ଦରେ କଣ ସଙ୍କେତ ଥିଲା କେଜାଣି, ଛୁଆଗୁଡ଼ିକ ଆଖିପିଛୁଡ଼ାକେ

*ପରେ ଦୁର୍ଘଟଣାରେ ଦୃଷ୍ଟିହୀନ ହୋଇ କରବେଟ୍ ଦୁଇ କାନର ଶ୍ରବଣଶକ୍ତି ଆଂଶିକଭାବେ ହରାଇଥିଲେ । 'ମନ୍ଦର ବାଘ' ବହିଟି ଦ୍ରଷ୍ଟବ୍ୟ—
ଅନୁବାଦକ ।

Digitized by srujanika@gmail.com

ଜଙ୍ଗଲରୁ ବାହାରି ତା ପାଖକୁ ଧାଇଁ ପଳାଇ ଆସିଲେ । ପଡ଼ିଆରେ ଚରୁଥିବା ହରିଣ-ହରିଣୀଙ୍କଠାରେ କିନ୍ତୁ ସେ ସଙ୍କେତର ଲେଶମାତ୍ର ପ୍ରତିକ୍ରିୟା ଦେଖିଲି ନାହିଁ ।

ପଡ଼ିଆଠାରୁ ଅଳ୍ପ ଛଡ଼ାରେ ଜଙ୍ଗଲ ଭିତର ଦେଇ ଚାଲିବାଟଟିଏ । ଆଖପାଖ ଗାଁ-ଗଣ୍ଡାର ଲୋକେ ସେ ବାଟେ ଜଙ୍ଗଲରୁ କାଠ କାଟିବା ପାଇଁ ଯାଆନ୍ତି । ଅଳ୍ପ ସମୟ ପରେ କାଠୁରିଆ ଜଣେ କାନ୍ଧରେ କୁରାଢ଼ି ପକାଇ ଚାଲିବାଟଟିରେ ଆସୁଥିବା ଦେଖିଲି । ଜଙ୍ଗଲରେ ଗଛପତ୍ରର ବେଶି ଗହଳ ନଥିଲା; ଗଛଡ଼ାଳରେ ମୁଁ ଉଚ୍ଚରେ ବସିଥିବାରୁ କାଠୁରିଆକୁ ବହୁଦୂରରୁ ଦେଖିପାରିଥିଲି । ଲୋକଟି ସେହି ଗଳିକୁ ପାଖେଇ ଆସିଲାବେଳକୁ ଆଉ ଗୋଟିଏ ହରିଣୀ ତାକୁ ଦେଖିଦେଇ ଠିକ୍ ପୂର୍ବପରି ଥରଟିଏ ଭୁକିଦେଲା । ଏଥର କିନ୍ତୁ ସେ ସଙ୍କେତ ଶୁଣିବା ମାତ୍ରେ ପଲକଯାକ ହରିଣ ପ୍ରବଳ ବେଗରେ ଛୁଟି ପଳାଇଯାଇ ଜଙ୍ଗଲ ଗହଳରେ ଛପିଗଲେ ।

ହରିଣୀଟି ଥରଟିଏ ଭୁକି ପିଲାଙ୍କୁ ବଣରୁ ବାହାରି ଆସିବାକୁ ସଙ୍କେତ ଦେଇଥିଲା । ପରେ ପରେ ଅନ୍ୟ ହରିଣୀଟି ଅବିକଳ ସେହିପରି ଥରେ ମାତ୍ର ଭୁକି ଦେଇ ମଣିଷର ପ୍ରତି ପଲର ଅନ୍ୟମାନଙ୍କୁ ସତର୍କ କରାଇଦେଲା । ପଶୁଜନ୍ତୁଙ୍କ ଶବ୍ଦସଙ୍କେତ ସହିତ ସେତେବେଳେ ବିଶେଷ ପରିଚିତ ନ ଥିଲି; ଦୁଇଟିଯାକ ସଙ୍କେତ ମୋତେ ପୂରାପୂରି ଏକାପରି ଶୁଣାଯାଇଥିଲା । ହରିଣଙ୍କ ଉପରେ କିନ୍ତୁ ସଙ୍କେତ ଦୁଇଟିର ସମ୍ପୂର୍ଣ୍ଣ ଭିନ୍ନ ଧରଣର ପ୍ରତିକ୍ରିୟା ଦେଖିଲି । ଏ ଦିଗରେ ଅନୁଭୂତି ଓ ଅଭ୍ୟାସ ବଢ଼ିବା ପରେ ଯାଇ ବୁଝିଲି ଯେ ପଶୁପକ୍ଷୀଙ୍କ ଶବ୍ଦ ବା ଧ୍ୱନି ସମ୍ପୂର୍ଣ୍ଣ ସମାନ ଶୁଣାଗଲେ ମଧ୍ୟ ସ୍ୱର ଓ ତାଲର ପରିବର୍ତ୍ତନଦ୍ୱାରା ତାହାର ମାଧ୍ୟମରେ ଭିନ୍ନ ଭିନ୍ନ ଭାବ ପ୍ରକାଶ ଓ ବାର୍ତ୍ତା ପ୍ରେରଣ କରାଯାଏ ।

ଉଦାହରଣ ସ୍ୱରୂପ କୁକୁର ଭୁକିବାକୁ ଲକ୍ଷ୍ୟ କଲେ ଜଣାପଡ଼ିବ ଯେ ସେହି ଗୋଟିଏ ଶବ୍ଦ ଭିତରେ ସ୍ୱର ଓ ତାଲ ବଦଳାଇ କୁକୁର ଭିନ୍ନ ଭିନ୍ନ ଭାବ ପ୍ରକାଶ କରୁଛି । ମୁନିବକୁ ଦେଖି ସେ ଆନନ୍ଦ ଅଭିବାଦନ ଜଣାଏ କିମ୍ବା ବୁଲିଯିବା ପାଇଁ ଆକୁଳ ଆବେଦନ କରେ— ଗଛଡ଼ାଳରେ ବସିଥିବା ବିରାଡ଼ିକୁ ଧରି ନ ପାରିଲେ ସେ ଗଭୀର ନୈରାଶ୍ୟ ପ୍ରକାଶ କରେ— ଅଚିହ୍ନା ଲୋକ ପ୍ରତି ପ୍ରଚଣ୍ଡ ରାଗ ଦେଖାଏ କିମ୍ବା ଜଞ୍ଜିରରେ ବନ୍ଧାହେବା ବିରୁଦ୍ଧରେ ତୀବ୍ର ପ୍ରତିବାଦ ଜଣାଇଥାଏ । ଭିନ୍ନ ଭିନ୍ନ ତାଲ ଓ ଶବ୍ଦରେ ଭୁକିବାଦ୍ୱାରା କୁକୁର ତାର ମନୋଭାବ ଏତେ ସ୍ପଷ୍ଟ ଭାବେ ସୂଚାଇଦିଏ ଯେ, ସେ ଦିଗରେ ସାମାନ୍ୟ ଧାରଣା ଥିଲେ ଶ୍ରୋତା ତାହା ଅତି ସହଜରେ ବୁଝିପାରେ । ଠିକ୍ ସେହିପରି ଶବ୍ଦ ସଂଯୋଜନାର ପରିସର ମଧ୍ୟରେ ଜଙ୍ଗଲର ପଶୁପକ୍ଷୀ ସ୍ୱର ଓ ତାଲ ପରିବର୍ତ୍ତନ କରି ପରସ୍ପରକୁ ଯେଉଁ ବିଭିନ୍ନ ସଙ୍କେତ ଓ ସୂଚନାମାନ ଦିଅନ୍ତି—ଅଭ୍ୟାସ ଏବଂ ଅନୁଧ୍ୟାନଦ୍ୱାରା ମନୁଷ୍ୟ ମଧ୍ୟ ତାହାର ଅର୍ଥ ଓ ତାତ୍ପର୍ଯ୍ୟ ଗ୍ରହଣ କରିପାରେ ।

ଜଙ୍ଗଲତଥ୍ୟ ଶିକ୍ଷାର ବିଭିନ୍ନ ପର୍ଯ୍ୟାୟରେ ପଶୁପକ୍ଷୀଙ୍କୁ ଶବ୍ଦଦ୍ୱାରା ଚିହ୍ନଟ କରିବା, ଶବ୍ଦର ସ୍ଥିତି ନିର୍ଭୁଲ ଭାବେ ନିର୍ଣ୍ଣୟ କରିବା, ଶବ୍ଦଗୁଡ଼ିକୁ ଅନୁକରଣ କରିବା ଏବଂ ତାହାର

Digitized by srujanika@gmail.com

ଅର୍ଥ ଓ ତାତ୍ପର୍ଯ୍ୟ ଗ୍ରହଣ କରିବାକୁ ଶିଖିଲି । ଶେଷରେ ନିଜଆଡ଼ୁ ଉପଯୁକ୍ତ ସଙ୍କେତ ଦେଇ କେତେକ ପଶୁପକ୍ଷୀଙ୍କୁ ନିକଟକୁ ଡାକି ଆଣିବାକୁ ସକ୍ଷମ ହେଲି ଓ ସ୍ଥାନବିଶେଷରେ ମୋତେ ଅନୁସରଣ କରିବାକୁ ସେମାନଙ୍କୁ ପ୍ରରୋଚିତ କରିଇ ପାରିଲି । ଏସବୁ ସହିତ ଜଙ୍ଗଲ ତଥ୍ୟ ସମ୍ବନ୍ଧରେ ଜାଣିବାପାଇଁ ଆଗ୍ରହ ଓ ଆକର୍ଷଣ ବଢ଼ିବା ସଙ୍ଗେ ସଙ୍ଗେ ମୋ ପାଇଁ ଜନ୍ତୁଜଗତର ପରିସର ଦୃଷ୍ଟିକ୍ଷେତ୍ରର ପରିଧି ଭିତରେ ସୀମାବଦ୍ଧ ନ ହୋଇ ଶ୍ରୁତିକ୍ଷେତ୍ରର ଶେଷସୀମା ପର୍ଯ୍ୟନ୍ତ ପ୍ରସାରିତ ହୋଇଗଲା ।

ଜଙ୍ଗଲର ପଶୁପକ୍ଷୀ ଶ୍ୱାପଦସଙ୍କୁଳ ତାଙ୍କ ଦୈନନ୍ଦିନ ଜୀବନର ପ୍ରତି ମୁହୂର୍ତ୍ତରେ ପରିବେଶ ପ୍ରତି ସମ୍ପୂର୍ଣ୍ଣ ସଜାଗ ରହନ୍ତି । ଗମ୍ଭୀର ମନୋଯୋଗ ସହ ଚତୁର୍ଦ୍ଦିଗର ପ୍ରତ୍ୟେକଟି ଶବ୍ଦକୁ କର୍ଣ୍ଣପାତ କରି ସେମାନେ ତାହାର ତାତ୍ପର୍ଯ୍ୟ ଓ ସ୍ଥିତି ନିର୍ଦ୍ଧାରଣ ଭାବେ କଳନା କରନ୍ତି ଓ ନିଜେ ସାବଧାନ ହେବା ଛଡ଼ା ପ୍ରତିବେଶୀକୁ ମଧ୍ୟ ସେଥିପ୍ରତି ସତର୍କ କରିଦିଅନ୍ତି । ଚିତାବାଘ ଦେଖିଦେଲେ ହନୁମାଙ୍କଡ଼ ଚୁହାଇ ଚୁହାଇ ବୋବାଇବାକୁ ଲାଗେ । ସନ୍ଦେହ-ଜନକ କୌଣସି ଶବ୍ଦ ଶୁଣିଲେ ବା ସଞ୍ଚଳନ ଦେଖିଲେ ହରିଣ ଦୀର୍ଘ ସମୟ ଧରି ଆସନ୍ନ ବିପଦର ଚେତାବନୀ ଶୁଣାଏ । ମହାବଳ ବାଘର ଉପସ୍ଥିତି ସମ୍ପର୍କରେ ମୟୂର ଅନବଚ୍ଛିନ୍ନଭାବେ ରାବ ଦେଇ ଜଙ୍ଗଲକୁ ମୁଖରିତ କରିଦିଏ । ଏସବୁ ଧ୍ୱନିର ବାରମ୍ବାର ପୁନରାବୃତ୍ତି ଘଟୁଥିବାରୁ ତାହାର ସ୍ଥିତି ନିର୍ଣ୍ଣୟ କରିବା କଷ୍ଟକର ହୁଏ ନାହିଁ । ଅଧିକାଂଶ ସମୟରେ ଯେଉଁଭଳି ବିପଦର ତାହା ସୂଚନା ଦିଏ, ତାହା ସେତେ ଗୁରୁତର ନଥାଏ ଏବଂ ତାହା ବିରୁଦ୍ଧରେ ଆଶୁ କାର୍ଯ୍ୟାନୁଷ୍ଠାନ ପ୍ରୟୋଜନ ହୁଏ ନାହିଁ ।

ଜଙ୍ଗଲ ଭିତରେ ଅନ୍ୟ ପ୍ରକୃତ ଶ୍ୱାପଦପ୍ରଦ ବିପଦସୂଚକ ଶବ୍ଦଗୁଡ଼ିକ ଥରୁଟିଏ ମାତ୍ର ଶୁଣାଯାଏ । ନିର୍ଜନ ଜଙ୍ଗଲରେ ଛପି ଛପି ପାଖେଇ ଆସୁଥିବା ହିଂସ୍ରଜନ୍ତୁର ପଦଚାପରେ ଶୁଖିଲା କାଠଟିଏ ହଠାତ୍ ସଦ୍ ମଡ଼୍କରି ଭାଙ୍ଗିଯିବାର ଶୁଣାଯାଏ—ଅତି ନିକଟରୁ କେଉଁଠାରୁ ମହାବଳ ବାଘ ଅନୁଚ୍ଚସ୍ୱରରେ ଥରେ ମାତ୍ର ଗର୍ଜିଦେଇ ପୁଣି ନୀରବ ହୋଇଯାଏ କିମ୍ବା ଅପ୍ରକାଶ୍ୟ କୌଣସି ସ୍ଥାନରୁ ଜନ୍ତୁଟିଏ ପ୍ରାଣର ଆତଙ୍କରେ ଥରେ ବୋବାଇ ଉଠି ଅନ୍ତିମ ପରିଣତି ଅପେକ୍ଷାରେ ସ୍ତବ୍ଧ ଓ ସ୍ତମ୍ଭିତ ହୋଇ ରହିଯାଏ—ସେସବୁ ଶବ୍ଦ ଶୁଣାଯିବା ମାତ୍ରେ ତତ୍‌କ୍ଷଣାତ୍ ପ୍ରତିବିଧାନ ନ କଲେ ଆତ୍ମରକ୍ଷା ଅସମ୍ଭବ ହୋଇପଡ଼େ ।

ପ୍ରାଣ ପ୍ରତି ଭୟ ଲାଗିରହିଲେ ପଶୁଜନ୍ତୁଙ୍କ ପରି ମନୁଷ୍ୟର ଚେତନା ମଧ୍ୟ ତୀକ୍ଷ୍ଣ ଓ ଶାଣିତ ହୋଇଯାଏ । ପ୍ରାଣର ଭୟ ଯୋଗୁଁହିଁ ଶବ୍ଦଭେଦ କରିବା ଦିଗରେ ପ୍ରଥମ ପଦକ୍ଷେପ ନେଇଥିଲି । କ୍ରମାଗତ ସାଧନାଦ୍ୱାରା ସେ ଶକ୍ତିର ବିକାଶ ଘଟିଲା ଏବଂ ପଶୁଜନ୍ତୁଙ୍କୁ ନ ଦେଖି ମଧ୍ୟ ସେମାନଙ୍କ କାର୍ଯ୍ୟକଳାପ ଓ ଗତିବିଧି ଅନୁଧ୍ୟାନ କରିବାକୁ ସକ୍ଷମ ହେଲି । ଘର ଆମର ଜଙ୍ଗଲର ଧାରରେ । ଦିନରେ ଜଙ୍ଗଲରେ ବୁଲୁଥିବାବେଳେ ବା ରାତିରେ ଘରେ ଶୋଇଥିବା ଅବସ୍ଥାରେ ମଧ୍ୟ ଜଙ୍ଗଲର ପ୍ରତି ଶବ୍ଦକୁ ଧ୍ୟାନ ଦେଇ ଜନ୍ତୁଙ୍କ କ୍ରିୟାକଳାପ ପର୍ଯ୍ୟାୟକ୍ରମେ ଅନୁଧ୍ୟାନ କରିବାର ସହଜ ସ୍ୱାଭାବିକ ଅଭ୍ୟାସରେ ପରିଣତ ହେଲା ।

Digitized by srujanika@gmail.com

ଷ୍ଟିଫେନ୍ ଢ଼ସ୍'ଙ୍କ ବହି ପାଇଁ ପକ୍ଷୀ ସଂଗ୍ରହ କରି ଛବି ପ୍ରସ୍ତୁତ କରିବାରେ ତାଙ୍କୁ ସାହାଯ୍ୟ କରିଥିଲି । ତାହାର ପ୍ରତିଦାନରେ ଢ଼ସ୍ ଅତି ଶ୍ରଦ୍ଧାରେ ମାନ୍ଧାତା ଅମଳର ଦଦରା ଦୁଇନଳିଆ ଗାରୁଖିଆ ବନ୍ଧୁକଟିଏ ମୋତେ ଉପହାର ଦେଲେ । ବନ୍ଧୁକଟି ନୂଆ ବେଳେ ଭଲ ଥିଲା ନିଶ୍ଚୟ । ତେବେ ମୋ ହାତକୁ ଆସିବା ବେଳକୁ କିନ୍ତୁ ତା ଅବସ୍ଥା ଥିଲା ଅତି ଶୋଚନୀୟ । ଭଙ୍ଗା ମୁଠାଟି ପିତଳ ତାରରେ ନଳି ସହିତ ଭିଡ଼ା ହୋଇଥାଏ । ପୂର୍ବରୁ କେବେ ଅଧିକ ବାରୁଦ ଖିଆ ହୋଇ ଫୁଟିଯିବା ଫଳରେ ତାହାର ନଳଟି ଫାଟି ମେଲା ହୋଇ ରହିଥାଏ । କାଳାଦୁଙ୍ଗିର ପ୍ରଖ୍ୟାତ ଗ୍ରେଗରିକାଷ୍ଟ କୁଆଁର ସିଂଙ୍କୁ* ବନ୍ଧୁକଟି ଦେଖାଇଲି ତାର ଦୋଷ ବିଷୟରେ ସାମାନ୍ୟ ସୂଚନା ମଧ୍ୟ ନ ଦେଇ ସେ କହିଲେ ଯେ ବାଁ ନଳଟି ବେଶ୍ ଭଲ ଓ ମଜଭୁତ୍ ଏବଂ ଅନେକଦିନଯାଏ ସେଇଟି ଭଲ କାମ ଦେବ । କୁଆଁର ସିଂଙ୍କ ଭବିଷ୍ୟତବାଣୀ ଅନ୍ୟଥା ହେଲନାହିଁ । ବନ୍ଧୁକଟି ପାଇବାଦିନୁ ଦୁଇବର୍ଷଯାଏ ଶୀତଦିନେ ଆମ ଘରେ ମାଂସର ଅଭାବ କେବେ ପଡ଼ି ନ ଥିଲା । ମୟୂର ଓ ବଣକୁକୁଡ଼ା ମାରି ଘରର ରୁଚିଦା ମେଣ୍ଟାଇ ପାରିଥିଲି । ସେ ଭିତରେ ଥରେ ଗୋଟିଏ ହରିଣ ପାଖକୁ ଛପି ଛପି ଯାଇ ଗ୍ରଚନମ୍ବର ଛର୍ରାରେ ଯେ ତାକୁ ମାରିଦେଇଥିଲି—ମୋର ବାଲ୍ୟଜୀବନର ତାହା ମଧ୍ୟ ଏକ ଅତି ସ୍ମରଣୀୟ ଘଟଣା ।

ସେତେବେଳେ କେବଳ ବସିଲା ଚଢ଼େଇଙ୍କୁ ଖୋଜି ଖୋଜି ମାରୁଥିଲି ବୋଲି ବିନାଦ୍ୱିଧାରେ ସ୍ୱୀକାର କରୁଛି । ବନ୍ଧୁକ ନିଶାଣରେ ହାତ ପକ୍କା ନ ଥିଲା । ସାମାନ୍ୟ ଯେତିକ ଗୁଳିବାରୁଦ ମୋ ଭାଗରେ ପଡ଼ୁଥିଲା, ଉଡ଼ନ୍ତା ଚଢ଼େଇକୁ ଲକ୍ଷ କରିବାରେ ଅଯଥା ସେଥିରୁ କିଛି ନଷ୍ଟ କରିବାକୁ ଚାହୁଁ ନ ଥିଲି । ଚଢ଼େଇ ମାରି ଘରକୁ ଆଣିବା ହିଁ ଥିଲା ମୋର ପ୍ରଧାନ ଉଦ୍ଦେଶ୍ୟ ଓ ଲକ୍ଷ୍ୟ । ଦୁଇ ତିନୋଟି ଗୁଳି ବିନିମୟରେ ସେତିକିଟି ଚଢ଼େଇ ନେଇ ସକାଳେ ସନ୍ଧ୍ୟେ ଘରକୁ ବାହୁଡ଼ିବାରେ ପିଲାଦିନେ ଯେତେ ଆନନ୍ଦ ଓ ଆତ୍ମପ୍ରସାଦ ଲାଭ କରୁଥିଲି, ଉଡ଼ନ୍ତା ଚଢ଼େଇଙ୍କୁ ଲକ୍ଷ କରିପାରିଥିଲେ ତା'ଠାରୁ ବେଶି ଆନନ୍ଦ କଦାପି ମିଳି ନ ଥାଆନ୍ତା ।

ଆମ ବଗିଚା ତଳକୁ ଦୁଇଟି ନାଲ ଓ ତା ମଧ୍ୟରେ ଗ୍ରେଟ ଚକଡ଼ାଏ ଗହଳ ଜଙ୍ଗଲ ଥିବା କଥା ପୂର୍ବରୁ ଉଲ୍ଲେଖ କରିଛି । ଜଙ୍ଗଲ ଉପର ମୁଣ୍ଡରେ ଗ୍ରେଟ ବଡ଼ ପାହାଡ଼ଗୁଡ଼ିକ ସବୁ ହିମାଳୟର ପାଦପର୍ବତ ଶ୍ରେଣୀର ଅଂଶବିଶେଷ । ଦିନେ ସେହି ପାହାଡ଼ ତଳେ ଚଢ଼େଇ ମାରି ଜଙ୍ଗଲ ଭିତର ଦେଇ ଘରକୁ ଫେରୁଥିଲି । କେତେଦିନ ଧରି ବର୍ଷା ହୋଇନଥିଲା । ଟାଣ ଶୁଖିଲା ଭୂଇଁରେ ଜନ୍ତୁଜାନୁଆରଙ୍କ ଖୋଜ ଦାଗ ବାରି ହେଉନଥାଏ । କାନ୍ଧରେ ମୋର ପୁରୁଳିବୁଣା ଜାଲି ମୁଣିଟିଏ; ଗୁଳିବାରୁଦ ଥଳିଟି ଛଡ଼ା ସେ ଦିନର ଶିକାର ଗୋଟିଏ ବଣକୁକୁଡ଼ା ଓ ପାହାଡ଼ିଆ କୁକୁଡ଼ା ସେଥିରେ ପୂରିଥାଏ ।

---

* 'ମୋର ଭାରତ' ବହିଟି ଦ୍ରଷ୍ଟବ୍ୟ—ଅନୁବାଦକ ।

Digitized by srujanika@gmail.com

ପାହାଡ଼ିଆ କୁକୁଡ଼ାଟିକୁ ମାରି ଝୋଲାରୁ ବାହାରିବାବେଳକୁ କଳା ବଉଦ ଖଣ୍ଡେ ପଶ୍ଚିମ ଦିଗ୍‌ବଳୟର ପାହାଡ଼ଚୂଡ଼ାକୁ ଛୁଇଁଥିଲା । ହନସାବ୍ ପ୍ରବଳ ଗୁଳୁଗୁଳି; ଘାସ ପତ୍ର ହଲିଲା ଭଳି ଟିକିଏ ପବନ ବି ନଥିଲା । ଗୁଳୁଗୁଳି ପରେ କଳାବଉଦ ଘୋଟିଆସିବା ଏସବୁ ଅଞ୍ଚଳରେ ଝଡ଼ବତାସ ଓ କୁଆପଥର ବର୍ଷାର ସୂଚନା ଦିଏ । କୁଆପଥର ବର୍ଷା ଆମ ଗାଁଗଣ୍ଡାରେ ଯେପରି ଖଣ୍ଡପ୍ରଳୟ ସୃଷ୍ଟି କରେ, ତାହା ନ ଦେଖିଲେ ବିଶ୍ୱାସ କରି ହେବ ନାହିଁ । କେଇ ମିନିଟ୍ ଭିତରେ ମାଇଲ୍ ମାଇଲ୍ ଧରି ପାଚିଲା ଫସଲ ବିଲରେ ଶୋଇଯାଏ; ଛୋଟ ପିଲା ବା ଗୃହପାଳିତ ପଶୁ ଖୋଲା ମେଲାରେ ରହିଗଲେ କୁଆପଥର ମାଡ଼ରେ ପ୍ରାଣ ହରାନ୍ତି । କୁଆପଥର ଘଡ଼ିଏ ବର୍ଷିଯିବା ପରେ ଶାଗୁଣା ଓ ମୟୂରଙ୍କଠାରୁ ଆରମ୍ଭ କରି ଛୋଟବଡ଼ ଅସଂଖ୍ୟ ପକ୍ଷୀ ଜଙ୍ଗଲସାରା ମରି ପଡ଼ିଯାଆନ୍ତି । କିନ୍ତୁ ଅତି ଆଶ୍ଚର୍ଯ୍ୟ ବିଷୟ ହେଉଛି ଯେ କୁଆପଥର ମାଡ଼ରେ ବନ୍ୟଜନ୍ତୁଟିଏ ପ୍ରାଣ ହରାଇବା କେବେ ଦେଖାଯାଏ ନାହିଁ ।

ଘର ସେଠାରୁ ଅନ୍ତତଃ ତିନି ମାଇଲ୍ ଦୂର । ବାଟ କାଟି ବଣବୁଦାରେ ପଶି ସଳଖରେ ଗଲେ ଘର ଅଧମାଇଲ୍‌ରୁ କମ୍ ପଡ଼ିବ । ସାମନାରୁ ମେଘ ଅନ୍ଧାର ଘୋଟିଆସୁଥାଏ, ବିଜୁଳି ଘଡ଼ଘଡ଼ି ମାରୁଥାଏ ଅବିରାମ । ଜଙ୍ଗଲ ସମ୍ପୂର୍ଣ୍ଣ ନିସ୍ତବ୍ଧ—ପଶୁପକ୍ଷୀମାନେ ନୀରବ—ସତେ ଯେମିତି ଭୟରେ ସମସ୍ତେ ଜଡ଼ ପାଲଟି ଯାଇଛନ୍ତି । ସେତେବେଳକୁ ମୁଁ ବାଟ ଛାଡ଼ି ଜୋତା ମୋଜା ଖୋଲି ବଡ଼ ବଡ଼ ଗଛର ଚକଡ଼ାଏ ଗହଳ ଜଙ୍ଗଲରେ ପଶି ଘରମୁହାଁ ଧାଇଁଛି । ମଉଳା ଆଲୁଅରେ ଭୂଇଁ ଆଉ ଦେଖାଯାଉନଥାଏ; ପ୍ରତି ପାହୁଣ୍ଡରେ ସାପ ପ୍ରତି ହୁସିଆର ରହିବାକୁ ପଡ଼ୁଥାଏ ।

ଜଙ୍ଗଲଟିକୁ ଅଧାଅଧି ପାର ନ ହେଉଣୁ ବର୍ଷାର ପୂର୍ବ ସୂଚନା ନେଇ ଝଲକାଏ ଧୂମାଳିଆ ପବନ ଜଙ୍ଗଲ ଭିତର ଦେଇ ପ୍ରବଳ ବେଗରେ ବହିଗଲା । ଗଛ ଗହଳରେ ଘୂର୍ଣ୍ଣି ସୃଷ୍ଟି ହୋଇ ବିଛୁଇ ହୋଇ ପଡ଼ିଥିବା ବହଳ ଶୁଖିଲା ପତ୍ର ପରସ୍ତକ ଭଉଁରି ଖେଳ ଯେପରି ଶବ୍ଦ କରି ଉଡ଼ିବାକୁ ଲାଗିଲା, ମନେହେଲା ସତେ ଅବା ନିକଟରୁ କେଉଁଠାରୁ ଅବରୁଦ୍ଧ ଜଳ ଅକସ୍ମାତ୍ ମୁକ୍ତ ହୋଇ ଏକ ଉତ୍ତାଳ ତରଙ୍ଗ ରୂପେ ପ୍ରବଳ ବେଗରେ ଏଆଡ଼େ ଛୁଟି ଆସୁଛି । ଆଉ ସେହି ଶବ୍ଦର ବୁକୁ ଚିରି ହଠାତ୍ ଭାସି ଆସିଲା ଏକ ଭୟଙ୍କର ବିକଟ ଆର୍ତ୍ତନାଦ । ମନୁଷ୍ୟର କୋହଭରା ଅନୁଚ୍ଚ କ୍ରନ୍ଦନ ପରି ଏକ ସ୍ୱରରୁ ତାହା ଆରମ୍ଭ ହୋଇ କ୍ରମେ ଦୁଃସହ ଯନ୍ତ୍ରଣାର ମର୍ମଭେଦୀ ଆର୍ତ୍ତନାଦକୁ ପରିବର୍ତ୍ତିତ ହେଲା ଏବଂ ଶେଷରେ ବୁକୁଫଟା ଏକ କରୁଣ ଦୀର୍ଘଶ୍ୱାସରେ ପରିଣତ ହୋଇ ଶବ୍ଦଟିର ପରିସମାପ୍ତି ଘଟିଲା ।

ମୋ ଉପରେ ସେ ଶବ୍ଦର ଯାହା ପ୍ରତିକ୍ରିୟା ହେଲା, ତାହା ବାସ୍ତବିକ୍ ବର୍ଣ୍ଣନାର ବାହାରେ । ଶବ୍ଦଟି ଡାନ୍‌ସେଙ୍କ ବର୍ଣ୍ଣିତ 'ଡାଆଣୀର ଡାକ' ବୋଲି ତିଳେମାତ୍ର ସନ୍ଦେହ ରହିଲା ନାହିଁ । ବିଭିନ୍ନ ଭୀତିପ୍ରଦ ଶବ୍ଦର ମନୁଷ୍ୟ ଉପରେ ଭିନ୍ନ ଭିନ୍ନ ପ୍ରଭାବ ପଡ଼େ । କେତେକ ଶବ୍ଦ ତାକୁ ପଥର ପରି ଜଡ଼ ଓ ସ୍ତମ୍ଭୀଭୂତ କରିଦିଏ—ଆଉ କେତେକ ଶବ୍ଦ ଶୁଣିବା ମାତ୍ରେ ଆତ୍ମରକ୍ଷାର ପ୍ରବଳ ପ୍ରୟାସରେ ସେ ପ୍ରାଣମୂର୍ଚ୍ଛା ପଳାୟନ କରେ । କେଇ

Digitized by srujanika@gmail.com

ସପ୍ତାହ ପୂର୍ବରୁ ମ୍ୟାଗଶି ସହିତ ମହାବଳ ବାଘ ପାଖରୁ ଯେତେ ବେଗରେ ଧାଇଁ ପଳାଇଥିଲି, ଜୀବନରେ କେବେ ହେଲେ ତାହାଠାରୁ ଅଧିକ ବେଗରେ ଧାଇଁ ପାରିବି ବୋଲି ଭାବିନଥିଲି । ସେ ଧାରଣା ସେହି ମୁହୂର୍ତ୍ତରେ ସଂଶୋଧିତ ହୋଇଗଲା । ବାଘଭୟ ଆଉ ଭୂତଭୟ ଭିତରେ ଯେ କେତେ ପ୍ରଭେଦ ଅଛି, ତାହା ମୁହୂର୍ତ୍ତକେ ଅତି ସୁସ୍ପଷ୍ଟଭାବେ ବୁଝିଗଲି । ବାଘ ପରି ଦୃଶ୍ୟମାନ ପ୍ରତ୍ୟକ୍ଷ ବିପଦ ତୁଳନାରେ ଅଜ୍ଞାତ, ଅଦୃଶ୍ୟ ଏକ ଅଶାନ୍ତ ଅଶରୀରୀ ଆତ୍ମାର କରାଳ କବଳରେ ପଡ଼ିଯିବାର ଆତଙ୍କ ମନୁଷ୍ୟଙ୍କୁ ଯେ କେତେ ବେଶି ତ୍ରସ୍ତ ଓ ବିପର୍ଯ୍ୟସ୍ତ କରିଦିଏ—ନିଜ ଅନୁଭୂତିରୁ ସେଦିନ ସେତିକି ଶିକ୍ଷା ପାଇଗଲି । ମନର ସମସ୍ତ ଦମ୍ଭ ଓ ସାହସ ହରାଇ ଘରମୁହାଁ ଛୁଟିଲାବେଳେ କେତେ ଜାଗାରେ ଝୁଣ୍ଟିଲି ବା କଣ୍ଟା ମାଡ଼ିଲି, ତାହା ଲକ୍ଷ୍ୟ କରିବାକୁ ତର ନଥିଲା । ସେଦିନ ବନ୍ଧୁକ ବା ଶିକାର ମୁଣିଟିକୁ ଯେ ଫିଙ୍ଗିଦେଇ ପଳାଇ ନ ଥିଲି—ଏ କଥା ଭାବିଲାବେଳକୁ ଏବେ ମଧ୍ୟ ଆଶ୍ଚର୍ଯ୍ୟ ଲାଗେ ।

ବାଟସାରା ଘନ ଘନ ବିଜୁଳି ଓ ଘଡ଼ଘଡ଼ି ଲାଗିରହିଲା । ଦାଣ୍ଡ ପାହାଚରେ ମୁଁ ଗୋଡ଼ ଦେବାବେଳକୁ ସାଇଁ ସାଇଁ ଶବ୍ଦ ସହିତ ପ୍ରବଳ କୁଆପଥର ବର୍ଷା ଆରମ୍ଭ ହୋଇଗଲା । ଘରେ ସମସ୍ତେ କବାଟ ଝରକା କିଳିବାରେ ବ୍ୟସ୍ତ ଥିଲେ । ମୁଁ ଧଇଁସଇଁ ହୋଇ ପହଞ୍ଚିବା କେହି ଲକ୍ଷ୍ୟ କରି ପାରିଲେ ନାହିଁ ।

'ଡାଆଣୀର ଡାକ' କାନରେ ବାଜିଲେ ନିଜର ଓ ପରିବାରର ଘୋର ଅନିଷ୍ଟ ଘଟିବ ବୋଲି ତାନ୍‌ସେଙ୍କଠାରୁ ଶୁଣିଥିଲି । ଘରେ କାହାରି ଉପରେ କିଛି ବିପତ୍ତି ପଡ଼ିଲେ ସମସ୍ତେ କାଳେ ମୋତେ ଦୋଷ ଦେବେ—ସେଇ ଭୟରେ କାହାକୁ କିଛି କହିଲି ନାହିଁ । ବିପଦ ମଣିଷ ମନରେ କେବଳ ଆତଙ୍କ ସୃଷ୍ଟି କରେ ନାହିଁ; ବିପଦ ପ୍ରତି ଆକୃଷ୍ଟ ହେବା ତାର ମନୋବୃତ୍ତିର ଏକ ବିଶେଷ ଲକ୍ଷଣ । ବିଶେଷ କରି ଛୋଟ ପିଲାଙ୍କ ମନରେ ବିପଜ୍ଜନକ କାର୍ଯ୍ୟକଳାପ ପ୍ରତି ଏକ ଦୁର୍ନିବାର ଆକର୍ଷଣ ଥାଏ; ନିଆଁ ବା ପାଣି ପାଖକୁ ଯିବାକୁ ବାରଣ କଲେ ପିଲାଏ ସେଠିକୁ ହିଁ ଯିବାକୁ ବେଶି ମନ ବଳାନ୍ତି । 'ଡାଆଣୀର ଡାକ' ଯେଉଁଠାରେ ଶୁଣିଥିଲି, ଦୀର୍ଘକାଳଯାଏ ଜଙ୍ଗଲର ସେହି ଅଂଶଟିର ପାଖ ମାଡ଼ିଲି ନାହିଁ । ତା'ପରେ ଦିନେ ଦିନ୍ତବେଳେ ବୁଲି ବୁଲି ହଠାତ୍ ଖିଆଲ ହେଲା ଯେ ଅଜାଣତରେ ମୁଁ ସେଇ ଚକଡ଼ାକ ଜଙ୍ଗଲର ଧାରରେ ଆସି ପହଞ୍ଚିଯାଇଛି । ପୂର୍ବଥର ପରି ସେଦିନ ମଧ୍ୟ ପ୍ରବଳ ବେଗରେ ବତାସ ବୋହୁଥାଏ । ଜଙ୍ଗଲ ଆଡ଼କୁ ପଛକରି ଛିଡ଼ା ହୋଇ କ'ଣ କରିବି ଭାବୁଛି, ହଠାତ୍ ଏତିକି-ବେଳେ 'ଡାଆଣୀର ଡାକ' ଆରମ୍ଭ ହୋଇଗଲା । ଭୟରେ ଦେହ ହାତ ଠକଠକ ଥରୁଥାଏ । ପଳେଇଯିବାର ପ୍ରବଳ ଇଚ୍ଛାକୁ ଦମନ କରି ଶବ୍ଦଟିକୁ କାନଡେରି କିଛି ସମୟ ଛିଡ଼ାହେଲି । ସମାନ ତାଳରେ ଶବ୍ଦଟିର କେତେଥର ପୁନରାବୃତ୍ତି ହେବା ପରେ ସ୍ଥିର କଲି ଯେ ପାଦଚପି-ଚପି ବଣରେ ପଶି 'ଡାଆଣୀ'କୁ ଅନ୍ତତଃ ଥରଟିଏ ଆଖିରେ ଦେଖିବି । 'ଡାଆଣୀର ଡାକ' ଶୁଣିବା ପରେ ମଧ୍ୟ ମୋର କିମ୍ବା ଘରର ଆଉ କାହାରି କିଛି ଅନିଷ୍ଟ ଘଟିନାହିଁ ଭାବି ମନରେ

Digitized by srujanika@gmail.com

ଟିକିଏ ଦମ୍ଭ ଆସିଲା । ମନକୁ ବୋଧ ଦେବାକୁ ଯାଇ ଭାବିଲି ଯେ, 'ଡାଆଣୀ' ଯଦି ଦୈବାତ୍ ମୋତେ ଦେଖିଦିଏ, ହୁଏତ ଏତେ ସାନ ପିଲାଟିଏ ଭାବି କିଛି କ୍ଷତି ନ କରି ମୋତେ ଛାଡ଼ିଦେବ । ଭୟରେ ଛାତି ଦମ୍ ଦମ୍ ହେଉଥାଏ । ପାଦ ଚପି ଚପି ଜଙ୍ଗଲ ଭିତରକୁ ଅଳ୍ପଦୂର ପ୍ରବେଶ କରିବା ପରେ ତାଙ୍କ ସେଙ୍କ 'ଡାଆଣୀ'କୁ ସ୍ୱଚକ୍ଷୁରେ ଦେଖିଲି ।

ଝଡ଼ବତାସରେ ପୂର୍ବରୁ ସେଠାରେ ଉପୁଡ଼ି ପଡ଼ିଥିବା ଏକ ପ୍ରକାଣ୍ଡ ଗଛ ତା'ଠାରୁ ଅଳ୍ପ ସାନ ଆଉ ଗୋଟିଏ ଗଛକୁ ଆଉଜି ଅଟକିଥିଲା । ସାନ ଗଛଟି ତା ଭାରରେ ନଇଁ ପଡ଼ିଥାଏ । ପବନତୋଡ଼ରେ ବଡ଼ଗଛଟି ଟେକି ହୋଇଗଲେ ସାନଗଛଟି ଅଳ୍ପ ସଳଖିଯାଏ । ପବନ ଥମିଯିବାମାତ୍ରେ ବଡ଼ଗଛଟି ପୁଣି ତାକୁ ମାଡ଼ିବସି ନୁଆଁଇ ଦିଏ । ଗଛଦୁଇଟିର ଗଣ୍ଡି ପରସ୍ପରକୁ ଛୁଇଁଥିବା ସ୍ଥାନଟି ଅନବରତ ଘଷିହେବା ଫଳରେ କାଚପରି ଚିକ୍‌କଣ ହୋଇଥାଏ । ଝଡ଼ବତାସରେ ଗଛଦୁଇଟି ଉପରତଳ ଦୋହଲିବା ଦ୍ୱାରା ସେହି ଚିକ୍‌କଣ ସ୍ଥାନ ଦୁଇଟି ଘଷି ହୋଇ 'ଡାଆଣୀର ଡାକ' ସୃଷ୍ଟି ହେଉଥିବା ଲକ୍ଷ୍ୟ କଲି । ନଇଁପଡ଼ିଥିବା ସାନ ଗଛଟିରେ ଚଢ଼ି ତଳକୁ ଅନାଇ ଏ ସବୁ ପରୀକ୍ଷା କରିବା ପରେ ଯାଇ ଶବ୍ଦର ଉତ୍ପତ୍ତି ସମ୍ବନ୍ଧରେ ସନ୍ଦେହ ଦୂର ହେଲା । ସେଥିସହିତ 'ଡାଆଣୀର ଡାକ' ପ୍ରତି ପୂର୍ବର ସେହି ଦୃଢ଼ମୂଳ ଅହେତୁକ ଆତଙ୍କ ମନରୁ ଚିରଦିନ ପାଇଁ ଅପସରିଗଲା ।

ସେହି ଦିନଠାରୁ ଜୀବନସାରା ଜଙ୍ଗଲର ପ୍ରତ୍ୟେକଟି ଅସାଧାରଣ ବା ଅସ୍ୱାଭାବିକ ଘଟଣାକୁ ଅନୁସନ୍ଧାନ କରି ତାର କାରଣ ନିର୍ଣ୍ଣୟ କରିବାକୁ ସର୍ବଦା ପ୍ରୟାସ କରିଛି ଏବଂ ଜଙ୍ଗଲର ନାନା ଅଲୌକିକ ଘଟଣାର ରହସ୍ୟ ମଧ୍ୟ ଭେଦ କରି ପାରିଛି । ସେଥିପାଇଁ ତାଙ୍କ ସେଙ୍କ ନିକଟରେ ମୁଁ କୃତଜ୍ଞ । ଡାଆଣୀ ଚରିଗୁଣୀଙ୍କ ଗପ କହି ମନରେ ଭୟମିଶ୍ରିତ ଅନୁସନ୍ଧିତ୍ସା ସେ ସୃଷ୍ଟି କରି ନ ଥିଲେ, ଏ ଦିଗରେ ମୁଁ କଦାପି ମନୋନିବେଶ କରି ନଥାନ୍ତି ।

ଡିଟେକ୍‌ଟିଭ ଗଳ୍ପ ବା ଉପନ୍ୟାସ କୌଣସି ଅପରାଧମୂଳକ ଘଟଣାରୁ ହିଁ ଆରମ୍ଭ ହୋଇଥାଏ । ଗୋଟିଏ ପରେ ଗୋଟିଏ ଅତି ଲୋମହର୍ଷଣକାରୀ ଘଟଣା ବା ବିବରଣୀମାନ ତନ୍ମୟ ହୋଇ ପଢ଼ିଲାବେଳେ ସେଗୁଡ଼ିକ କାଳ୍ପନିକ କାହାଣୀ ବୋଲି ପାଠକମାନେ ଭୁଲିଯାଆନ୍ତି । ଉପନ୍ୟାସ ଶେଷ ହୁଏ—ଅପରାଧୀ ଧରାପଡ଼ି ଦଣ୍ଡ ପାଏ—ପାଠକପାଠିକା ଦୀର୍ଘଶ୍ୱାସ ଛାଡ଼ି ବହି ବନ୍ଦ କରନ୍ତି ।

ବହୁବର୍ଷ ଧରି ବଣଜଙ୍ଗଲରେ ମୁଁ ଗୋଏନ୍ଦାଗିରି କରି ଆସିଛି । ଜଙ୍ଗଲରେ ମଧ୍ୟ ଏଭଳି ବହୁ ଘଟଣା ଘଟେ ଓ ଧାରାବାହିକ ଅନୁସନ୍ଧାନ ଦ୍ୱାରା ହିଁ ତାହାର ରହସ୍ୟ ଉଦ୍‌ଘାଟନ କରାଯାଏ । ଜଙ୍ଗଲ ସଙ୍କାନ୍ତୀୟ ମୋର ଡିଟେକ୍‌ଟିଭ କାହାଣୀଗୁଡ଼ିକର ଆରମ୍ଭ କିନ୍ତୁ ଭିନ୍ନ ରକମର; ଅଧିକାଂଶ ସମୟରେ କାହାଣୀ ଶେଷରେ ଅପରାଧୀ ମଧ୍ୟ ଦଣ୍ଡ ପାଏନାହିଁ । ସ୍ମୃତିର ଗନ୍ତାଘରୁ ନିଜ ଅନୁଭୂତିର ଏହିପରି ଦୁଇଟି କାହାଣୀ ଉଦ୍ଧାର କରି ଏହିଠାରେ ଉପସ୍ଥାପନ କରୁଛି ।

Digitized by srujanika@gmail.com

ଥରେ କାଲାହାଣ୍ଡୀଠାରୁ ଦଶମାଇଲ୍ ଦୂରରେ ଜଙ୍ଗଲ ବଗିଚାର ଗୋଟିଏ ବଙ୍ଗଳାରେ ଡେରା ପକାଇଥିଲି । ସକାଳୁ ଆମ ଲୋକଙ୍କ ପାଇଁ ବଣକୁକୁଡ଼ା ବା ମୟୂରଟିଏ ମାରିବା ଉଦ୍ଦେଶ୍ୟରେ ବନ୍ଧୁକ ଧରି ବଙ୍ଗଳାରୁ ବାହାରି ସଡ଼କରେ ଚାଲିଲି । ସଡ଼କ ବାଁକଡ଼ରେ ଥିବା ଘଞ୍ଚ ଜଙ୍ଗଲଭରି ଅଲ୍ପ ଉଚ୍ଚ ପାହାଡ଼ଟିରେ ନାନାପ୍ରକାର ଶିକାର ମିଳନ୍ତି । ଡାହାଣ ପାଖେ ଅଳ୍ପ ଓସାର ଚେନାଏ ବୁଦାଳିଆ ଜଙ୍ଗଲ ଆରପାଖରୁ ଚାଷଜମି ଆରମ୍ଭ । ସକାଳୁ ସକାଳୁ ବିଲବାଡ଼ରେ ଲୋକଙ୍କ ଅତଯାତ ଆରମ୍ଭ ହୋଇଥାଏ । ଫସଲ ଖାଉଥିବା ଚଢ଼େଇ-ଗୁଡ଼ିକ ବିଲରୁ ହୁରୁଡ଼ି ଆସି ରାସ୍ତା ଉପରଦେଇ ଉଡ଼ିଯାଉଥାଆନ୍ତି । ଦୁର୍ଯୋଗକୁ ସେଦିନ ମୁଁ ସ୍ମୋଟ ବୋରର ବନ୍ଧୁକଟିଏ ଧରି ବାହାରିଥିଲି । ଚଢ଼େଇ ଯେତେ ଉଚ୍ଚରେ ଉଡ଼ୁଥାଆନ୍ତି, ତାହା ବନ୍ଧୁକର କ୍ଷେପଣସୀମା ବାହାରେ । ଚାଲି ଚାଲି ବିଲମାଳର ଶେଷ ମୁଣ୍ଡରେ ଯାଇ ପହଞ୍ଚିବା ଭିତରେ ବନ୍ଧୁକ ଚଳାଇବା ପାଇଁ ଥରଟିଏ ମଧ୍ୟ ସୁଯୋଗ ଜୁଟିଲା ନାହିଁ ।

ଚଢ଼େଇଙ୍କ ପ୍ରତି ନଜର ଦେଇ ବାଟ ଚାଲୁଥିଲେ ମଧ୍ୟ ସଡ଼କ ଉପରେ ମଧ୍ୟ ଦୃଷ୍ଟି ରଖୁଥିଲି । ଶେଷରେ ଚଢ଼େଇଟିଏ ହାସଲ କରିବାର ଆଶା ଛାଡ଼ି କେବଳ ସଡ଼କ ପ୍ରତି ନଜର ଦେଲି । ସଡ଼କକୁ ଅନାଇ କେତେଗଜ ନ ଯାଉଣୁ ଦେଖିଲି ଯେ ବାଁ ପାଖ ପାହାଡ଼ରୁ ଗଡ଼ିଥିବା ଗୋଟିଏ ବଡ଼ ପୁରୁଷ ଚିତାବାଘର ପାଦଚିହ୍ନଦାଗ ଧୂଳିରେ ଛପିହୋଇ ପଡ଼ିଛି । ପାହାଡ଼ରୁ ଗଡ଼ି ସଡ଼କ ବାଁ କଡ଼ରେ କିଛି ଦୂର ଗଲାପରେ ଚିତାବାଘ ବାଟ ଭାଙ୍ଗି ସଡ଼କ ଡାହାଣ କଡ଼ର ଗୋଟିଏ ବୁଦାମୂଳେ କିଛି ସମୟ ଶୋଇଥିଲା । ତା'ପରେ ସେଠାରୁ ଉଠିଯାଇ କୋଡ଼ିଏ ଗଜ ଆଗରେ ଆଉ ଗୋଟିଏ ବୁଦାମୂଳେ ସେ ଲେପଟାଇ ପଡ଼ିଥିବା ଦେଖି ବୁଝିଗଲି ଯେ ସମ୍ଭବତଃ କୌଣସି ଜନ୍ତୁ ଉପରେ ନଜର ରଖି ସେ ଛପି ଛପି ଆଗେଇଛି । ଜନ୍ତୁଟି ସଡ଼କ ଉପରେ ନ ଥିଲା; ତାହା ହୋଇଥିଲେ ଚିତାବାଘ ସଡ଼କକୁ ନ ଉଠି ଡାହାଣ କଡ଼ର ବୁଦାବଣରେ ପଶି ଆଗେଇଥାଆନ୍ତା । ଚିତାବାଘକୁ ଉଢ଼ାଳ ଦେଇଥିବା ବୁଦା ଦୁଇଟି ପଛରେ ନଜେ ଅଣ୍ଠେଇପଡ଼ି ଦେଖିଲି ଯେ, ସେ ଦୁଇ ଜାଗାରୁ ବୁଦାଳିଆ ଜଙ୍ଗଲ ଓ ବିଲବାଡ଼ର ଶେଷ ମୁଣ୍ଡରେ ଖୋଲା ପଡ଼ିଆଟି କେବଳ ସ୍ପଷ୍ଟ ଦେଖା-ଯାଉଛି । ଚିତାବାଘ ଯେଉଁ ଜନ୍ତୁଟିକୁ ଛକିଥିଲା, ସେ ସେହି ପଡ଼ିଆରେ ହିଁ ଥିବ ବୋଲି ଧାରଣା କଲି ।

ପଚାଶ ଗଜ ଆଗକୁ ବୁଦାଳିଆ ଜଙ୍ଗଲଟି ଶେଷ ହେଲା । ସେଠାରେ ରାସ୍ତାକଡ଼ରୁ ଅଗଭୀର ଝାଳଟିଏ ଆରମ୍ଭ ହୋଇ ପଡ଼ିଆଯାଏ ଲମ୍ବିଥାଏ । ଜଙ୍ଗଲ ଶେଷ ମୁଣ୍ଡରେ

Digitized by srujanika@gmail.com

ଚିତାବାଘ ବାରମ୍ବାର ସ୍ଥାନ ପରିବର୍ତ୍ତନ କରି ପଡ଼ିଆର ଗୋଟିଏ ନିର୍ଦ୍ଦିଷ୍ଟ ଅଂଶ ଉପରେ ନଜର ରଖି ଆଗେଇଥିଲା । ତା'ପରେ ସଡ଼କ କଡ଼ ଖାଲ ଭିତରକୁ ଗଡ଼ି ସେ ପଡ଼ିଆ ଆଡ଼କୁ ଅତି ସନ୍ତର୍ପଣରେ ଅଗେଇଲା । ବାଟସାରା ଜାଗାଜାଗାଏ ଲେପଟାଇ ପଡ଼ି ସେ ଅନବରତ ପଡ଼ିଆର ସେହି ଗୋଟିଏ ଅଂଶ ଉପରେ ନଜର ରଖିଥିବା ଲକ୍ଷ୍ୟ କଲି ।

ବର୍ଷାରେ ସଡ଼କରୁ ଧୂଳିବାଲି ଧୋଇ ହୋଇ ଖାଲର ପ୍ରାୟ ତିରିଶ ଗଜ ଭିତରକୁ ମାଡ଼ିଯାଇଥାଏ; ତା'ପରେ ଖାଲ ଭିତର ସାରା କେବଳ ଗ୍ରେଟ ଗ୍ରେଟ ବୁଦାଳିଆ ଘାସ । ଘାସରେ ଚିତାବାଘ ପଞ୍ଝାର ଧୂଳିମିଶା ଛାପ ପଡ଼ିଥିବାରୁ ତାର ଗତିପଥ ସହଜରେ ଠଉରେଇ ପାରିଲି । ଏସବୁ ଅଞ୍ଚଳରେ ସନ୍ଧ୍ୟା ସାତଟା ବେଳକୁ କାକର ପଡ଼େ । ଚିତାବାଘ ପଞ୍ଝାର ଧୂଳି କାକର ଯୋଗୁଁ ଘାସରେ ଲାଗିଥିବା ଦେଖି ଜାଣିଲି ଯେ ଚିତାବାଘ ସନ୍ଧ୍ୟା ସାତଟା ପରେହିଁ ସେବାଟେ ଯାଇଛି । ଘାସ ଚକଡ଼ାକ ଅରପାଖରେ ଖାଲ ଶେଷ ଆଡ଼କୁ ସରୁ ବାଲି ପ୍ରସ୍ତେ ବିସ୍ତୃତ ହୋଇ ପଡ଼ିଥିଲା । ବାଲିରେ ପାଦୁଲଗ୍ନପ ନ ଦେଖି ବୁଝିଗଲି ଯେ ଚିତାବାଘ ସେଆଡ଼େ ନ ଯାଇ ସେହିଠାରେ ହିଁ ଖାଲରୁ ବାହାରିଯାଇଛି ।

ସଦାରେ ପାଦୁଲଦାଗ ଅଭ୍ଦ ବାରହେଲା ନାହିଁ । ତେବେ ଖାଲରୁ ବାହାରିବାବେଳେ ଚିତାବାଘ ଅଳ୍ପ ଦୂରରେ ଥିବା ଫୁଟେ ଦୁଇଫୁଟ ଉଚ୍ଚ କେଇ ବୁଦା ଟାଉଁସିଆ ଘାସ ଆଡ଼କୁ ମୁହାଁଇଥିଲା । ସେଆଡ଼େ ସେ ଯାଇଥିବ ବୋଲି ଅନୁମାନ କରି ମାତ୍ର ଦଶଗଜ ଆଗେଇବା ପରେ ଭୂଇଁରେ ଜାଗାଏ ସମ୍ବରର ଖୁରାଦାଗ ଗଭୀରରେ ଖୋଳହୋଇଯାଇଥିବା ଦେଖିଲି । ସେଠାରୁ ତିରିଶ ଗଜ ଯାଏ ସମାନ ବ୍ୟବଧାନରେ କେତୋଟି ଜାଗାରେ ସମ୍ବରର ସ୍ୱରେଟି ଯାକ ଖୁରା ଭୂଇଁରେ ସେତେ ଗଭୀରରେ ଦବିଯାଇଥିଲା, ସେଥିରୁ ଜଣାପଡ଼ିଲା ଯେ ସମ୍ବରଟି ଧାଇଁ ଧାଇଁ ଜାଗାଜାଗାଏ ହଠାତ୍ ଅଟକିଯାଇ ଚିତାବାଘକୁ ପିଠିରୁ ଖସାଇ ଦେବାକୁ ଚେଷ୍ଟା କରିଛି । ତିରିଶ ଗଜଯାଏ ଏହିପରି ଚେଷ୍ଟା ଚଳାଇରଖି ବିଫଳ ହେବାପରେ ସମ୍ବରଟି ହଠାତ୍ ବାଁକୁ ବୁଲି ଖାଲ ଆରପାଖ ଗୋଟିଏ ବରଗଛ ଆଡ଼କୁ ଧାଇଁଥିଲା । ଭୂଇଁରୁ ପ୍ରାୟ ଚାରିଫୁଟ ଉଚ୍ଚରେ ଗଛଗଣ୍ଡିରେ ସମ୍ବରର ଲୁମ ଓ ଝିଲକାଏ ରକ୍ତ ଲାଗିଥିବା ଦେଖିଲି ।

ଶିକାର କ୍ଷେତ୍ରରେ ଏହି ଚିହ୍ନଗୁଡ଼ିକୁ ଲକ୍ଷ୍ୟ କରି ଘଟଣାବଳୀର କ୍ରମବିକାଶ ପର୍ଯ୍ୟାୟକୁ କ୍ରମେ ଅନୁସରଣ କରିବା ସମ୍ଭବ ହେଲା । ସମ୍ବରଟିକୁ ଖୋଲା ପଡ଼ିଆରେ ଚରୁଥିବା ଦେଖି ଚିତାବାଘ ପାହାଡ଼ରୁ ଗଡ଼ିଲା ଏବଂ ଲୁଚି ଲୁଚି ତା ଆଡ଼କୁ ଆଗେଇବା ଭିତରେ ଜାଗା-ଜାଗାଏ ନିଜକୁ ଗୋପନ କରି ସମ୍ବର ଓ ତା ଆଖପାଖ ସ୍ଥାନଗୁଡ଼ିକୁ ଯତ୍ନର ସହ ପରୀକ୍ଷା କରିନେଲା । ତା'ପରେ ଅତି ସନ୍ତର୍ପଣରେ ଆଗେଇ ଯାଇ ଘାସବୁଦା ଉହାଡ଼ରୁ ସମ୍ବରପିଠିକୁ ସେ କୁଦିଲା । ସମ୍ବରଟିକୁ ସେହିଠାରେ ମାରିଦେଇଥିଲେ ମଢ଼କୁ ଲୁଚାଇବା ଭଳି ଆଢ଼ୁଆଳି ତାକୁ ମିଳି ନ ଥାନ୍ତା ଓ ପ୍ରାପ୍ତବୟସ୍କା ପ୍ରକାଣ୍ଡ ମାଈ ସମ୍ବରଟିକୁ ଜଙ୍ଗଲ ପର୍ଯ୍ୟନ୍ତ ଘୋଷାରି ନେବା ମଧ୍ୟ ଦୁଷ୍କର ହୋଇଥାଆନ୍ତା । ଏଣେ ମଲା ସମ୍ବରଟିକୁ ଖୋଲା ମେଲରେ ପକାଇଦେଇଥିଲେ ଲୁଣ୍ଠନକାରୀ ପକ୍ଷୀମାନେ ତାକୁ କଦାପି ଛାଡ଼ି ନ ଥାନ୍ତେ । ତେଣୁ

Digitized by srujanika@gmail.com

ପୁଟାପର ବଗ୍ଘର କରି ସମ୍ବର ପିଠିରେ ଦୃଢ଼ଭାବେ ଆସ୍ଥାନ ଜମାଇବା ପରେ ଚିତାବାଘ ତାକୁ ଅଡ଼ାଇଲା ପରି ଜଙ୍ଗଲ ଆଡ଼କୁ ଚଳାଇନେଲା । ସମ୍ବର ଚିତାବାଘର କୌଶଳ ବୁଝି ନ ପାରି ଗଛଗଣ୍ଡିରେ ବାଡ଼େଇ ତାକୁ ଖସାଇଦେବା ଉଦ୍ଦେଶ୍ୟରେ ପ୍ରଥମେ ପୂର୍ବୋକ୍ତ ଗଛ ଓ ତା'ପରେ ଦୁଇଶହ ଗଜ ଦୂର ଜଙ୍ଗଲ ଆଡ଼କୁ ଧାଇଁଲା । ଆତ୍ମରକ୍ଷାପାଇଁ ସମ୍ବରର ଏଭଳି ପ୍ରୟାସ ଚିତାବାଘକୁ ହିଁ ସୁହାଇଲା । ବଣ ଧାରରୁ କୋଡ଼ିଏ ଗଜ ଭିତରେ ମଣିଷ ଓ ଶାଗୁଣାଙ୍କ ଦୃଷ୍ଟିରୁ ଅନ୍ତରାଳ ହେବାପରେ ସ୍ଥାନଟି ବାଛି ଚିତାବାଘ ସମ୍ବର ପିଠିରେ ନଖ ବସାଇଦେଲା ଓ ତଣ୍ଟି ଚୂନିଧରି ତଳକୁ କୁଦିବା ଦ୍ୱାରା ସମ୍ବରଟିର ବେକ ଭାଙ୍ଗି ତାକୁ ଭୂଇଁରେ ଲେଟାଇଦେଲା ।

ମାଂସ ବକଟେ ଖାଇବା ପରେ ଚିତାବାଘ ପାଖରେ ଜାଗାଏ ଛପି ରହିଥିଲା । ସେଦିନ ଚିତାବାଘ ମାରିବା ପାଇଁ ମୋର ଅଭିପ୍ରାୟ ନ ଥିଲା । ତା'ପରେ ଚଢ଼େଇ ଶିକାର ପାଇଁ ଆଣିଥିବା ୦.୨୮ ବୋର୍ ବନ୍ଧୁକ ଓ ଅଠନମ୍ବର ଛର୍‌ରାରେ ଚିତାବାଘ ମାରିବାକୁ ଚେଷ୍ଟା କରିବା ଭଳି ଦୁଃସାହସ ମୁଁ କଦାପି କରି ନ ଥାନ୍ତି । ତେବେ ମୋଠାରୁ ଯେ ବିପଦର କୌଣସି ଆଶଙ୍କା ନାହିଁ ତା ଚିତାବାଘ ବା ଜାଣିବ କପରି ? ତେଣୁ ବାଟ ବାରି ବାରି ମୁଁ ତା ଶିକାର ଆଡ଼କୁ ଆଗେଇଛି ଦେଖି ସେ ନିଃଶବ୍ଦରେ ସେଠାରୁ ଅପସରିଗଲା ।

ଚିତାବାଘ ଶିକାର ପିଠିରେ ସବାର ହୋଇ ଆଡ଼ୁଆଳ ହେବାଭଳି ଗହଳ ଜଙ୍ଗଲ ଆଡ଼କୁ ତାକୁ ଚଳାଇନେବାର ଏପରି ବହୁ ଘଟଣା ମୋତେ ଜଣାଅଛି । କିନ୍ତୁ ମହାବଳ ବାଘ ସେପରି କରିବାର ମାତ୍ର ଗୋଟିଏ ଦୃଷ୍ଟାନ୍ତ ମୁଁ ଜାଣେ ।

ତରାଇ ଅଞ୍ଚଳର ଘଗନ୍ତପ୍ରସାରୀ ତୃଣଭୂମିମାନଙ୍କରେ ସ୍ଥାନେ ସ୍ଥାନେ ଗୋଶାଳା କରି ଏଠାକାର ଲୋକେ ଗାଈ ମଇଁଷି ପାଳନ୍ତି । ଥରେ କାଲାଦୁଙ୍ଗୀରୁ ବାର ମାଇଲ ଦୂର 'ମଙ୍ଗଲିଆ ଖଟ୍ଟା' ନାମକ ଏକ ଗୋଶାଳା ନିକଟରେ ଆମର ଡେରା ପଡ଼ିଥିଲା । ଦିନେ ସକାଳୁ ସକାଳୁ ଗୋଟିଏ ଚିତାବାଘର ଚଳଚ୍ଚିତ୍ର ଉଠାଇବାକୁ ବାହାରିଥିଲି । ଫେରିବା ବାଟରେ ଜାଗାଏ କଅଁଳ ଘାସଭରା ଗୋଟିଏ ପଡ଼ିଆରେ ପ୍ରାୟ ଦେଢ଼ଶହଟି ମଇଁଷି ଚରୁଥିବା ଦେଖିଲି । ପଡ଼ିଆ ମଝିଦେଇ ଗୋଟିଏ ବାଲିଭରା ନାଳ ଭିତରେ ପାଣିଧାରେ ବହୁଥାଏ । ପାଣିପାଖ ଓଦା ବାଲିରେ ମହାବଳ ବାଘବାଘୁଣୀଙ୍କ ତାଜା ପାଦୁଲିଦାଗ ପଡ଼ିଥିବା ଲକ୍ଷ୍ୟ କରିଥିଲି ।

Digitized by srujanika@gmail.com

ଡେଭ୍‌ଙ୍କୁ ବଳମ୍ବରେ ଫେର ଜଳଖିଆ କରୁଛୁ, ଏତକବେଳେ ଦୂରରୁ ପାଟିଗୁଣ୍ଡ ଓ ଟିଣବାଡ଼ିଆ ସହିତ ମଇଁଷିଙ୍କ ହମ୍ବାରଡ଼ି ଶୁଣିବାକୁ ପାଇଲୁ । ସବୁ ଶବ୍ଦ ଭିତରୁ ନିର୍ଦ୍ଦିଷ୍ଟ ଗୋଟିଏ ମଇଁଷି ଅତି ବିକଳ ହୋଇ ହମ୍ବାଳୁଥିବା ସ୍ପଷ୍ଟ ବାରିହୋଇ ପଡ଼ୁଥାଏ । କିଛି ସମୟ ଲଗିରହିବା ପରେ ଶବ୍ଦ ସବୁ ହଠାତ୍ ଥମିଗଲା; ଠିକ୍ ତା ପରେ ପରେ ଦୁଇଥର ବନ୍ଧୁକ ଆବାଜ ମଧ୍ୟ ଶୁଣାଗଲା । ଜଳଖିଆ ସାରି ଏହାର କାରଣ ଅନୁସନ୍ଧାନ କରିବାକୁ ବାହାରିଲୁ । ଗୋଶାଳାରେ ପହଞ୍ଚି ଦେଖିଲୁ ଯେ ଜଣେ ବନ୍ଧୁକଧାରୀ ଇଉରୋପୀୟଙ୍କ ସମେତ ଗୁଡ଼ିଏ ଲୋକ ଗୋଟିଏ ମଲା ମଇଁଷିକୁ ଘେରି ଛିଡ଼ାହୋଇଛନ୍ତି । ଇଞ୍ଜିନିନଗରର "ଇଣ୍ଡିଆନ ଉଡ୍‌ପ୍ରଡକ୍ଟସ୍" କମ୍ପାନୀର ଜଣେ କର୍ମଚାରୀ ବୋଲି ନିଜର ପରିଚୟ ଦେଇ ଇଉରୋପୀୟ ଜଣକ କହିଲେ ଯେ ଅଳ୍ପ ସମୟ ତଳେ ମଇଁଷିଆଳଙ୍କ ସହିତ କଥାବାର୍ତ୍ତା ହେଉ ହେଉ ଦୂରରୁ ମଇଁଷିଙ୍କ ହମ୍ବାରଡ଼ି ଶୁଣାଗଲା । କ୍ରମେ ଗୋଟିଏ ନିର୍ଦ୍ଦିଷ୍ଟ ମଇଁଷିର ହମ୍ବାଳ ସହିତ ମହାବଳ ବାଘର ଅନୁଚ୍ଚ କ୍ରୁଦ୍ଧ ଗର୍ଜ୍ଜନ ମଧ୍ୟ ସେମାନେ ଶୁଣିବାକୁ ପାଇଲେ । ମଇଁଷିଗୋଠକ ଦଉଡ଼ିମାରି ଗୋଶାଳାରେ ପହଞ୍ଚିବା ପରେ ଦେଖାଗଲା ଯେ ସେଥିରୁ ଗୋଟିଏ ଅତି ଶୋଚନୀୟ ଭାବେ କ୍ଷତବିକ୍ଷତ ହୋଇଛି । ମଇଁଷିଟିକୁ ବଞ୍ଚାଇ ହେବ ନାହିଁ ବୋଲି ଜାଣି ଭଦ୍ରଲୋକ ତାକୁ ଶେଷ କରିଦେବାକୁ ମାଲିକଙ୍କ ଅନୁମତି ମାଗିଲେ ଓ ତାହା ମିଳିଲା ପରେ ମୁଣ୍ଡରେ ଗୁଳି ଦୁଇଟି ବସାଇଦେଇ ଯନ୍ତ୍ରଣାରୁ ତାକୁ ମୁକ୍ତି ଦେଲେ ।

ମଲାମଇଁଷିଟି ଅଳ୍ପ ବୟସର ହୃଷ୍ଟପୁଷ୍ଟ ପୋଢ଼ଟିଏ । ଗୋଠ ଭିତରୁ ଅସଲ ସରସ ମଇଁଷିଟି ମରିଗଲା କହି ମଇଁଷାଳମାନେ ଡହଳ ବିକଳ ହେଉଥାଆନ୍ତି । ମଇଁଷି ଯେପରି ଶୋଚନୀୟ ଭାବେ ଆହତ ହୋଇଥିଲା, ମହାବଳ ବାଘ ଶିକାରକୁ ସେପରି କଲବଲ କରି ମାରିବା ପୂର୍ବରୁ କେବେ ଦେଖି ନ ଥିଲି । ମଇଁଷିର ବେକ ଓ ତଣ୍ଟିରେ ନଖ ବା ଦାନ୍ତର ଗୋଟିଏ ହେଲେ କ୍ଷତ ନ ଥିଲା । ବାଘ ତା ପିଠିକୁ କାନ୍ଧ ପ୍ରାୟ ପଗୁଣ ଜାଗାରେ ଅତି ଗଭୀର ଭାବରେ ଚିମ୍ପୁଡ଼ି ଫଡ଼ା ଫଡ଼ା କରି ଚିରିପକାଇଥିଲା । ପିଠି ବିଦାରିଲାବେଳେ ବାଘ କେତେବେଳେ ମଇଁଷି ମୁଣ୍ଡଆଡ଼କୁ ଓ ଅନ୍ୟବେଳେ ତା ଲାଞ୍ଜ ଅଡ଼କୁ ମୁହାଁଇଁଥିଲା । ମଇଁଷି ପିଠିରେ ଥିବା ଭଳରେ ବାଘ ତା ଚୁଲରୁ ପ୍ରାୟ ଦୁଇ କେଜ ଓ ପଛ ଫଡ଼ିଆରୁ ପାଞ୍ଚ ସାତ କେଜ ପର୍ଯ୍ୟନ୍ତ ମାଂସ ଖାଇଦେଇଥିଲା । ମଇଁଷି ପରି ପ୍ରବଳ ବଳବାନ୍ ଜନ୍ତୁଟିଏ ଯନ୍ତ୍ରଣାରେ ଛଟିପିଟି ହେଉଥିଲାବେଳେ ବାଘ ତା ପିଠି ଉପରେ ଅସ୍ଥାନ ଜମାଇ ପୁଳା ପୁଳା ମାଂସ ଛଡ଼ାଇ ଖାଇଥିବା ଦେଖି ଅତି ଆଚମ୍ବିତ ହେଲି ।

ଡେଭ୍‌ରୁ ଏନ୍‌ଫିଲ୍ଡ ରାଇଫଲ୍‌ଟିଏ ନେବାପରେ ମଇଁଷିଙ୍କ ଖୋଜଦାଗ ଅନୁସରଣ କରି ଦେଖିଲି ଯେ ଖୁଟିଲା ନାଳଟିର ଆର ବନ୍ଧଠାରୁ ହିଁ ମଇଁଷିଗୋଠକ ତରକ କରି ଦଉଡ଼ି-ଥିଲେ । ସେଠାରେ କାନ୍ଧେ ଉଞ୍ଚର ବଡ଼ ବଡ଼ ଘାସ ବହଳରେ ମାଡ଼ିଥିବା ଯୋଗୁ ଘଟଣା-ଗୁଡ଼ିକର କ୍ରମ ନିର୍ଣ୍ଣୟ କରିବା ପାଇଁ ଚିହ୍ନ କିଛି ବାରିପାରିଲି ନାହିଁ । ବାଘ ଯେ ମଇଁଷିଟିକୁ ମାରିଦେବାକୁ ପ୍ରୟାସ କରି ନ ଥିଲା—ମଇଁଷି ବେକରେ ନଖ ବା ଦାନ୍ତର ଦାଗ ନଥିବା

Digitized by srujanika@gmail.com

ତାହା ପୁରୁଇ ଦେଉଥାଏ । ମହାବଳ ବାଘ କୁରକର୍ମୀ ଜନ୍ତୁ ନୁହେଁ; ଶିକାରକୁ ଏପରି ନିର୍ଦ୍ଦୟ ଓ ବୀଭତ୍ସ ଭାବେ କ୍ଷତବିକ୍ଷତ କରିବା ଭଳି ସ୍ୱଭାବଗତ ନିଷ୍ଠୁରତା ତ'ଠାରେ ଦେଖାଯାଏ ନାହିଁ । ତେବେ ଶିକାରକୁ ପ୍ରାଣରେ ମାରିଦେବାର ଉଦ୍ଦେଶ୍ୟ ନ ରଖି ବାଘ ତାକୁ କାହିଁକି ଆକ୍ରମଣ କଲା ଏବଂ ଏପରି ଅସ୍ୱାଭାବିକଭାବେ ଜଅନ୍ତା ମଇଁଷିଟିକୁ ଚୂଲା ଚୂଲା କରି କାମୁଡ଼ି ଖାଇଗଲା, ତାହାର କାରଣ ମୁଁ ଏପର୍ଯ୍ୟନ୍ତ ବୁଝିପାରିନାହିଁ ।

ପାହୁଲଦାଗ ଦେଖିଲାବେଳୁ ଜାଣିଥିଲି ଯେ ବାଘ ଓ ବାଘୁଣୀ ଦୁଇଟି ପ୍ରାପ୍ତବୟସ୍କ ଜନ୍ତୁ । ତେଣୁ ଅଳ୍ପ ବୟସର ବାଘଟିଏ ନୂଆକରି ଶିକାର ମାରୁ ମାରୁ ଏଭଳି କାଣ୍ଡ ଘଟାଇ ଥିବାର ପ୍ରଶ୍ନ ମଧ୍ୟ ଉଠୁ ନ ଥିଲା । ତା'ପରେ, ସକାଳ ଦଶଟାବେଳେ ମଇଁଷିଗୋଠରୁ ଗୋଟିକୁ ଆକ୍ରମଣ କରିବା ତ ଦୂରର କଥା—ଅଳ୍ପବୟସର ଅନଭିଜ୍ଞ ବାଘ ମଇଁଷିଗୋଠର ପାଖ ପଶିବାକୁ ସାହସ କରିନଥାନ୍ତା ।

ମୋର ପୁରୁଣା ବନ୍ଧୁ ହ୍ୟାମ୍ପି ଗଲ୍‌ଙ୍କ ପୁଅ ଇଭ୍‌ଲିନ୍‌ର ପ୍ରଜାପତି ସଂଗ୍ରହ କରିବାରେ ଭାରି ସଉକ୍ । ଥରେ କେଇଦିନ ଛୁଟି ନେଇ ସେ ନୈନିତାଲ ଆସିଥିଲା । ଦିନେ କଥା-ପ୍ରସଙ୍ଗରେ ପୌଲ୍‌ଗଡ଼ ନିକଟରେ ଅତି ବିଚିତ୍ରବର୍ଣ୍ଣା ପ୍ରଜାପତିଟିଏ ଦେଖିଥିବା କଥା ତାକୁ କହିଲି । ପ୍ରଜାପତିଟିର ଉପର ଡେଣାରେ ଉଜ୍ଜ୍ୱଳ ନାଲିରଙ୍ଗର ଛୋପାଗୁଡ଼ାଏ । ଇଭ୍‌ଲିନ୍ ସେଭଳି ପ୍ରଜାପତିରୁ ଅନ୍ତତଃ ଗୋଟିଏ ତା ପାଇଁ ଆଣିଦେବାକୁ ବାରମ୍ବାର ନେହୁରା ହୋଇ କହିଲା ।

କେତେ ମାସ ପରେ ପୌଲ୍‌ଗଡ଼ଠାରୁ ତିନମାଇଲ ଦୂର 'ସାନ୍ଦନୀ ଗାଗା' ଅଞ୍ଚଳରେ ଡେରା ପକାଇଥିଲି । ଶହ ଶହ ବର୍ଗମାଇଲ ବିସ୍ତୃତ ସେଠାକାର ଜଙ୍ଗଲ ଭିତରୁ 'ସାନ୍ଦନୀ ଗାଗା' ସ୍ଥାନଟି ପ୍ରାକୃତିକ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ସବୁଠାରୁ ରମଣୀୟ; ସାଧାରଣ ପଶୁଜନ୍ତୁଙ୍କ ଛଡ଼ା ନାନାରକମ ପକ୍ଷୀଙ୍କ ଆବାସସ୍ଥଳୀ ଭାବେ ମଧ୍ୟ ତାହା ସୁପ୍ରସିଦ୍ଧ । ଯେତେବେଳେ ହରିଣଙ୍କ ସହବାସ ଋତୁ; ପ୍ରାପ୍ତବୟସ୍କ ଶିଙ୍ଗାଳ ହରିଣଙ୍କ ଭିତରେ ବରାବର ଖଣ୍ଡଯୁଦ୍ଧ ଲାଗୁଥାଏ । ହରିଣ ଲଢ଼େଇର ଚଳଚ୍ଚିତ୍ର ଉଠାଇବା ଉଦ୍ଦେଶ୍ୟରେ ମୁଁ ସେଠାକୁ ଯାଇଥିଲି । ସେଠାକାର ରହଣି ଭିତରେ ଦିନେ ବେଳାବେଳି ଜଳଖିଆ ଖାଇ ପ୍ରଜାପତି ଧରିବାର ସରୁ ଜାଲଟା ନେଇ ସକାଳୁ ବାହାରିପଡ଼ିଲି । ଡେରାରୁ ଶହେଗଜ ଛଡ଼ାରେ ଯାଇଥିବା ଜଙ୍ଗଲ ସଡ଼କଟି କାଲାଦୁଙ୍ଗୀ ସହିତ ପୌଲ୍‌ଗଡ଼କୁ ସଂଯୋଗ କରେ । ଡେରାରୁ ମାଇଲିଏ ଆଗକୁ ସଡ଼କ କଡ଼ରେ ପଙ୍କଭରା ଗୋଟିଏ ଅଗଭୀର ଚଉକା । ହମ୍ବିରପଲ ପଙ୍କରେ ଲେଟିବା ପାଇଁ

Digitized by srujanika@gmail.com

ଚଦକାଟିକୁ ବରାବର ବ୍ୟବହାର କରନ୍ତି । ମୁଁ ଖୋଜୁଥିବା ପ୍ରଜାପତି ସେଇ ଚଦକା ପାଖ-ଆଖରେ କେଉଁଠି ମିଳିଯିବ ବୋଲି ଆଶା ରଖି ସେହିଆଡ଼େ ମୁହାଁଇଲି ।

ସଡ଼କ ଦୁଇପାଖ ଗହଳ ଜଙ୍ଗଲରେ ନାନା ରକମ ଜନ୍ତୁ ମିଳନ୍ତି । ସଡ଼କର ଟାଣ ଟାକଟା ମାଟି ଉପରେ ବାଲୁକା ଧୂଳି ପ୍ରସ୍ତେ ବସିଥିବା ଯୋଗୁ ବାଟରେ ଯାତାୟତ କରିଥିବା ଜନ୍ତୁଙ୍କର ଖୋଜଦାଗ ସହଜରେ ବାରି ହେଲା । ଜନ୍ତୁଙ୍କୁ ଚହ୍ନାଟ କରିବା ବା ସେମାନଙ୍କ ଗତିବିଧି ସମ୍ବନ୍ଧରେ ଧାରଣା କରିବା ପାଇଁ ପ୍ରତି ଖୋଜଦାଗ ପାଖରେ ଅଟକିବାକୁ ପଡ଼େ-ନାହିଁ; ସେଥିରେ ଅଭିଜ୍ଞତା ଥିଲେ ଆଖିପକାଇବା ମାତ୍ରେ ସେସବୁ ତଥ୍ୟର ସାରାଂଶ ଅବଚେତନ ମନରେ ଆପେ ଆପେ ଲିପିବଦ୍ଧ ହୋଇଯାଏ । ତେଣୁବାରୁ ବାହାରି ଯେଉଁଠାରେ ସଡ଼କକୁ ଉଠିଥିଲି, ସେଠାରୁ ଅଳ୍ପ ଆଗରେ ଝିଙ୍କଟିଏ ସଡ଼କ ଉପରକୁ ଆସି ହଠାତ୍ କାହିଁକି ଫେରିପଡ଼ି ତା ଆସିବା ବାଟରେ ବାହୁଡ଼ି ଯାଇଥିଲା । ଝିଙ୍କଟି ତରତର ହୋଇ ଫେରି ପଳାଇବାର କାରଣ ଟିକିଏ ଆଗକୁ ଗଲା ପରେ ଜଣାପଡ଼ିଲା । ଠିକ୍ ସେହି ସମୟରେ ଭାଲୁଟିଏ ଡାହାଣପାଖ ଜଙ୍ଗଲରୁ ବାହାରି ସଡ଼କ ପାରହୋଇ ବାଁ ପାଖ ଜଙ୍ଗଲକୁ ଯାଇଥିଲା । ସେପାଖ ଜଙ୍ଗଲରୁ ଦଳେ ବଣଘୁଷୁରି ଓ ତା'ପରେ ହରିଣପଲେ ଭାଲୁକୁ ଦେଖି ସଡ଼କ ପାରି ହୋଇ ଆରପାଖ ଜଙ୍ଗଲକୁ ପଳାଇଥିଲେ । ଟିକିଏ ଆଗକୁ ସେଇ ପାଖ ଜଙ୍ଗଲରୁ ପୁରୁଷ ସମ୍ବରଟିଏ ବାହାରିଆସି ସଡ଼କରେ ପ୍ରାୟ ପଚାଶ ଗଜ ବାଟ ଚାଲିଥିଲା । ବଣକୁ ବାହୁଡ଼ିବା ପୂର୍ବରୁ ସମ୍ବରଟି ସଡ଼କ କଡ଼ ଗୋଟିଏ ବୁଦାରୁ ପତ୍ର ଝୁଣ୍ଟି ଖାଇଥିବା ଓ ଗୋଟିଏ ଗଛରେ ଶିଙ୍ଘ ଘଷିଥିବା ଲକ୍ଷ୍ୟ କଲି । ତା'ପରେ ଚଉଶିଙ୍ଘା ହରିଣୀଟିଏ ତାର କଅଁଳ ଛୁଆଟିକୁ ସଙ୍ଗରେ ନେଇ ରାସ୍ତାକୁ ଉଠିଥିଲା । ଛୁଆଟିର ଖୁରାଗୁଡ଼ିକ ଆକାରରେ ଛେଳି ଛୁଆର ନଖ ସହିତ ସମାନ । ହରିଣଛୁଆଟି ମନଖୁସିରେ ରାସ୍ତାରେ ନାଚ କୁଦ ଖେଳୁ ଖେଳୁ ତା ମା' ହଠାତ୍ ତରକିଗଲା ଓ ଛୁଆଟିକୁ ନେଇ ଫେରିପଡ଼ି ସଡ଼କରେ କିଛି ବାଟ ପଛକୁ ଧାଇଁଲା ପରେ ଜଙ୍ଗଲରେ ପଶିଗଲା । ଆଗକୁ ରାସ୍ତାର ମୋଡ଼ଟିଏ । ମୋଡ଼ ପାଖରେ ପହଞ୍ଚି ହରିଣୀ ତରକିବାର କାରଣ ଖୋଜ ପାଇଲି । ଆରପାଖରୁ ଗଧିଆ ବାଘଟିଏ ଠିକ ସେତିକି ବେଳେ ଛପି ଛପି ମୋଡ଼ଯାଏ ଆସି ସେହିଠାରୁ ପୁଣି ବାହୁଡ଼ିଯାଇଥିଲା ।

ଅଧମାଇଲ୍ ଆଗକୁ ଜାଗାଏ ପାହାଡ଼ କଟାହୋଇ ସଡ଼କଟି ସେହି ବାଟେ ଯାଇଥାଏ । ସେଠାରେ ପଥର ଉପରେ ଜନ୍ତୁଙ୍କ ପାହୁଲ ଦାଗ ବାରିହେଲା ନାହିଁ । ରାସ୍ତାକୁ ଅନାଇ ବାଟ ଚାଲୁ ଚାଲୁ ସଡ଼କର ଗୋଟିଏ ଧାରରୁ ଆର ଧାରଯାଏ ଗାରଟିଏ ପଡ଼ିଥିବା ଦେଖିଲି । ସଡ଼କ ଡାହାଣ ଧାରରେ ପାହାଡ଼ କାଟେଣି ତଳୁ ଗାରଟିର ଗୋଟିଏ ମୁଣ୍ଡ ଛଅଇଞ୍ଚ ଓସାର ଓ ଦୁଇଇଞ୍ଚ ଗହୀରରେ ଶିଅରି ପରି ଖୋଳିହୋଇ ଯାଇଥିଲା । ଖୋଳା-ମାଟିତକ ବାଁ ପାଖକୁ ଛିଞ୍ଚାଡ଼ି ହୋଇ ପଡ଼ିଥିବାରୁ ଗାରଟି ସେହିଠାରୁ ଆରମ୍ଭ ହୋଇଛି ବୋଲି ସ୍ଥିର କଲି । ଲୁହାମୁନ ଥିବା ଲଠିରେ ସଡ଼କରେ ସେପରି ଗାର କଟାଯାଇପାରେ ତେବେ ଗତ ବାର ଘଣ୍ଟା ଭିତରେ ଲୋକ କେହି ସଡ଼କରେ ଯାଇଥିଲେ ଧୂଳିରେ ତାଙ୍କ

Digitized by srujanika@gmail.com

ପାଦଚହ୍ନ ନିଶ୍ଚୟ ଲୁପିହୋଇ ପଡ଼ିଥାଆନ୍ତା । ତା'ପରେ, ବାଟୋଇ କେହି ଲଠି ଘୋଷାର ଘୋଷାର ବାଟ ଚାଲିଥିଲେ ଗାରଟି ସଡ଼କକୁ ଅଡ଼ବାଗରେ ନ କାଟି ସଡ଼କ ସହିତ ସମାନ୍ତର ଭାବେ ଆଗକୁ ଲମ୍ବିଥାଆନ୍ତା ।

ସଡ଼କ ସେଠାରେ ପ୍ରାୟ ଦଶଫୁଟ ଓସାର । ଡ଼ାହାଣ ପାଖେ ପାହାଡ଼ର ଦଶଫୁଟ ଉଚ୍ଚ କାଟେଣି; ବାଁ ଧାରରୁ ପାହାଡ଼ କଡ଼ ଢଳିଆଭାବେ ଗଡ଼ିଯାଇଛି ଅନେକ ତଳକୁ । ଗାରଟି ପାହାଡ଼ କାଟେଣି ତଳୁ ସଡ଼କ ବାଁ କଡ଼କୁ ପଡ଼ିଥିଲା । ମଣିଷ କେହି ସେ ଗାରଟିକୁ ଟାଣି ନ ଥିବା ଜାଣିଥିଲି; ପରୀକ୍ଷା ପରେ ନିଶ୍ଚିତ ଧାରଣା ହେଲା ଯେ ସମ୍ବର ବା ହରିଣର ଶିଙ୍ଘଦ୍ୱାରା ହିଁ ତାହା କଟା ହୋଇଛି । ହରିଣ ବା ସମ୍ବର ଦଶଫୁଟ ଉଚ୍ଚ ପାହାଡ଼ କାଟେଣିର ସଡ଼କକୁ ଡେଇଁ ଡେଇଁ ଗୋଡ଼ ଖସି ଭୂଇଁରେ ପଡ଼ିଯାଇଥିଲେ ଖୋଳାଦାଗ ପାଖରେ ଖୁରାଦାଗ ପଡ଼ିଥାଆନ୍ତା ନିଶ୍ଚୟ । ଗାରଟି ସମାନଭାବେ ଟଣାହୋଇଥିବା ଓ ପାଖରେ କେଉଁଠି ଖୁରାଦାଗ ନ ଥିବା ଦେଖି ସନ୍ଦେହ କଲି ଯେ ମହାବଳ ବାଘ ମଲା ସମ୍ବର ବା ହରିଣଟିଏ କାମୁଡ଼ି ଧରି ପାହାଡ଼ କାଟେଣିରୁ ସଡକକୁ ଡେଇଁଛି । କେବଳ ଶିଙ୍ଘ ଛଡ଼ା ମଲା ଜନ୍ତୁଟିର ଦେହର ଅନ୍ୟକୌଣସି ଅଂଶ ଭୂଇଁରେ ଘୋଷାରି ନଥିବାରେ ଅଶ୍ଚର୍ଯ୍ୟ ହେଲି ନାହିଁ । ଶିକାରକୁ ଭୂଇଁରେ ଘୋଷାରିନେଲେ ଭାଲୁ, ଗଧିଆବାଘ ଓ ବିଲୁଆ ଆଦି ଲୁଣ୍ଠନକାରୀମାନେ ଗନ୍ଧ ବାରି ତାକୁ ଅନୁସରଣ କରନ୍ତି । ତେଣୁ ମହାବଳ ବା ଚିତାବାଘ ଶିକାରକୁ ଭୂଇଁରେ ଘୋଷାରନ୍ତି ନାହିଁ । ବିଶେଷକରି ସଡ଼କ ଉପରେ ଘୋଷାରୁଥିବା ଜନ୍ତୁର ଦାଗ ଓ ଦେହରୁ ଗନ୍ଧ ସ୍ପଷ୍ଟ ଭାବରେ ବାରିହେଉଥିବାରୁ ସଡ଼କ ପାର ହେଲାବେଳେ ବାଘ ଶିକାରକୁ ଉପରକୁ ଟେକି ଧରିବା ପାଇଁ ବିଶେଷ ତତ୍ପର ହୋଇଥାଏ ।

ସିଦ୍ଧାନ୍ତ ସପକ୍ଷରେ ପ୍ରମାଣ ଖୋଜିବା ପାଇଁ ସଡ଼କ ବାଁ ପାଖ ପାହାଡ଼ ଗଡ଼ାଣିଟିକୁ ପରୀକ୍ଷା କଲି । ଭୂଇଁରେ ସେଠାରେ ଘୋଷରାଦାଗ ଦେଖିଲି ନାହିଁ । ଗଡ଼ାଣିରେ ସଡ଼କ-ଧାରର ପ୍ରାୟ କୋଡ଼ିଏ ଗଜ ତଳକୁ ରୁଦାଟିଏ ଥିଲା । ରୁଦାର ଗୋଟିଏ ପତ୍ରରେ ଭୂଇଁରୁ ପ୍ରାୟ ଚାରିଫୁଟ ଉଚ୍ଚରେ ତାଜା ରକ୍ତ ଟୋପାଏ ଜମାଟ ବାନ୍ଧି ସକାଳୁଆ ଖରାରେ ଚକ୍‌ଚକ୍ କରୁଥିଲା । ସେଠାରୁ ଆଗକୁ ବାଘର ଗନ୍ତଚହ୍ନ ସହଜରେ ବାରିହେଲା । ପଚିଶ ଗଜ ତଳେ ଗୋଟିଏ ଗ୍ରେଟ ଗଛମୂଳରେ ଚକଡ଼ାଏ ଗହଳବୁଦା ଭିତରେ ହରିଣଟିଏ ମରି ପଡ଼ିଥିବା ଦେଖିଲି । ହରିଣର ଶିଙ୍ଘ ଦୁଇଟି ଖୁବ୍ ବଡ଼; ଶିକାରୀଭାବେ ତାକୁ ହାସଲ କରିଥିଲେ ଯେ କେହି ଶିକାରୀ ଗର୍ବ ଅନୁଭବ କରିଥାଆନ୍ତା । ହରିଣର ପଛ ଫଡ଼ିଆ ଦୁଇଟିରୁ ମାଂସ ବକଟେ ଖାଇସାରି ବାଘ ଅପହରଣକାରୀ ପଶୁପକ୍ଷୀଙ୍କ ଦୃଷ୍ଟି ଏଡ଼ାଇବା ପାଇଁ ଖଣ୍ଡେଦୂରରୁ ଶୁଖିଲା ତାଳପତ୍ର ଠୁଳକରି ଆଣି ତାକୁ ଅଧ ଘଣ୍ଟାର ସହ ଲୁଚାଇଦେଇଥିଲା । ବାଘ ଶିକାର ନିକଟରେ କେଉଁଠାରେ ନାହିଁ ବୋଲି ଜାଣିଲି । ବାଘ ଶିକାରକୁ ଘୋଡ଼ାଇଦେଇ ଯାଇଥିଲେ ସେ ଆଖପାଖରେ କେଉଁଠି ଛପି ରହିନାହିଁ ବୋଲି ଧରାଯାଏ ।

Digitized by srujanika@gmail.com

ଏ ଅଞ୍ଚଳରେ ଅତି ବୃହତ୍‌କାୟ ଏକ ମହାବଳ ବାଘ ରହୁଥିବା କଥା ଫ୍ରେଡ଼୍‌ ଏଣ୍ଡରସନ୍ ଓ ହୁଇସ୍ ଏଡ଼ଙ୍କଠାରୁ ଶୁଣିଥିଲି । ଶ୍ରୀମତୀ ଏଣ୍ଡର୍‌ସନ୍ ସେ ବାଘଟିର ନାମ ଦେଇଥିଲେ 'ପୌଲଗଡ଼ର କୁମାର'* । ବାଘଟି ତାର ପ୍ରକାଣ୍ଡ ଆକାର ଯୋଗୁ ପ୍ରସିଦ୍ଧି ଲାଭକରିଥିଲା ଓ ବହୁବର୍ଷର ପ୍ରାୟ ପ୍ରତ୍ୟେକ ଶିକାରୀ ଭିନ୍ନ ଭିନ୍ନ ସମୟରେ ତାକୁ ମାରିବାକୁ ଚେଷ୍ଟାକରି ବିଫଳ ହୋଇଥିଲେ । ବାଘଟିକୁ ଦେଖିବାପାଇଁ ମୋର ମଧ୍ୟ ଦୀର୍ଘକାଳରୁ ଇଚ୍ଛା ଥିଲା । ସେଦିନ ସଡ଼କପାଖରେ ଯେଉଁ ପଙ୍କଭର୍ତ୍ତି ଚଦକା ପାଖକୁ ମୁଁ ଯାଉଥିଲି, ସେଠାରୁ ଆରମ୍ଭ ହୋଇଥିବା ଗମ୍ଭୀର ଝୋଲଟିରେ 'କୁମାର' ବସାକରି ରହୁଥିଲା । ମଲା ହରିଣ ପାଖରେ ପଞ୍ଜାଗୁଳ ପଡ଼ି ନ ଥିବାରୁ ବାଘକୁ ଚିହ୍ନଟ କରିପାରି ନ ଥିଲି । ତେବେ 'କୁମାର'ର ବସା ପାଖରେ ହରିଣଟି ମରି ଥିବାରୁ ତାକୁ କୁମାର ହିଁ ମାରିଥିବା ଖୁବ ସମ୍ଭବ । ହରିଣ ପାଖରେ ଜଗିବସିଥିଲେ 'କୁମାର'କୁ ଅନ୍ତତଃ ଥରଟିଏ ଦେଖିପାରିବି ଓ ଲୋକଙ୍କ କହିବା ଅନୁସାରେ ପ୍ରକୃତରେ ସେ ସେତିକି ବଡ଼ କି ନୁହେଁ, ତାହା ପରଖି ନେଇ ପାରିବି ବୋଲି ବିଚାରିଲି ।

ମଲା ହରିଣଟି ଯେଉଁ ବୁଦାପାଖରେ ପଡ଼ିଥିଲା, ସେଠାରୁ ଅଳ୍ପ ଓସାର ପଡ଼ିଆଟିଏ ଲମ୍ବିଯାଇଥିଲା ଶହେଗଜ ଦୂର ଏକ ଝରଣା କୂଳକୁ । ଝରଣା ଆରପାରିରେ ବାଉଁଶଗଛ ଗଛର ଗହଳ ଜଙ୍ଗଲ । କୁମାର ଯଦି ହରିଣଟିକୁ ମାରିଥାଏ; ଆଉ ତାକୁ ଲୁଚାଇ ଦେବାପରେ ବସାକୁ ନ ଫେରି କାଗଜବଣରେ ହିଁ ଛପିଥାଏ, ତେବେ ନିଜେ ସେଠାକୁ ନ ଯାଇ ବରଂ ହରିଣପୋଟକୁ ତାକୁ ଫେଡ଼ାଇ ଆଣିବାକୁ ସ୍ଥିରକଲି । ସଡ଼କ ପାଖରେ ଗଦାଏ ଶୁଖିଲା ପତ୍ର ତଳେ ପ୍ରଜାପତିଧରା ଜାଲଟିକୁ ଲୁଚାଇ ଦେଲି । ପଡ଼ିଆଟିର ଉପରମୁଣ୍ଡ ମୋଟେ ଦଶଫୁଟ ଓସାର । ପଡ଼ିଆ ଡାହାଣ ଧାରର ପ୍ରାୟ ଦଶଫୁଟ ଦୂରରେ ହରିଣଟି ଗଛମୂଳରେ ମରି ପଡ଼ିଥିଲା । ତାହାରି ସଳଖରେ ପଡ଼ିଆ ବାଁ ପାଖରେ ମଲା ଗଛଟିଏ ଅଧରୁ ଦୁଇଗଡ଼ ହୋଇ ଭାଙ୍ଗିଯାଇଥିଲା । ଭଙ୍ଗାମୂଳଗଡ଼ ଉପରେ ଲତାପତ୍ର ମାଡ଼ି ଛାମୁଡ଼ିଆ ପରି ହୋଇଥାଏ । ଗଡ଼ଟିରେ ସାପ ରହିବା ଭଳି ଝୋଲ ବା କୋରଡ଼ ନାହିଁ ବୋଲି ପରଖି ନେଲି । ଗଛମୂଳେ ଶୁଖିଲାପତ୍ର ଭିତରେ କଙ୍କଡ଼ାବିଛା ରହନ୍ତି । ପତ୍ରତକ ଆଡ଼େଇ ସଫା କରିଦେବା ପରେ ଗଡ଼ଟିକୁ ଆଉଜି ବେଶ୍ ଆରାମରେ ବସିହେଲା । ସାମାନ୍ୟ ତିରିଶ ଫୁଟ ଦୂରରୁ ମଲା ହରିଣଟି ସ୍ପଷ୍ଟ ଦେଖାଯିବା ଛଡ଼ା ପଡ଼ିଆ ଶେଷମୁଣ୍ଡରେ ଝରଣା ଓ ତା ଆରପାଖରେ ପ୍ରକାଣ୍ଡ ଗୋଟିଏ ଅଶ୍ୱତ୍ଥଗଛରେ ଲାଲମାଙ୍କଡ଼ ପଲଟାଏ ଫଳ ଖାଉଥିବା ମଧ୍ୟ ଦେଖାଯାଉଥାଏ ।

ମହାବଳ ବାଘ ତା ଶିକାର ପାଖରେ ନାହିଁ ବୋଲି ନିର୍ଭରଯୋଗ୍ୟ ଭାବେ ଜାଣିଲେ ଚିତାବାଘ ସମୟ ସମୟରେ ଶିକାରଟିକୁ ଖାଇଦିଏ । ତେଣୁ ଶିକାର ପାଖରେ ଚିତାବାଘର ଅନୁପ୍ରବେଶ ମହାବଳ ବରଦାସ୍ତ କରେ ନାହିଁ । ମହାବଳ ଓ ଚିତାବାଘ ଭିତରେ ଥିବା

* 'କୁମାୟୁଁର ନରଖାଦକ' ବହିଟି ଦ୍ରଷ୍ଟବ୍ୟ—ଅନୁବାଦକ ।

ଏହି ବିରୋଧର ସୁଯୋଗ ନେବାକୁ ଉପାୟ ପାଇଲି ଯେ ଶିକାର ପାଖରୁ ଚିତାବାଘକୁ ଅନୁକରଣ କରି ହେଣ୍ଟାଳି ଦେଲେ ମହାବଳ ଅନୁସନ୍ଧାନ କରିବାକୁ ସେଠାକୁ ନିଶ୍ଚୟ ଚାଲିଆସିବ । ବାଘକୁ ଭଲକରି ଥରେ ଦେଖିସାରି ନଜର ଉପସ୍ଥିତ ତାକୁ ଜଣାଇଦେବି ଓ ତାକୁ ସେଠାରୁ ଘଉଡ଼ାଇ ଦେଇ ନିଜେ ନିରାପଦରେ ଫେରିଯିବି ବୋଲି ବିଚାରିଲି ।

ଚିତାବାଘ ପରି ଥରଟିଏ ହେଣ୍ଟାଳି ଦେବା ମାତ୍ରେ ମାଙ୍କଡ଼ଗୁଡ଼ିକ ସତର୍କ ଧ୍ୱନି ଆରମ୍ଭ କରିଦେଲେ । ଅଶ୍ୱତ୍ଥ ଗଛର ଲମ୍ବ ଡାଳଟିଏ ଭୂଇଁରୁ ପ୍ରାୟ ଚାଳିଶ ଫୁଟ ଉଚ୍ଚରେ ଦୀର୍ଘ ଦୂରକୁ ଲମ୍ବିଯାଇଥିଲା । ପଲ ଭିତରୁ କଗୁଆଳ ତିନୋଟି ସଙ୍ଗେ ସଙ୍ଗେ ବାହାରି ଆସି ପହରା ଦେବାପାଇଁ ଡାଳ ଅଗରେ ଜାଗା ବାଛି ବସିଗଲେ । ମୋତେ ସେମାନେ ଦେଖି ପାରୁ ନ ଥାଆନ୍ତି । ତେଣୁ ମିନିଟିଏ କାଳ ଆତଙ୍କଧ୍ୱନି କରିବା ପରେ ଚିତାବାଘର ଦେଖା କିମ୍ବା ତା ଆସିବାର ଶବ୍ଦ ସୂଚନା କିଛି ନ ପାଇ ମାଙ୍କଡ଼ଗୁଡ଼ିକ ଚୁପ ହୋଇ ଅପେକ୍ଷା କଲେ ।

ଶିକାର ପାଖରୁ ଚିତାବାଘର ହେଣ୍ଟାଳି ଓ ତା ପରେ ପରେ ମାଙ୍କଡ଼ଙ୍କ ଆତଙ୍କଧ୍ୱନି ଶୁଣିଲେ ବାଘ କଦାପି ସ୍ଥିର ହୋଇ ରହିପାରିବ ନାହିଁ ମୋର ଏପରି ଭରସା ହେଲା ଏବଂ ବାଘ ଆସୁଥିବାର ସଙ୍କେତ ପାଇବା ପାଇଁ ମାଙ୍କଡ଼ ତିନୋଟିଙ୍କ ଉପରେ ତୀକ୍ଷ୍ଣ ନଜର ରଖି ବସିଲି । ହଠାତ୍ ମାଙ୍କଡ଼ରୁ ଗୋଟାଏ ପଛପାଖ ଜଙ୍ଗଲ ଆଡ଼କୁ ବୁଲିପଡ଼ି ନିରେଖି କରି କ'ଣ ଦେଖିଲା ଓ ତାପରେ ଉପର ତଳ ମୁଣ୍ଡ ହଲାଇ ପୁଣି ଆତଙ୍କଧ୍ୱନି ଆରମ୍ଭ କରିଦେଲା । ମିନିଟିକ ଭିତରେ ତା ସାଥୀ ଦୁଇଟି ସେଥିରେ ଯୋଗଦେଲେ । ପରେ ପରେ ଗଛ ଉପରୁ ପଲକଯାକ ମାଙ୍କଡ଼ ଭିନ୍ନ ଭିନ୍ନ ଡାଳ ଓ ତାନରେ ବିପଦ-ସଙ୍କେତ ଦେବାକୁ ଲାଗିଲେ । ପାଖରେ କାମେରାଟିଏ ନ ଥିବାରୁ ଦୁଃଖ କଲି । ବାଘ ଖୋଲାପଡ଼ିଆରେ ଯେଉଁ ବାଟେ ଆସିବା କଥା, ଖରାରେ ତାହା ଉଜ୍ଜ୍ୱଳଭାବେ ଆଲୋକିତ ହୋଇଥାଏ । କାମେରା ଥିଲେ ଝଲମଲ୍ କରୁଥିବା ଝରଣା ଓ ଚଞ୍ଚଳ ହୋଇ ଉଠିଥିବା ମାଙ୍କଡ଼ପଲଟିକୁ ପୃଷ୍ଠଭୂମିରେ ରଖି ଉଜ୍ଜ୍ୱଳ ଖରାରେ ବାଘର ଅତି ସୁନ୍ଦର ଫଟୋଟିଏ ଉଠାଇପାରିଥାଆନ୍ତି ।

ଏସବୁ ଆୟୋଜନରେ ଅତି ଅପ୍ରତ୍ୟାଶିତ ଭାବେ ନାନା ବିଭ୍ରାଟ ଘଟିଯାଏ । ଏଥର ମଧ୍ୟ ଠିକ୍ ତାହାହିଁ ଘଟିଲା ଓ ବାଘର କାର୍ଯ୍ୟକଳାପ ମୋର କଳକୌଶଳକୁ ସମ୍ପୂର୍ଣ୍ଣ ପଣ୍ଡ କରିଦେଲା । ବାଘ ଦୀର୍ଘ ସମୟ ଧରି ଦେଖା ନ ଦେବାରୁ ସେ ହୁଏତ ପଛଆଡ଼ୁ ଛପି ଛପି ଆସୁଛି ବୋଲି ଆଶଙ୍କା ହେଲା । ଏତିକବେଳେ ବାଘ କୁଦାମାରି ଜଙ୍ଗଲଟିକୁ ପାର ହୋଇ ପଡ଼ିଆ ଡାହାଣପାଖ ଜଙ୍ଗଲରେ ପଶିଯିବା ମୋତେ ଝଲକ ପାଇଁ ଦିଶିଗଲା । ଝରଣା ଆରପାଖ ଜାଗାକୁ ଜଙ୍ଗଲ ଭିତରୁ ବାଘ ମୋ ଆଡ଼କୁ ନଜର ଦେଇ ବୋଧହୁଏ ସ୍ଥିରକଲା ଯେ ପଡ଼ିଆବାଟେ ସିଧାସଳଖ ଆଗେଇଲେ ଚିତାବାଘ ଆଗରୁ ତାକୁ ଦେଖିଦେଇ ହୁସିଆର ହୋଇଯିବ । ଅତର୍କିତ ଭାବେ ଶିକାର ପାଖରେ ପହଞ୍ଚିଯାଇ ଲୁଣ୍ଠନକାରୀକୁ ହରଜମିନ୍‌ରେ ବମାଲ୍ ଜବତ କରିବ—ସମ୍ଭବତଃ ଏହି ଉଦ୍ଦେଶ୍ୟରେ ବାଘ ବାଟ ଭାଙ୍ଗି ବଣବୁଦା

Digitized by srujanika@gmail.com

ଗହଳରେ ଚପି ଚପି ଅଗେଇବାକୁ ସ୍ଥିର କଲି । ସେବାଟେ ବାଘ ମୋ ଆଡ଼କୁ ବେଶି ପାଖେଇ ଆସିବାର ସମ୍ଭାବନା ଥିଲେ ମଧ୍ୟ ମୋ ହୃଦ ସ୍ପନ୍ଦନରେ ବିଶେଷ ଆଶଙ୍କା ନ ଥିଲା । ତେଣୁ ତା ଆସିବାରେ ବାଧା ନ ଦେଇ ପୂର୍ବପରି ସ୍ଥିରଭାବେ ଅପେକ୍ଷା କରି ବସିଲି ।

ଜଙ୍ଗଲ ତମାମ୍ ଶୁଖିଲା ପତ୍ର ବହଳରେ ଢାଙ୍କି ହୋଇ ପଡ଼ିଥିଲା । ତାହା ସତ୍ତ୍ୱେ ବାଘ ତା ଉପରେ ଏପରି ନିଃଶବ୍ଦରେ ଉପରଆଡ଼ୁ ବୁଲିଆସି ଶିକାର ପାଖେ ପହଞ୍ଚିଗଲା ଯେ ତା ଆସିବାର ଟିକିଏ ସୂଚନା ବି ମୁଁ ପାଇଲି ନାହିଁ । ତାର ଦେଖା ମିଳିବାବେଳକୁ ଶିକାରକୁ ସେ ଅନାଇ ଛିଡ଼ା ହୋଇଛି । ତାପରେ ଲକ୍ଷ୍ୟକରି ଦେଖିଲି ଯେ ସେ 'ପୋଲଗଡ଼ର କୁମାର' ନୁହେଁ—ବଡ଼ ବାଘୁଣୀଟିଏ ମାତ୍ର ।

ବାଘୁଣୀକୁ ଏତେ ପାଖରେ ଦେଖି ମନରେ ଦୁଃଖ ପଶିଲା । ସାଧାରଣ ସମୟ ବା ପରିସ୍ଥିତିରେ ମଧ୍ୟ ବାଘୁଣୀର ମତଗତି ଓ ମିଜାଜ ଆଦୌ ନିର୍ଭରଯୋଗ୍ୟ ନୁହେଁ—ଅଥଚ ସାମ୍ପ୍ରତିକ ପରିସ୍ଥିତିକୁ ବାଘୁଣୀର ଦୃଷ୍ଟିକୋଣରୁ 'ସାଧାରଣ' ବୋଲି କଦାପି କୁହାଯାଇ ନ ପାରେ । ଶିକାରର ଏତେ ନିକଟରେ ମୁଁ ବସିଥିବା ହିଁ ତାକୁ ରଗାଇଦେବା ପାଇଁ ଯଥେଷ୍ଟ । ବାଘୁଣୀଟି ଯଦି ସନ୍ତାନବତୀ ହୋଇଥାଏ ଓ ଛୁଆଗୁଡ଼ିକୁ ପାଖଜଙ୍ଗଲରେ ଛାଡ଼ି ଆସିଥାଏ, ଶିକାର ପାଖରେ ମୋତେ ଦେଖିଦେଇ ସେ ତାଡ଼ିଉଠିବା ଅତ୍ୟନ୍ତ ସମ୍ଭବ । ବାଘୁଣୀ ସେଠାରୁ ଫେରିଯାଇଥିଲେ ଦୁର୍ଯୋଗ ଭଲେ ଭଲେ କଟିଯାଇଥାନ୍ତା; କିନ୍ତୁ ତାହା ନ କରି ସେ ଦୀର୍ଘସମୟ ଯାଏ ଶିକାରକୁ ଅନାଇ ଛିଡ଼ାହେଲା ଓ ଶେଷକୁ ବୋଧେ ତା ଶିକାରକୁ ହରଣଚାଳ କରିନାହିଁ ବୋଲି ବିଶ୍ୱାସ ହେବା ପରେ ମୋ ଆଡ଼କୁ ପଡ଼ିଆ ସେପାଖେ ଅଗେଇ ଆସିଲା । ମୁଁ ସଙ୍ଗେ ସଙ୍ଗେ ନିଃଶ୍ୱାସ ବନ୍ଦକରି ନିଶ୍ଚଳ ହୋଇଗଲି, ଅଧବୁଜା ପତାଫାଙ୍କରୁ ବାଘୁଣୀ ଉପରେ ନଜର ରଖି ପରବର୍ତ୍ତୀ ପଦକ୍ଷେପ ପାଇଁ ଗମ୍ଭୀର ଉଦ୍‌ବେଗ ସହ ଅପେକ୍ଷା କଲି । ଯୋଗକୁ ବାଘୁଣୀ ଆଉ ଆଗକୁ ନ ଆସି ପଡ଼ିଆ ମଝିଦେଇ ଝରଣାକୂଳ ଯାଏ ଗଲା ଓ ସେଠାରେ ଲେପଟାଇ ପଡ଼ି ପେଟପୂର୍‌ ପାଣି ପିଇବା ପରେ କୁଦାକେ ଝରଣାଟିକୁ ପାର ହୋଇ ଆରପାଖର ଗହଳ ଜଙ୍ଗଲରେ ଲୁଚିଗଲା ।

ପୂର୍ବୋକ୍ତ ଦୁଇଟି ଘଟଣାରେ ଜଙ୍ଗଲ ଭିତରେ ହତ୍ୟାକାଣ୍ଡ ଘଟିଥିବାର କୌଣସି ସୂଚନା ମୁଁ ଆରମ୍ଭରୁ ପାଇ ନ ଥିଲି । ଅପରାଧ-ବିଜ୍ଞାନରେ ହତ୍ୟାକାଣ୍ଡ ପରି ଅପରାଧମୂଳକ ଘଟଣାରୁ ହିଁ ଅନୁସନ୍ଧାନ ଆରମ୍ଭ ହୁଏ । କିନ୍ତୁ ଜଙ୍ଗଲ-ବିଜ୍ଞାନରେ ଅତି କ୍ଷୀଣ ଓ ସାମାନ୍ୟ କୌଣସି ଚିହ୍ନକୁ ମୂଳ କରି ଅନୁସନ୍ଧାନ ଆରମ୍ଭ କଲେ ହତ୍ୟାକାଣ୍ଡ ଘଟିଥିବାର ପ୍ରମାଣ ପରିଶେଷରେ ହିଁ ମିଳେ । ସମ୍ଭବତଃ ଏପରି ବିପରୀତ ପଦ୍ଧତିରେ ରହସ୍ୟ ଉନ୍ମୋଚିତ ହେଉଥିବାରୁ ଜଙ୍ଗଲତଥ୍ୟ ସନ୍ଧାନୀଙ୍କ ଏ ସବୁ ଅନୁସନ୍ଧାନ ଏତେ ଚିତ୍ତାକର୍ଷକ ଓ ରୋମାଞ୍ଚକର ହୋଇଉଠେ ।

Digitized by srujanika@gmail.com

ଉଚ୍ଚକୋଟୀର ଡ଼ିଟେକ୍‌ଟିଭ ସାହିତ୍ୟ ସୃଷ୍ଟି କରିବା ମୁଷ୍ଟିମେୟ କେତେଜଣ ଲେଖକଙ୍କ ପକ୍ଷରେ ହିଁ ସମ୍ଭବ । କିନ୍ତୁ ଜଙ୍ଗଲଟିଏ ଅତିକ୍ରମ କରିବାବେଳେ ଦୃଷ୍ଟିକୁ କେବଳ ସଡ଼କ ଉପରେ ନିବଦ୍ଧ ନ ରଖି ପରିବେଶକୁ ମଧ୍ୟ ନିରୀକ୍ଷଣ କଲେ ସାଧାରଣ ଲୋକେ ମଧ୍ୟ ଏପରି ବହୁ ରହସ୍ୟମୟ ଘଟଣାର ସୂତ୍ର ଓ ସନ୍ଧାନ ପାଇପାରନ୍ତି । ଅବଶ୍ୟ ସେ ସବୁ ରହସ୍ୟ ଭେଦ କରିବାପାଇଁ ଜଙ୍ଗଲତଥ୍ୟ ସମ୍ବନ୍ଧରେ କିଛି ଜ୍ଞାନ ଥିବା ଦରକାର । ଜଙ୍ଗଲ ବିଷୟରେ କିଛି ନ ଜାଣି ଯେଉଁମାନେ ସବୁ ଜାଣନ୍ତି ବୋଲି ବଡ଼େଇ କରନ୍ତି—ଜଙ୍ଗଲତଥ୍ୟର ଏ ସବୁ ଗୂଢ଼ ରହସ୍ୟ ଚିରଦିନ ସେମାନଙ୍କ ଦୃଷ୍ଟି ଅନ୍ତରାଳରେ ହିଁ ରହିଯାଏ ।

## ନଅ

ଦଶବର୍ଷ ବୟସରେ ନୈନିତାଲ ସ୍ୱେଚ୍ଛାସେବକ ରାଇଫଲ୍ ବାହିନୀର ସ୍କୁଲ କାଡ଼େଟ୍ କମ୍ପାନୀରେ ମୋତେ ଯୋଗଦେବାକୁ ପଡ଼ିଲା । ସେତେବେଳେ ରାଇଫଲ୍ ବାହିନୀରେ ତାଲିମ ପାଇବା ଦେଶରେ ସର୍ବତ୍ର ଅତ୍ୟନ୍ତ ଅଦ୍ଭୁତ ହେଉଥିଲା ଓ ସେଥିପ୍ରତି ଯଥେଷ୍ଟ ଗୁରୁତ୍ୱ ମଧ୍ୟ ଦିଆଯାଉଥିଲା । ସ୍ୱାସ୍ଥ୍ୟବାନ୍ ବାଳକ ଓ ଯୁବକମାନେ ସେଥିପାଇଁ ମନୋନୀତ ହେବାକୁ ପରମ ସୌଭାଗ୍ୟ ମଣୁଥିଲେ । ଆମ ବାଟାଲିୟନ୍‌ର ସମୁଦାୟ ପାଞ୍ଚଶହ କାଡ଼େଟ୍‌ଙ୍କ ଭିତରୁ କେବଳ ମୋ ପରି ପିଲାମାନଙ୍କ ପାଇଁ ଗୋଟିଏ ଓ ସାବାଳକମାନଙ୍କ ପାଇଁ ଗୋଟିଏ କମ୍ପାନୀ ଥିଲା । ସେତେବେଳେ ନୈନିତାଲ ସହରର ଲୋକସଂଖ୍ୟା ମୋଟେ ଛଅ ହଜାର । ସେଥିରୁ ପିଲା ବଡ଼ ମିଶି ପାଞ୍ଚଶହ ଜଣ—ଅର୍ଥାତ୍ ପ୍ରତି ବାରଜଣରୁ ଜଣେ ସ୍ୱେଚ୍ଛାକ୍ରମେ ରାଇଫଲ୍ ବାହିନୀରେ ଅନ୍ତର୍ଭୁକ୍ତ ହୋଇଥିବା ଏଇ ତାଲିମ୍ କାର୍ଯ୍ୟକ୍ରମର ଲୋକପ୍ରିୟତା ସପକ୍ଷରେ ପ୍ରଭୂତ ପ୍ରମାଣ ଦିଏ ।

ଆମ ସ୍କୁଲ କମ୍ପାନୀରେ ମୋ ସହିତ ସତୁରି ଜଣ କାଡ଼େଟ୍ ଥିଲେ । ସ୍କୁଲର ଅଧ୍ୟକ୍ଷ ଜଣେ ପୂର୍ବତନ ସାମରିକ କର୍ମଚାରୀ । ଅଧ୍ୟକ୍ଷତା କରିବା ଛଡ଼ା କାଡ଼େଟ୍ କମ୍ପାନୀର କାପ୍‌ଟେନଙ୍କ ଦାୟିତ୍ୱ ମଧ୍ୟ ସେ ତୁଲାଉଥିଲେ । ଦୁଇଟି ପଦ ଅଧିକାର କରିଥିବା ଏହି ଭଦ୍ରଲୋକଙ୍କର ଆମକୁ ସର୍ବୋତ୍କୃଷ୍ଟ କମ୍ପାନୀ କରି ତୋଳିବାକୁ ଯେଉଁ ଅଦମ୍ୟ ଅଭିଳାଷ ଥିଲା, ତାହା ପ୍ରଶଂସା-ଯୋଗ୍ୟ ବୋଲି ମାନୁଛି କିନ୍ତୁ ତାଙ୍କର ସେହି ଅଭିଳାଷକୁ ଚରିତାର୍ଥ କରିବା ପାଇଁ ଆମକୁ ଯେତେ କଷ୍ଟ ସହିବାକୁ ପଡ଼ୁଥିଲା ତାହା ବାସ୍ତବିକ ବର୍ଣ୍ଣନାର ବାହାରେ ।

ପ୍ରତି ସପ୍ତାହରେ ସ୍କୁଲ ପଡ଼ିଆରେ ଦୁଇଥର ଡ୍ରିଲ୍ କରିବା ଛଡ଼ା ନୈନିତାଲ ହ୍ରଦ ଉପରେ ଏକ ଖୋଲା ପଡ଼ିଆରେ ଅନ୍ୟ ଚାରୋଟି କମ୍ପାନୀଙ୍କ ସହିତ ଆମକୁ ଥରଟିଏ ସମବେତ ଡ୍ରିଲ ମଧ୍ୟ କରିବାକୁ ପଡ଼େ । ଡ୍ରିଲରେ ଆମର ଅତି ସାମାନ୍ୟ ଦୋଷତ୍ରୁଟି କ୍ୟାପଟେନଙ୍କ ତୀକ୍ଷ୍ଣ ଦୃଷ୍ଟିକୁ ଏଡ଼ାଇ ପାରେନାହିଁ । ସନ୍ଧ୍ୟାବେଳେ ସ୍କୁଲ

Digitized by srujanika@gmail.com

ସରିବା ପରେ ପ୍ରତ୍ୟେକଟି ଭୁଲ୍‌ଭଟକା କଡ଼ାଗଣ୍ଡା କରି ହିସାବ ହୋଇ ସେଥିପାଇଁ ଆମକୁ ଦଣ୍ଡ ଦିଆଯାଏ । କ୍ୟାପ୍‌ଟେନ୍ ସାହେବ ତାଙ୍କ ଶ୍ରୀହସ୍ତିଆ ଲହକା ବେତଟି ଧରି ଦୋଷୀଠାରୁ ଠିକ୍ ଶ୍ରୀଫୁଟ ଦୂରରେ ଛିଡ଼ା ହୁଅନ୍ତି । ପୂର୍ବ ଥରର ବେତମାଡ଼ରେ ନୋଳା ଫାଟି ଯେଉଁ ଜାଗାଟି ସବୁଠାରୁ ବେଶି ଦରଜ ହୋଇଥାଏ, ପର ଥର ଠିକ୍ ସେହିଠାରେ ପାହାର ବସାଇବାରେ କ୍ୟାପ୍‌ଟେନ୍ ସାଧାରଣତଃ ଲକ୍ଷ୍ୟଚ୍ୟୁତ ହୁଅନ୍ତି ନାହିଁ । ସ୍ଥିରଲକ୍ଷ୍ୟରେ ତାଙ୍କ ବେତଟିକୁ ପୂର୍ବଥରର ନୋଳା ଉପରେ ଠିକ୍ କେତେ ଥର ବସାଇ ଦେଇ ପାରିବେ— ନିଜ ଆଡ଼ୁ ପୂର୍ବରୁ କୌଣସି ପଣ ରଖି କ୍ୟାପ୍‌ଟେନ୍ ମନେ ମନେ ତାହା ଗଣିତ କରୁଥିଲେ କି ନାହିଁ ମୁଁ ଜାଣେନା । ତେବେ ସମବେତ ଛାତ୍ରମାନେ ନିର୍ଭୁଲ ଭାବେ ତାହାର ହିସାବ ରଖନ୍ତି ଓ ଦଶପାହାରରୁ ଅନ୍ତତଃ ନଅଟି ପୂର୍ବ ଥରର ନୋଳା ଉପରେ ବସିବାର ସମ୍ଭାବନା ନେଇ ଛାତ୍ରମହଲରେ ପ୍ରବଳ ବାଜି ମରାମରି ଚାଲେ । ଦଣ୍ଡଦାନ ଶେଷହେବା ପରେ ଫଳାଫଳ ଗଣିତ ହୋଇ ହାରଜିତ୍ ବିଚାର କରାଯାଏ । ଅମେ ପୁରୁଣା ପିଲମାନେ ଗୁଲି, ଲଟୁ, କଲମକଟା ଛୁରି ଏପରି କି ଜଳଖିଆ ପାଇଁ ବଣ୍ଟାଯାଇଥିବା ବିସ୍କୁଟକୁ ମଧ ପଣ ରଖି କ୍ୟାପ୍‌ଟେନ୍‌ଙ୍କ ସପକ୍ଷରେ ବାଜି ପକାଉ ଓ ତାହାଦ୍ୱାରା ବିଶେଷ ଲାଭବାନ୍ ମଧ ହେଉ । କ୍ୟାପ୍‌ଟେନ୍‌ଙ୍କ ହାତ ଓ ବେତର କରାମତି ଦେଖି ନ ଥିବା ଅନଭିଜ୍ଞ ନୂତନ ଆଗନ୍ତୁକମାନେ କେବଳ ତାଙ୍କ ବିପକ୍ଷରେ ବାଜି ମାରି ସର୍ବସ୍ୱାନ୍ତ ହୁଅନ୍ତି ।

ନୀଳରଙ୍ଗର ମୋଟା ଗରମ କନାରେ ତିଆରି ଆମ ସାମରିକ ପୋଷାକଗୁଡ଼ିକ ଯେମିତି ଶକ୍ତ, ସେମିତି କର୍କଶ ଓ ରୁକ୍ଷ । ନୀଳରଙ୍ଗ ଯୋଗୁ ସେଥିରେ ଧୂଳିମଳି ସହଜରେ ବାରିହୁଏ ନାହିଁ ସତ; କିନ୍ତୁ ପୋଷାକ ଘଷିହୋଇ ଦେହର ମଳିଚମ ଉତୁରିଯାଏ । ପୋଷାକଟି ଏତେ ଶକ୍ତ ଯେ ଦୀର୍ଘକାଳ ବ୍ୟବହାର ପରେ ମଧ ତାହା ଚିରେନାହିଁ; ସାନ ହୋଇଗଲେ, ତାହା ଫେରାଇ ନିଆହୋଇ ଅଳ୍ପବୟସ୍କ କାଡ଼େଟ୍‌ମାନଙ୍କୁ ଦିଆଯାଏ । ବୋଟ୍ ଉପରେ ନଳିତାବଡ଼ା ପରି ଡ୍ରିଲ୍ ବେଳେ ଏଭଳି ପୋଷାକ ସହିତ ସାଙ୍କୁଆ ଲୁହା ଟୋପି ଆମକୁ ପିନ୍ଧିବାକୁ ପଡ଼ୁଥିଲା । ଟୋପିଟିକୁ ମୁଣ୍ଡାଇବାର ଯନ୍ତ୍ରଣା ମୋଟା ଗରମ କନାର ପୋଷାକ ପିନ୍ଧି ଝାଞ୍ଜିଗରମରେ ଡ୍ରିଲ୍ କରିବାର କଷ୍ଟକୁ ମଧ ବହୁଗୁଣେ ବଳିଯାଏ । ଟୋପିର ଠିକ୍ ମଝିରେ ଚାରିଇଞ୍ଚ ଲମ୍ବ ମୁନିଆ ଗୋବଟାଏ ଭିତର ପଟୁ ଅଣ୍ଟାଯାଇଥାଏ । ଗୋବତଳୁ ଏହି ମୁଣ୍ଡା ଅଂଶଟି ଟୋପି ଭିତରେ ପ୍ରାୟ ଇଞ୍ଚେ ତଳକୁ ବାହାରିଥାଏ; ଟୋପିକୁ ଟେକି ନ ରଖିଲେ ସେଇଟି ମୁଣ୍ଡରେ ଗୁପି ହୋଇ ତାଳୁ ଫୁଟାଇଦେଲା ପରି ଲାଗେ । ସେଥିରୁ ରକ୍ଷା ପାଇବା ପାଇଁ ଭିତର ପାଖେ କାଗଜବଣ୍ଡା ଶକ୍ତଭାବେ ଠେସି ଦେଇ ଟୋପିଟିକୁ ଟେକି ରଖିବାକୁ ପଡ଼େ । ଏଣେ ଟୋପିର ଚମଡ଼ାବନ୍ଧା ଲୁହା ପଟିଟିକୁ ଥୋଡ଼ିତଳେ ଗଳାଇଦେଲେ ଟୋପିଟି ମୁଣ୍ଡରେ ପୁଣି ଗୁପି ହୋଇଯାଏ । ଫଳରେ ଚାରିପାଖରୁ ଚପିହୋଇ ମୁଣ୍ଡରେ ଠିକ୍ ଯନ୍ତ୍ରାର ଜାବ ପଡ଼ିଲା ଭଳି ଲାଗେ । ଟୋପି ମୁଣ୍ଡାଇ, ପୋଷାକ ପିନ୍ଧି ଖରା ଗରମରେ ଘଣ୍ଟାଘଣ୍ଟା ଡ୍ରିଲ୍ କରିସାରି ସନ୍ଧ୍ୟାବେଳେ ଆମେ ପ୍ରତ୍ୟେକେ କ୍ଳାନ୍ତ ଓ ଅବସାଦ ସହିତ ପ୍ରବଳ ମୁଣ୍ଡବିନ୍ଧା ନେଇ ଘରକୁ ଫେରୁ । ରାତିରେ ଭଲଭାବେ ପଢ଼ାପଢ଼ି କରି

Digitized by srujanika@gmail.com

ହୁଏ ନାହିଁ; ପରଦ୍ଧନ ପାଠରେ ଖିଲପ କରଥିବା ଅଭିଯୋଗରେ ଗୁରୁଚ୍ଛିଆ ବେଭଡିକୁ ମୁକ୍ତ ହସ୍ତରେ ବ୍ୟବହାର କରିବା ପାଇଁ ଅଧ୍ୟକ୍ଷଙ୍କୁ ଯଥେଷ୍ଟ କାରଣ ମିଳିଯାଏ ।

ଥରେ ଆମର ସମବେତ ଡ୍ରିଲ୍ ପରିଦର୍ଶନ କରିବାକୁ ଜଣେ ଉଚ୍ଚପଦସ୍ଥ ସାମରିକ ଅଫିସର୍ ଡ୍ରିଲ୍ ପଡ଼ିଆକୁ ଆସିଥିଲେ । ଘଣ୍ଟାଏ କାଳ ବନ୍ଧୁକ ଧରି ଡ୍ରିଲ୍ ଓ ପଦଚାଳନା ପ୍ରଦର୍ଶନ କରିବା ପରେ ଶସ୍ତ୍ର ସହିତ ଶୃଙ୍ଖଳାବଦ୍ଧ ରାଇଫଲ ମଇଦାନ୍‌କୁ ଯିବାପାଇଁ ଆମକୁ ଆଦେଶ ଦିଆଗଲା । ମଇଦାନରେ ପହଞ୍ଚିବା ପରେ ଆମେ ସ୍କୁଲ କମ୍ପାନିର କାଡ଼େଟ୍ ମାନେ ପାହାଡ଼ କଡ଼ରେ ଜାଗାଏ ଧାଡ଼ିବାନ୍ଧି ବସିଲୁ । ବୟୋଜ୍ୟେଷ୍ଠ କାଡ଼େଟ୍‌ମାନେ ପରିଦର୍ଶନକାରୀ ଅଫିସରଙ୍କୁ ୪୫୦ ମାର୍ଟିନି-ହେନ୍‌ରି ରାଇଫଲ୍ ଦ୍ୱାରା ନିଶାଣ କରି ଦେଖାଇଲେ । ରାଇଫଲ ନିଶାଣ ପାଇଁ ମୋଟ ଲୁହା ଚଦରର ଚାନ୍ଦମାରିଟିଏ ମଇଦାନ ଶେଷ ମୁଣ୍ଡରେ ଗୋଟିଏ ପକ୍‌କା ଚଉତରାରେ ରଖାଯାଇଥାଏ । ଗୁଳି ଚାନ୍ଦମାରି ମଝିରେ ନା କଡ଼ରେ ବାଜିଲା, ଅଭିଜ୍ଞ ଲୋକେ ଶବ୍ଦଦ୍ୱାରା ତାହା ଦୂରରୁ କହିଦେଇପାରନ୍ତି ।

ସର୍ବଭାରତୀୟ ସ୍ତରରେ ଉତ୍କୃଷ୍ଟତମ ବିବେଚିତ ହୋଇଥିବା କେତେ ଜଣ ନାମଜାଦା ନିଶାଣଦାର୍ ବାଟାଲିୟନରେ କ୍ୟାଡେଟ୍ ଥିବାରୁ ଆମେ ସମସ୍ତେ ସେଥିପାଇଁ କମ୍ ଗୌରବ ଅନୁଭବ କରୁନଥିଲୁ । ଆମେ ପିଲାମାନେ ସେମାନଙ୍କ ମଧ୍ୟରୁ ଜଣଜଣଙ୍କୁ ନିଜ ନିଜର ଆଦର୍ଶ ଭାବେ ବାଛି ନେଇ ମନେ ମନେ ତାଙ୍କୁ ହିଁ ବୀରପୂଜା କରୁଥିଲୁ ଏବଂ ରାଇଫଲ୍ ପ୍ରତିଯୋଗିତାରେ ପ୍ରବଳ ଉତ୍ସାହର ସହ ତାଙ୍କର ପକ୍ଷ ସମର୍ଥନ କରୁଥିଲୁ । କେହି କାହାର ପ୍ରିୟପାତ୍ର ବିରୁଦ୍ଧରେ ପଦେ କହିଦେଲେ ଯେପରି ତୀବ୍ର ବାଦବିବାଦ ସୃଷ୍ଟି ହେଉଥିଲା, ସାମରିକ ପୋଷାକ ପିନ୍ଧି ମରାମରି ହେବା ବିରୁଦ୍ଧରେ କଡ଼ା ନିୟମ ନ ଥିଲେ ତାହା ରକ୍ତାକ୍ତ ସଂଗ୍ରାମରେ ପରିଣତ ହେଉଥାଆନ୍ତା ।

ରାଇଫଲ୍ ପ୍ରତିଯୋଗିତାରେ ବିଜେତାମାନଙ୍କ ଫଳାଫଳ ପ୍ରକାଶ ପାଇବା ପରେ ସ୍କୁଲ୍ କାଡ଼େଟ୍‌ମାନଙ୍କୁ ଧାଡ଼ିହୋଇ ଚାନ୍ଦମାରିଠାରୁ ଦୁଇଶହ ଗଜକୁ ଆଗେଇଯିବାକୁ ଅନୁମତି ମିଳେ । ସେଠାରେ ପ୍ରତି ସ୍କୁଲ କମ୍ପାନିର ଚାରିଜଣ ବାଛି ବାଛି ବୟୋଜ୍ୟେଷ୍ଠ କାଡ଼େଟଙ୍କୁ ନିଶାଣ କରିବାକୁ ସୁଯୋଗ ଦିଆଯାଏ । ଆମେ ସାଧାରଣ କାଡ଼େଟ୍‌ମାନେ ଜାଗାଏ ବନ୍ଧୁକ ଜମାଇରଖି ପଛରେ ବସି ରାଇଫଲ୍ ଚାଳନା ଦେଖୁ ।

ଆନ୍ତଃସ୍କୁଲ କ୍ରୀଡ଼ା ପ୍ରତିଯୋଗିତାର ପ୍ରତ୍ୟେକ ପର୍ଯ୍ୟାୟରେ ଓ ବିଶେଷ କରି ରାଇଫଲ୍ ନିଶାଣ ପ୍ରତିଯୋଗିତାରେ ବିଭିନ୍ନ ସ୍କୁଲ ଭିତରେ ଅତି ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ପ୍ରକାଶ ପାଏ । ଜ୍ୟେଷ୍ଠ କାଡ଼େଟ୍‌ମାନେ ଗୁଳି ଫାଏର୍ କଲାବେଳେ ଅନ୍ୟମାନେ ପ୍ରତି ସ୍କୋରର ଫଳାଫଳ ଘୋର ଉଦ୍‌ବେଗର ସହ ଲକ୍ଷ୍ୟ କରନ୍ତି । ଆତ୍ମପକ୍ଷ ଓ ପ୍ରତିପକ୍ଷର ପ୍ରତିଯୋଗୀମାନଙ୍କ ସମ୍ବନ୍ଧରେ ଅନୁକୂଳ ଓ ପ୍ରତିକୂଳ ନାନା ମନ୍ତବ୍ୟ ଧାରା ବିବରଣୀ ପରି ଅନବରତ ଲାଗିରହିଥାଏ । ପ୍ରତ୍ୟେକ କମ୍ପାନିର କମାଣ୍ଡର ତାଙ୍କ ବାଛି ବାଛି

Digitized by srujanika@gmail.com

ନିଶାଣଦାରମାନଙ୍କୁ ମନୋନୀତ କରୁଥିବାରୁ ପ୍ରତିଯୋଗୀଙ୍କ ସାଧ ବା ସାଧନାରେ ବିଶେଷ ପାର୍ଥକ୍ୟ ଦେଖାଯାଏ ନାହିଁ ।

ସେଦିନ ଆମ ସ୍କୁଲ ରାଇଫଲ୍ ନିଶାଣରେ ଦ୍ୱିତୀୟ ସ୍ଥାନ ଅଧିକାର କଲା । ଫଳାଫଳ ପ୍ରକାଶ ପାଇବା ପରେ କମ୍ପାନୀରେ ଆମେ ସମସ୍ତେ ଆନନ୍ଦରେ ଆତ୍ମହରା ହୋଇପଡ଼ିଲୁ । ଶ୍ରେଷ୍ଠ ବିବେଚିତ ହୋଇଥିବା ସ୍କୁଲର କାଡ଼େଟ୍‌ଙ୍କ ସଂଖ୍ୟା ଥିଲା ଆମର ତିନିଗୁଣ । ତାହା ସତ୍ତ୍ୱେ ସେମାନେ ଆମଠାରୁ ମାତ୍ର ଗୋଟିଏ ପଏଣ୍ଟ ଅଧିକା ପାଇଥିବା ହୋଇଉଠିଥାଏ ଆମ ପାଇଁ ଅଶେଷ ଆନନ୍ଦ ଓ ଆତ୍ମସନ୍ତୋଷର କାରଣ ।

ସେଦିନ ପ୍ରତିଯୋଗିତା ଶେଷ ହେବା ପରେ ଆମେ 'ସାଧାରଣ' କାଡେଟ୍‌ମାନେ ଏକାଠି ଛିଡ଼ାହୋଇ ପ୍ରତିଯୋଗୀମାନଙ୍କ କୃତି ଓ କରାମତି ବିଷୟରେ କଥାବାର୍ତ୍ତା ହେଉଥିଲୁ । ଏତିକିବେଳେ ଆମ ସର୍ଜେଣ୍ଟ-ମେଜର ସମବେତ ଅଫିସର ଓ ନିର୍ଦ୍ଦେଶକଙ୍କ ଦଳ ଭିତରୁ ବାହାରି "କର୍‌ବେଟ୍ ! କାଡ଼େଟ୍ କର୍‌ବେଟ୍ !!" ବୋଲି ଉଚ୍ଚସ୍ୱରରେ ଡାକ ଦେଇ ଆମରି ଆଡ଼କୁ ଆସିଲେ । ମୁଁ ଅଜାଣତରେ ନିଶ୍ଚୟ କିଛି ଗୁରୁତର ଦୋଷ କରିଛି ଓ ଦଣ୍ଡଦେବା ପାଇଁ ଏବେ ମୋତେ ଡକରା ପଡ଼ୁଛି ଭାବି ଇଷ୍ଟଦେବଙ୍କୁ ସୁମରିଲି । ଦିନଯାକର ଘଟଣାଗୁଡ଼ିକୁ ମନେ ମନେ ଥରେ ଗଡ଼ାଇ ନେଇ କେଉଁଠାରେ କିଛି ଦୋଷ କରିଥିବା ଖିଆଲ କରିପାରିଲି ନାହିଁ । ଅବଶ୍ୟ ଶ୍ରେଷ୍ଠ ବିବେଚିତ ହୋଇଥିବା ସ୍କୁଲର ଜଣେ ପ୍ରତିଯୋଗୀଙ୍କ ବିରୁଦ୍ଧରେ ମନ୍ତବ୍ୟ ଦେଇ ମୁଁ କହିଥିଲି ଯେ ତାଙ୍କର ଶେଷ ଗୁଳିଗୋଟିକ ଦୈବାତ୍ ବୁଲ୍‌ସ୍‌ଆଇରେ ବାଜିଯାଇଥିଲା । ଉକ୍ତ ସ୍କୁଲର କାଡ଼େଟ୍‌ଙ୍କ ଭିତରୁ କେହି ଜଣେ ମୋତେ 'ପାନେ ଦେବ' ବୋଲି ଧମକଦେବା ମଧ୍ୟ ଶୁଣିଥିଲି । ତେବେ ଗଣ୍ଡଗୋଳ କରିବା ଦୂରେ ଥାଉ, କିଏ ମୋତେ ଧମକ ଦେଲା ତାହା ମଧ୍ୟ ମୁଁ ଜାଣିନଥିଲି ।

ତେଣେ ସର୍ଜେଣ୍ଟ-ମେଜର ଉଚ୍ଚ ସ୍ୱରରେ ମୋତେ ଡାକ ଦେଉଥାନ୍ତି । ସର୍ଜେଣ୍ଟ-ମେଜରଙ୍କ ସାଧାରଣ କଥା ମଧ୍ୟ ମାଇଲିଏ ଦୂରକୁ ଶୁଭେ ବୋଲି କାଡ଼େଟ୍‌ମାନେ କହନ୍ତି । ତେଣୁ ତାଙ୍କ ଉଚ୍ଚଧ୍ୱନି କେତେ ଦୂରକୁ ଶୁଭୁଥିବ, ତାହା ଅନୁମାନ କରିହେବ ପାରେ । ଏଣେ କାଡ଼େଟ୍‌ମାନଙ୍କ ତରଫରୁ ମଧ୍ୟ ମୋ ଉପରେ ତାଡ଼ନା ଆରମ୍ଭ ହୋଇଯାଇଥାଏ । "ଯା, ଶୀଘ୍ର ଯା ।" "ତୋତେ ଡାକୁଛନ୍ତି—ଶୁଭୁନାହିଁ ?" "ଜଲଦି ଯା—ନହେଲେ ପାହାର ବସିବ ଜାଣିଥା !" ଆଦି ନାନା କଥା କହି ସାଙ୍ଗସାଥୀମାନେ ମଧ୍ୟ ମୋତେ ଆତୁର ବ୍ୟସ୍ତ କରିଦେଲେ । ଅନନ୍ୟୋପାୟ ହୋଇ ଧାଡ଼ିରୁ ବାହାରି ଆସି ଦୁର୍ବଳ ଭଙ୍ଗା ଭଙ୍ଗା ସ୍ୱରରେ "ଆଜ୍ଞା, ହଁ" ବୋଲି ଜବାବ ଦେଲି । "ଡାକିଲେ ଜବାବ ଦେଉନୁ କାହିଁକି ? ତୋର ବନ୍ଧୁକ କାହିଁ ? ବନ୍ଧୁକ ଧରି ଶୀଘ୍ର ଆ ।" —ମଝିରେ ମୁହୂର୍ତ୍ତେ ହେଲେ ନ ଅଟକି ସର୍ଜେଣ୍ଟ-ମେଜର ତାଙ୍କ କର୍କଶ, କଠୋର ସ୍ୱରରେ ତାଗିଦ ପ୍ରଶ୍ନ ଏବଂ ଆଦେଶ ମୋତେ ଏକନିଃଶ୍ୱାସରେ ଶୁଣାଇଦେଲେ । କଣ ହୋଇଛି ଓ ମୋତେ କଣ କରିବାକୁ ହେବ ବୁଝିନପାରି ମୁଁ ବାବା ହୋଇ ଛିଡ଼ାହୋଇ ରହିଗଲି । ସେ ଭିତରେ ପଛରୁ କେହି ଜଣେ ବନ୍ଧୁ "ଜଲଦି ଯା'ରେ

Digitized by srujanika@gmail.com

ବୋକା !" ବୋଲି କହି ପିଠିରେ ମୃଦୁ ଘୁପ ଦେଇ ବନ୍ଧୁକ ଗଦାଆଡ଼କୁ ମୋତେ ଠେଲିଦେଲେ ।

ବନ୍ଧୁକଗୁଡ଼ିକ ଆମେ ଗଦାମାରି ରଖିଥିଲୁ । ଗଦାକୁ ସମ୍ଭାଳି ରଖିବା ପାଇଁ ମୋ ବନ୍ଧୁକଟି ଠେକ ଦିଆଯାଇଥିଲା । ତରତରରେ ବନ୍ଧୁକଟି କାଢ଼ିନେବା ଫଳରେ ଗଦା ଭୁଷୁଡ଼ିଯାଇ ସବୁଗୁଡ଼ିକ ବନ୍ଧୁକ ତଳେ ପଡ଼ିଗଲା । ମୁଁ ବିକଳ ହୋଇ ତାକୁ ପୁଣି ସଜାଡ଼ିବାରେ ଲଗିବାରୁ ସର୍ଜେଣ୍ଟ-ମେଜର ତାଡିଉଠି ପାଟିକରି କହିଲେ; "ଗଦାଟାକୁ ତ ଭାଙ୍ଗିଲୁ, ଏବେ ସେଥିରେ ଆଉ ଲଗିଛୁ କାହିଁକି ? ବନ୍ଧୁକ ନେଇ ଶୀଘ୍ର ଆ ।" କାନ୍ଦୁଣି-ମାନ୍ଦୁଣି ହୋଇ ବନ୍ଧୁକ ଠିକ୍ ବାଗରେ ଧରି ତାଙ୍କ ସାମନାରେ ସାବଧାନ ହୋଇ ଛିଡ଼ାହେଲି । ବନ୍ଧୁକ କାନ୍ଧେଇ ତାହାଣକୁ ବୁଲି କ୍ଷିପ୍ରପଦରେ ରାଇଫଲ ମଇଦାନକୁ ସାମରିକ କାଇଦାରେ ଆଗେଇବାକୁ ମୋତେ ଆଦେଶ ଦିଆଗଲା । ଅଗ୍ରସର ହେବା ପୂର୍ବରୁ ସର୍ଜେଣ୍ଟ-ମେଜର ଘୁପାଗଲାରେ ମୋତେ ଚେତାଇଦେଇ କହିଲେ, "ମୋତେ ଯଦି ବଦ୍‌ନାମ କରିବୁ ତ ଖବର୍‌ଦାର୍ !"

ବଳାପଶୁ ଅର୍ଗଳି ପାଖକୁ ଟଣାହୋଇ ଗଲା ପରି ମୋତେ ଗୁଳିମାରି ମଇଦାନରେ ହାଜର କରିଗଲା । ପରିଦର୍ଶନକାରୀ ଅଫିସର ଜଣକ ସେଠାରେ ଥିଲେ । ସମଗ୍ର ବାଟାଲିୟନ୍‌ରେ ମୁଁ କନିଷ୍ଠତମ କାଡ଼େଟ୍ ବୋଲି ପରିଚୟ ବୁଝିବା ପରେ ମୋ ଅଡ଼େ ଅନାଇ ଅତି କୋମଳ ସ୍ୱରରେ ସେ କହିଲେ ଯେ ମୁଁ କେଇ ଶ୍ରେଷ୍ଠ ଗୁଳି ଚଳାଇବା ସେ ଦେଖିବାକୁ ଚାହାଁନ୍ତି । ତାଙ୍କ କୋମଳ ସ୍ୱର ଓ ସହାନୁଭୂତିଭରା ସଦସ୍ତ ହସ ମନରେ ମୋର ନୂତନ ଉତ୍ସାହ ଭରିଦେଲା । ବିଶିଷ୍ଟ ବ୍ୟକ୍ତିଙ୍କ ସମାବେଶରେ ଯୋଗ୍ୟତା ପ୍ରଦର୍ଶନ କରିବାକୁ ଆହ୍ୱାନ କରିଗଲେ ଶ୍ରେଷ୍ଠପିଲଟିଏ କେତେ ନାଃସଙ୍ଗ ଓ ନିଃସହାୟ ବୋଧକରେ—ମନେହେଲା ସତେ ଯେପରି ସମବେତ ସମସ୍ତ ସାମରିକ କର୍ମକର୍ତ୍ତା ଓ ନିର୍ଦ୍ଦେଶକଙ୍କ ମଧ୍ୟରୁ କେବଳ ସେ ହିଁ ତାହା ଅନୁଭବ କରିପାରୁଛନ୍ତି ।

ଆମକୁ ୪୫୦ ମାର୍ଟିନି କାର୍ବାଇନ୍ ଚଳାଇବା ପାଇଁ ତାଲିମ ଦିଆଯାଇଥିଲା । ଫାଏର୍ ହେବାବେଳେ ଏ ବନ୍ଧୁକ ପଛକୁ ପ୍ରଚଣ୍ଡ ଧକ୍‌କା ମାରେ । ବାରମ୍ବାର ବନ୍ଧୁକ ଧକ୍‌କା ବାଜି ମୋ କାନ୍ଧ ଭାରି ଦରଜ ହୋଇଥାଏ । କ୍ଷୀଣ ଦୁର୍ବଳ ଦେହରେ ଓ ବିଶେଷକରି କାନ୍ଧ ପାଖରେ ବନ୍ଧୁକ ଧକ୍‌କା ସମ୍ଭାଳି ନେଲାଭଳି ମାଂସ ଦୁଇପଲ ବି ନଥିଲା । ବନ୍ଧୁକମୁଠା ମାଡ଼ ହେଲେ କାନ୍ଧ କେଡ଼େ କାଟିବ—ତାହାର ଆଙ୍କୋରେ ମୁଁ ଆହୁରି ବେଶି ବ୍ୟସ୍ତ ଓ ବିବ୍ରତ ହୋଇପଡ଼ିଲି । କନିଷ୍ଠତମ କାଡ଼େଟ୍ ହେବାର ଦୋଷ ପାଇଁ ମୋତେ ଦଣ୍ଡ ଭୋଗିବାକୁ ପଡ଼ିବ ବୋଲି ମନକୁ ବୁଝାଇ ସର୍ଜେଣ୍ଟ-ମେଜରଙ୍କ ଆଦେଶରେ ଭୂଇଁରେ ବିଛାହୋଇଥିବା ତେଲଚକଟାବୋଲା ମଇଳା ପଶମ ସତରଞ୍ଜିଟିରେ ପେଟେଇ କରି ଶୋଇଲି । ମୋ ପାଇଁ ପାଞ୍ଚୋଟି ଗୁଳି ସେଠାରେ ଥୁଆହୋଇଥିଲା । ଗୁଳି ଭରିସାରି ବନ୍ଧୁକ ସଜକରି କାନ୍ଧକୁ ନେଲି ଓ ସାଧ୍ୟମତେ ଲକ୍ଷ୍ୟ କରି ଘୋଡ଼ା ଟିପିଲି । ଲୁହା ଗୁଳିମାରିରେ ଗୁଳି ବାଜିଲେ ପ୍ରବଳ ଝନତ୍କାରରେ ଚତୁର୍ଦ୍ଦିଗ ମୁଖରିତ ହୋଇଉଠେ । କିନ୍ତୁ ସୁପ୍ରସିଦ୍ଧ ସେଇ ଶବ୍ଦଟି ପରିବର୍ତ୍ତେ

Digitized by srujanika@gmail.com

ଅପ୍‌କଣ ଆବାଜ ହୋଇ ଗୁଳି ଭୂଇଁରେ ବାଜିଥିବା କଥା ସୂଚାଇଦେଲି । ଏଡକବେଳେ ପଣଦେର୍ଶନକାରୀ ଅଫିସର ମୋ ପଛରେ ଆଇ ବ୍ୟଙ୍ଗ ସ୍ୱରରେ କହିଲେ, "ଠିକ୍ ଅଛ ପର୍ଜେଣ୍ଟ ମେଜର, ଏ ପିଲ କଥା ମୁଁ ନଜେ ବୁଝୁଛି ।" ଜାଙ୍କର ବହୁବର୍ଷ ସୁନ୍ଦର ପଣଧୈର୍ଯ୍ୟର ପଣଚ୍ଛନ୍ନତା ପ୍ରତ ଦୃଷ୍ଟି ନ ଦେଇ ତେଲିଆ ସତ୍ତରଞ୍ଜିରେ ମୋ ପାଖରେ ସେ ଶୋଇପଡ଼ିଲେ ଓ ବନ୍ଧୁକ ମାଗି ନେଇ ନଜେ ତାର ମାଛିକୁ ଦୁଇଶହ ଗଜ ଦୂରତା ପାଇଁ ସଜାଡ଼ିଦେଲେ । ପ୍ରବଳ ଉଦ୍‌ବେଗ ଓ ଉତ୍କଣ୍ଠା ଯୋଗୁ ସେତକ କରିବାକୁ ମୁଁ ପୂର୍ବରୁ ଭୁଲିଯାଇଥିଲି । ଧୀରସ୍ଥିର ଭାବେ ନଶାଣ କରିବା ପାଇଁ ଯଥେଷ୍ଟ ସମୟ ନେବାକୁ ମୋତେ ଅତି କୋମଳ ସ୍ୱରରେ ପରାମର୍ଶ ଦେଇ ଅଫିସର ମୋ ହାତକୁ ରାଇଫଲ୍ ବଢ଼ାଇଦେଲେ ।

ପରେ ପରେ ପୂର୍ବେଟି ଗୁଳି ଚଳାଇ ପ୍ରତ୍ୟେକଟିକୁ ସ୍ପନ୍ଦମାଣରେ ବଜାଇ ପାରିଲି । ମୋ ପିଠି ଆପ୍ଶେଇ ଦେଇ ଅଫିସର ଉଠି ଛିଡ଼ାହେଲେ ଓ ମୋ ସ୍କୋର କେତେ ହେଲ ବୋଲି ପଚାରିଲେ । ପ୍ରଥମ ଗୁଳିଟି ଲକ୍ଷ୍ୟସ୍ଥଳରେ ନ ବାଜିବା ହେତୁ ସମୁଦାୟ କୋଡ଼ିଏ ପଏଣ୍ଟରୁ ମୁଁ ଦଶ ପାଇଲି ବୋଲି ଉତ୍ତର ଦେଲି । "ସାବାସ୍ ! ଚମତ୍କାର ନଶାଣ କଲ !" ବୋଲି ମୋର ତାରିଫ୍ କରି ଅଫିସର ତାଙ୍କ ସହକାରୀଙ୍କ ଗହଣକୁ ଫେରିଗଲେ । ଖାଲି ମୋର କୁଣ୍ଠେମୋଟ । ଧାଡ଼ିକୁ ଫେରିଲିବେଳେ ଆନନ୍ଦରେ ଗୋଡ଼ ତଳେ ଲାଗୁ-ନଥାଏ । ସେ ଆନନ୍ଦ କିନ୍ତୁ ବେଶି ବେଳ ରହିଲି ନାହିଁ, ଦୂରରୁ ସାଥୀମାନଙ୍କର ସ୍ୱାଗତ ସମ୍ଭାଷଣ କାନରେ ବାଜିବା ମାତ୍ରେ ମୁହୂର୍ତ୍ତିକେ ତାହା ବାଷ୍ପବତ୍ ଉଭେଇଗଲା । "ଏଡ଼େ ବାଜେ ନଶାଣ !" "କମ୍ପାନୀ ନାଁରେ ଚୂନକାଲି ଲଗାଇଦେଲି !" "ଅଖିବୁଜି କରି ବି ଏହାଠାରୁ ଭଲ ନଶାଣ ହୋଇଥାଆନ୍ତା !" "ହେଇ ପ୍ରଥମ ଗୁଳିଟା—ଶହେ ଗଜ ନ ଯାଉଣୁ ଭୂଇଁରେ ବାଜିଲା ।" ଇତ୍ୟାଦି ଇତ୍ୟାଦି ନାନା ମନ୍ତବ୍ୟ ଆତ୍ମପ୍ରସାଦର ତୁଙ୍ଗ ଶିଖରରୁ ମୋତେ ରସାତଳକୁ ଟାଣିଆଣିଲା । ସାନ ସାନ ପିଲଙ୍କ କଥାବାର୍ତ୍ତା ସବୁଦିନେ ଏମିତି । ସେମାନଙ୍କ ମନ୍ତବ୍ୟ ନର୍ଦ୍ଦୟ ଓ ନଷ୍ଠୁର ମନେହେଲେ ମଧ୍ୟ ତାହା ମୂଳରେ ଉଦ୍ଦେଶ୍ୟ ବା ଅଭିସନ୍ଧି ନଥାଏ । ବୟସ୍କମାନଙ୍କ ପରି ମନଜଗା କଥା ସେମାନେ କହନ୍ତି ନାହିଁ । ଯେତେବେଳେ ଯାହା ମନକୁ ଆସେ, ତାହା ମୁହଁ ଖୋଲି କହିଦଅନ୍ତି ।

ଶୁଖାତାଲି ରାଇଫଲ୍ ମଇଦାନ୍‌ରେ ଯେଉଁ ସାମରିକ ଅଫିସର ଗୋଟିଏ ଶ୍ଳେଟ ପିଲର ଲୁପ୍ତ ଆତ୍ମବିଶ୍ୱାସକୁ ଫେରାଇ ଆଣିବାପାଇଁ ନଜର ଉଚ୍ଚ ଆସନରୁ ତଳକୁ ଓହ୍ଲାଇ ଆସିଥିଲେ, ପରେ ସେ ଫିଲ୍ଡ୍ ମାର୍ଶାଲ୍ ଅର୍ଲ୍ ରବର୍ଟସ୍ ଭାବେ ତାଙ୍କ ଦେଶ ଓ ଜାତିର ଇତହାସରେ ଅମର ହୋଇ ରହିଲେ । ବାଲ୍ୟଜୀବନରେ ସାମାନ୍ୟ କେତୋଟି ମୁହୂର୍ତ୍ତ ପାଇଁ ତାଙ୍କ ସଂସ୍ପର୍ଶରେ ଆସି ଯେଉଁ ମହାନ୍ ଶିକ୍ଷା ପାଇଥିଲି, ତାହା ଜୀବନସାରା ଭୁଲିନାହିଁ । ପରବର୍ତ୍ତୀ ଜୀବନରେ ଅତି ବିପଦଜନକ ପରିସ୍ଥିତିରୁ ଉଦ୍ଧାର ପାଇବା ପାଇଁ ମୋତେ ବହୁବାର ଗୁଳି ଚଳାଇବାକୁ ପଡ଼ିଛି—ନାନା ଗୁରୁତ୍ୱପୂର୍ଣ୍ଣ ବିଷୟରେ ଶେଷ ସିଦ୍ଧାନ୍ତ ମଧ୍ୟ ଗ୍ରହଣ କରିବାକୁ ହୋଇଛି । ସେ ସବୁ ସମୟରେ ପ୍ରବଳ ଉଦବେଗ ଓ ଉତ୍କଣ୍ଠା ଯୋଗୁ ମନ ଚଞ୍ଚଳ ହୋଇ-

Digitized by srujanika@gmail.com

ଉଠିଲେ ଅସ୍ଥିର ନ ହୋଇ ଧ୍ୟାନ ଓ ଧୈର୍ଯ୍ୟର ସହ କାର୍ଯ୍ୟ କରିବାକୁ ସେହି ମହାପୁରୁଷଙ୍କ ଉପଦେଶ ପ୍ରତ୍ୟେକ ଥର ସ୍ମୃତିପଟରେ ଜାଗିଉଠେ । ବିପଦସଙ୍କୁଳ, ସମସ୍ୟାବହୁଳ ମୋର ଜୀବନରେ ସେତିକି ଉପଦେଶ ବହୁ ପରିସ୍ଥିତିରେ ମୋତେ ଯେପରି ସାହାଯ୍ୟ କରିଛି, ସେଥିପାଇଁ ସେହି ମହାନ ସୈନିକଙ୍କ ନିକଟରେ ମୁଁ ଆଜୀବନ କୃତଜ୍ଞ ।

ଉପର୍ଯ୍ୟୁକ୍ତ ଘଟଣାରେ ସର୍ଜେଣ୍ଟ-ମେଜରଙ୍କ ଭୂମିକା ସଂକ୍ଷେପରେ ବର୍ଣ୍ଣନା କରିଛି । ଏହା ପରଠାରୁ ବହୁବର୍ଷଯାଏ ନିଜର ଉଗ୍ରମୂର୍ତ୍ତି ଓ କଠୋର ଶାସନଦ୍ୱାରା ସ୍ୱେଚ୍ଛାସେବକ ବାହିନୀର ଶିକ୍ଷାର୍ଥୀମାନଙ୍କୁ ସେ ପୂରାପୂରି ଜବତ କରି ରଖିଥିଲେ । ଅଳ୍ପ ଉଚ୍ଚ ଓ ସ୍ଥୂଳକାୟ ଏହି ପଦାଧିକାରୀଙ୍କ ଅନ୍ତର ଯେ ଦୟାରେ ପରିପୂର୍ଣ୍ଣ, କଠୋରତାର ଆବରଣତଳୁ ତାହା ସହଜରେ ଦୃଶ୍ୟମାନ ହେଉ ନ ଥିଲା । ସେବର୍ଷ ତାଲିମ କାର୍ଯ୍ୟକ୍ରମ ଶେଷ ହେବା ପରେ ମୋତେ ପାଖକୁ ଡାକି ଛୁଟିରେ ମୁଁ ରାଇଫଲ୍‌ଟିଏ ଘରକୁ ନେବାକୁ ଚାହୁଁଛି କି ବୋଲି ସେ ପଚାରିଲେ । କମ୍ପସ୍ୱରେ, ଆନନ୍ଦରେ ହସିବାକୁ ହୋଇ ମୁଁ ଛିଡ଼ାହୋଇ ରହିଗଲି । ଉତ୍ତର ପାଇଁ ଅପେକ୍ଷା ନ କରି ନିଜଆଡ଼ୁ ସେ କହିଲେ, "ଘରକୁ ଯିବା ପୂର୍ବରୁ ଗୋଟିଏ ସର୍ଭିସ୍ ରାଇଫଲ୍ ଓ ଯାହା ଗୋଳାଗୁଳି ଦରକାର ମୋଠାରୁ ନେଇଯିବ । କିନ୍ତୁ ରାଇଫଲ୍ ସଫାସୁତୁରା କରି ହେପାଜତରେ ରଖିବ; ଆଉ ଫମ୍ପାଗୁଳିର ଖୋଳତକ ଛୁଟି ପରେ ମୋତେ ଫେରାଇ ଦେବ—ଏହି ଦୁଇଟି କଥାର ନିର୍ଭରେ ଜବାବ ଦେଲେ ମୁଁ ଗୁଳି ଓ ରାଇଫଲ୍ ଦେବି ।"

ସେ ବର୍ଷ ଶୀତଦିନେ ସଙ୍ଗରେ ରାଇଫଲ୍ ଓ ଯଥେଷ୍ଟ ଗୁଳି ନେଇ କାଲାଦୁଙ୍ଗୀ* ଗଲି । ସର୍ଜେଣ୍ଟ-ମେଜର ବାଛି ବାଛି ୪୫୦ ରାଇଫଲ୍‌ଟିଏ ମୋତେ ଦେଇଥିଲେ । ଭାରୀଗୁଳି ଲାଗୁଥିବା ହେତୁ ଏ ୮ରଣର ରାଇଫଲ୍ ଖୁବ୍ ଜୋର୍‌ରେ ଧକ୍‌କା ମାରେ; ସ୍ଥିରଲକ୍ଷ୍ୟ ହୋଇଥିଲେ ମଧ୍ୟ ପିଲଙ୍କ ତାଲିମ୍ ପାଇଁ ତାହା ଉପଯୁକ୍ତ ବିବେଚିତ ହୁଏନାହିଁ । ସେ ଯାହା ହେଉ, ରାଇଫଲ୍‌ଟି ହାତକୁ ଆସିବା ପରେ ମୋ ଜୀବନର ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା । ଛୋଟିକିଣି, ଦାଚୁଲିଖଡ଼ା, ଧନୁଶର ଓ ଶେଷରେ ଦାରୁଖିଆ ବନ୍ଧୁକ ଧରି ମୁଁ ପର୍ଯ୍ୟାୟକ୍ରମେ ଜଙ୍ଗଲର ବେଶି ବେଶି ଭିତରକୁ ପ୍ରବେଶ କରୁଥିଲି । ରାଇଫଲ୍‌ଟି କରଗତ

* ଲେଖକ କାଲାଦୁଙ୍ଗୀ ଗ୍ରାମସମୂହ ଅନ୍ତର୍ଗତ ଛୋଟି ହଲଦ୍ୱାନୀ ଗ୍ରାମର ବାସିନ୍ଦା । ସେ ସେହିଠାରେ ଶୀତଦିନ ଅତିବାହିତ କରୁଥିଲେ—ଅନୁବାଦକ ।

Digitized by srujanika@gmail.com

ହେବା ପରେ ଜଙ୍ଗଲର ଗହ୍ୱରତମ ଅଂଶମାନଙ୍କରେ ଅବାରିତ ପ୍ରବେଶ ପାଇଁ ପଥ ଉନ୍ମୁକ୍ତ ହୋଇଗଲା ।

ବିପଦର ଭୟ ଜଙ୍ଗଲବାସୀ ଜୀବଜନ୍ତୁଙ୍କୁ ସଦା ସତର୍କ ରଖେ, ସେମାନଙ୍କ ଚେତନାକୁ ଶାଣିତ ଓ ତୀକ୍ଷ୍ଣତର କରେ ଏବଂ ଦୈନନ୍ଦିନ ଜୀବନରେ ଉତ୍ତେଜନାପୂର୍ଣ୍ଣ ଏହି ଉପାଦାନ ସଂଯୋଗ କରି ବଞ୍ଚିରହିବାର ଅନୁଭୂତିକୁ ଅଧିକ ଆମୋଦମୟ ଓ ମାଦକତାଭରା କରିଥାଏ । ପ୍ରାଣ ପ୍ରତି ଅହରହ ବିପଦ ମନୁଷ୍ୟ ଉପରେ ମଧ୍ୟ ଅନୁରୂପ ପ୍ରଭାବ ପକାଏ । ବିପଦର ଭୟଯୋଗୁ ଜଙ୍ଗଲରେ ନିଃଶବ୍ଦରେ ଅଗ୍ରସର ହେବା, ଗଛ ଚଢ଼ିବା ଓ ନିର୍ଭୁଲ ଭାବେ ଶବ୍ଦଭେଦ କରିବାକୁ ଶିଖିଥିଲି । ରାଇଫଲ୍ ପାଇବା ପରେ ନିପଟ ଗଭୀର ଜଙ୍ଗଲରେ ପ୍ରବେଶ କରିବାର ଆକର୍ଷଣ ଓ ଅଭିଳାଷ ବଢ଼ିବା ସଙ୍ଗେ ସଙ୍ଗେ ରାଇଫଲ୍‌କୁ ଉତ୍ତମରୂପେ ବ୍ୟବହାର କରିବା ଏବଂ ନିଜର ଦୃଷ୍ଟି ଓ ଶ୍ରବଣେନ୍ଦ୍ରିୟର ସମ୍ପୂର୍ଣ୍ଣ ସଦୁପଯୋଗ କରିପାରିବା ଏକାନ୍ତ ଆବଶ୍ୟକ ହୋଇପଡ଼ିଲା ।

ଜଙ୍ଗଲରେ ସାଧାରଣ ପଶୁଜନ୍ତୁଙ୍କ ଛଡ଼ା ବିଷାକ୍ତ ସାପ ଓ ଆହତ ହିଂସ୍ରଜନ୍ତୁଙ୍କଦ୍ୱାରା ଆକ୍ରାନ୍ତ ହେବାର ବିପଦ ପ୍ରତି ପଦରେ ଲାଗିରହିଥାଏ । ତେଣୁ ନିର୍ଦ୍ଦିଷ୍ଟ କୌଣସି ଦିଗକୁ ଦୃଷ୍ଟିଦେବା ସଙ୍ଗେ ଅର୍ଦ୍ଧବୃତ୍ତାକାର ନିଜର ଦୃଷ୍ଟି କ୍ଷେତ୍ରର ପ୍ରତ୍ୟେକ ଅଂଶ ଉପରେ ଦୃକ୍‌ପାତ କରିବା ଏକାନ୍ତ ଆବଶ୍ୟକ ହୋଇପଡ଼େ । ସମୀପବର୍ତ୍ତୀ ସ୍ଥାନମାନଙ୍କର ଅତି ସାମାନ୍ୟ ସଞ୍ଚଳନ ସହଜରେ ଦୃଷ୍ଟିଗୋଚର ହେବା ସ୍ୱାଭାବିକ; କିନ୍ତୁ ଦୃଷ୍ଟିକ୍ଷେତ୍ରର ଦୁଇ ପ୍ରାନ୍ତରେ ବସ୍ତୁ ବା ସଞ୍ଚଳନ ଅତି ଅସ୍ପଷ୍ଟ ହେଉଥିବାରୁ ସେହିଠାରୁ ହିଁ ବିପଦର ସର୍ବାପେକ୍ଷା ଅଧିକ ଆଶଙ୍କା ଥାଏ ।

ଜଙ୍ଗଲର ସାଧାରଣ ଜୀବଜନ୍ତୁ ବିନା କାରଣରେ କାହାକୁ ଆକ୍ରମଣ କରନ୍ତି ନାହିଁ । କିନ୍ତୁ ଜଙ୍ଗଲରେ ଅତି ଅପ୍ରତ୍ୟାଶିତଭାବେ ଏଭଳି ବହୁ ପରିସ୍ଥିତି ସୃଷ୍ଟି ହୁଏ, ଯାହା ସେମାନଙ୍କୁ ଆକ୍ରମଣମୁଖୀ କରିଦିଏ । ସେ ଧରଣର ଅନର୍ଥକ ପରିସ୍ଥିତି ଯେପରି ନଘଟେ, ଜଙ୍ଗଲରେ ଅଗ୍ରସର ହେଲାବେଳେ ସମଗ୍ର ଦୃଷ୍ଟିକ୍ଷେତ୍ର ଉପରେ ତୀକ୍ଷ୍ଣ ନଜର ରଖି ସେଥିପ୍ରତି ବିଶେଷ ସାବଧାନ ରହିବାକୁ ପଡ଼େ । ଥରେ ଗଛ କୋରଡ଼ ମୁହଁରେ ସାପ ଜିଭ ଲହଲହ କରୁଥିବା ଠିକ୍ ସମୟରେ ଦେଖିଦେଇ ଗୋଖରସାପ ଚୋଟ ମାରିବା ପୂର୍ବରୁ ମୁଁ ହୁସିଆର ହୋଇଗଲି ଆଉ ଥରେ ବୁଦା ପଛରୁ ଆହତ ଚିତାବାଘର ଲାଙ୍ଗୁଡ଼ର ଅଗଟି କେବଳ ଛଟଛଟ ହେଉଥିବା ଲକ୍ଷ୍ୟ କରିପାରି ଆସନ୍ନ ଆକ୍ରମଣରୁ ନିଜକୁ ବଞ୍ଚାଇ ପାରିଲି । ଏହି ଦୁଇଟି ଘଟଣାରେ ଦୃଷ୍ଟି-କ୍ଷେତ୍ରର ଶେଷ ପ୍ରାନ୍ତରେ ହିଁ ଅତି ସାମାନ୍ୟ ସଞ୍ଚଳନ ଘଟିଥିଲା ଏବଂ ମୋର ଦୃଷ୍ଟି ସମ୍ମୁଖକୁ ଥିବା ସତ୍ତ୍ୱେ ତାହା ଲକ୍ଷ୍ୟ କରିପାରି ଘୋର ବିପଦରୁ ମୁଁ ନିଷ୍କୃତି ପାଇଥିଲି ।

ଦାରୁଖିଆ ବନ୍ଧୁକ ପାଇବାଦିନୁ ଗୁଳିବାରୁଦ ଜଗିରଖି ଖର୍ଚ୍ଚ କରିବାକୁ ଶିଖିଥିଲି । ତେଣୁ ଗୃହମାରରେ ରାଇଫଲ୍ ନିଶାଣ ନକରି ବଣକୁକୁଡ଼ା ଓ ମୟୂର ଆଦି ପକ୍ଷୀଙ୍କ ଉପରେ ହିଁ

Digitized by srujanika@gmail.com

ଲକ୍ଷ ଅଭ୍ୟାସ କଲି । ପକ୍ଷୀଙ୍କ ପାଖକୁ ଲୁଚିଛପି ଯିବା କଷ୍ଟକର ଓ ସମୟସାପେକ୍ଷ ହୋଇଥିଲେ ମଧ୍ୟ ଅଧୈର୍ଯ୍ୟ ନହୋଇ ଜୀବନ୍ତ ଶରବ୍ୟ ଉପରେ ହିଁ ନିୟମିତ ଲକ୍ଷ କରିବାକୁ ଲାଗିଲି । ରାଇଫଲ୍ ଗୁଳି ଠିକ୍ ଜାଗାରେ ନ ବସିଲେ ପକ୍ଷୀର ଦେହ ଛିନ୍ନଭିନ୍ନ ହୋଇ ଅଉ ଖାଦ୍ୟୋପଯୋଗୀ ହୁଏ ନାହିଁ । ଲକ୍ଷ ଅଭ୍ୟାସ କରୁଥିବାବେଳେ ଥରେ ମାତ୍ର ପକ୍ଷୀଟିଏ ଚୁଲିମାଡ଼ରେ ଯେପରି ନଷ୍ଟ ହୋଇଥିବା ମୋର ମନେଅଛି । ସମୟକ୍ରମେ ନିଶାଣରେ ଉନ୍ନତି ଘଟିଲା ଓ ସେଥି ସଙ୍ଗେ ଆତ୍ମବିଶ୍ୱାସ ମଧ୍ୟ ବଢ଼ିଲା । ଜଙ୍ଗଲର ଯେଉଁ ସ୍ଥାନମାନଙ୍କରେ ପାଦ ଦେବାକୁ ଡରୁଥିଲି, ରାଇଫଲ୍ ଧରି ସେଠାରୁ ନିର୍ଭୟରେ ପ୍ରବେଶ କରିପାରିଲି ।

ଗାଁପାଖ ଜଙ୍ଗଲରେ ବଡ଼ ବଡ଼ ଗଛ ଓ ଗହଳ ଝାଟିଭରା ଏକ ଅଂଶକୁ ଆମ ପରିବାରର ସମସ୍ତେ 'ଫାର୍ମୟାର୍ଡ୍' ଆଖ୍ୟା ଦେଇଥାଉ । ଅଳ୍ପ କେତେ ବର୍ଗମାଇଲ ପରିମିତ ସ୍ଥାନଟିରେ ସେତେବେଳେ ବଣକୁକୁଡ଼ା ଓ ମହାବଳ ବାଘ 'ହାଉଯାଉ' ହେଉଥାଆନ୍ତି । 'କୋଟା' ସହିତ 'କାଲାଡୁଙ୍ଗୀ'କୁ ସଂଯୋଗ କରୁଥିବା ସଡ଼କଟି ସେହି ଜଙ୍ଗଲ ଭିତରଦେଇ ଯାଇଛି । ଏହାର ବହୁ ବର୍ଷ ପରେ ଆମ ଗାଁକୁ ଡାକ ନେଇ ଆସୁଥିବା ଜଣେ ଡାକହରକରା ସଡ଼କର ସେହିଠାରେ ପ୍ରସିଦ୍ଧ ବାଘ 'ପୌଲଗଡ଼ର କୁମାର'*ର ପାହୁଲ ଦାଗ ଦେଖି ତାର ସନ୍ଧାନ ପାଇବା ପାଇଁ ମୋତେ ସୁଯୋଗ ଦେଇଥିଲା ।

ଧନୁଶରେ ଓ ଦାରୁଖୁନ୍ଦା ବନ୍ଧୁକ ନେଇ ଜଙ୍ଗଲକୁ ଗଲାବେଳେ ବାଘଭୟରେ 'ଫାର୍ମୟାର୍ଡ୍'ରେ ନ ପଶି ବଣ ବାହାରେ ବାହାରେ ବୁଲି ମୁଁ ଅନ୍ୟଆଡ଼େ ଯାଉଥିଲି । ରାଇଫଲ୍ ପାଇବା ପରେ ସେଠାକାର ଘଞ୍ଚ ଜଙ୍ଗଲଟିରେ ପାଦ ଦେବାକୁ ସାହସ କଲି । ଅଳ୍ପ ଓସାର ଖୋଲଟିଏ ସେଠାରେ ଜଙ୍ଗଲ ମଝିଦେଇ ସୀମା ପର୍ଯ୍ୟନ୍ତ ଲମ୍ବିଛି । ଦିନେ ସନ୍ଧ୍ୟାବେଳେ ଗାଁଲୋକଙ୍କ ପାଇଁ ବାର୍‌ହାଟିଏ କିମ୍ବା ଘର ପାଇଁ ଅନ୍ତତଃ ଚଢ଼େଇଟିଏ ମାରିବା ଆଶାରେ ସେହି ଖୋଲରେ ପଶି ଅଗୋଉ ଅଗୋଉ ଡାହାଣ ପାଖ ଜଙ୍ଗଲରେ ବଣକୁକୁଡ଼ା ଶୁଖିଲା ପତ୍ର ଖେଳାଉଥିବା ଶୁଣିଲି । ଖୋଲ ଡାହାଣ ବନ୍ଧର ଗୋଟିଏ ପଥରରେ ଚଢ଼ି ଅତି ସନ୍ତର୍ପଣରେ ମୁଣ୍ଡ ଟେକି ଅନାଇ ଦେଖିଲି ଯେ କୋଡ଼ିଏରୁ ତିରିଶଟି ବଣକୁକୁଡ଼ା ମୋ ଆଡ଼କୁ ମୁହାଁଇଁ ଶୁଖିଲା ଘାସ ପତ୍ର ଖେଳାଇ ଚରିବାରେ ଲାଗିଛନ୍ତି । ସୁନ୍ଦର ପହୀଫର ଥିବା ବଡ଼ ଗଞ୍ଜାଟିଏ ଦଳ ଆଗରେ ଥିଲା । ଗୁଳି ଭେଦିବା ପାଇଁ ଗଛ ଆଦି କୌଣସି ଶକ୍ତ ଜିନିଷ ପଛରେ ନ ଥିଲେ ପକ୍ଷୀଙ୍କୁ ମୁଁ ଗୁଳି କରେ ନାହିଁ । ଗଞ୍ଜାଟିକୁ ଶିକାର ଭାବେ ବାଛିନେଇ ସେ ଗଛ ସାମନାକୁ ଆସିବାକୁ ଅପେକ୍ଷା କରିଛି, ଏତିକିବେଳେ ଖୋଲ ବାଁପାଖ ଜଙ୍ଗଲରେ ବଡ଼ ଜନ୍ତୁଟିଏ ଲଟାବୁଦାରେ ପଶି ଆସୁଥିବା ଶୁଣିଲି । ସେଆଡ଼େ ବୁଲିପଡ଼ି ଦେଖିଲି—ବଡ଼ ଚିତାବାଘଟାଏ ଡେଇଁ ଡେଇଁ ପାହାଡ଼ରୁ ସଳଖରେ ମୋ'ରି ଆଡ଼କୁ ଗଡ଼ୁଛି । ସେଠାରୁ

---

* 'କୁମାୟୁଁର ନରଖାଦକ' ବହିଟି ଦ୍ରଷ୍ଟବ୍ୟ—ଅନୁବାଦକ ।

Digitized by srujanika@gmail.com

ଦୁଇଣ୍ଡେ ଗଜ ଉପରକୁ 'କୋଣ୍ଟା' ସଡ଼କର ବୁଲଣି; ସଡ଼କ ସେଠାରେ ପାହାଡ଼ କଡ଼େ କଡ଼େ ବୁଲି ଅରପାଖକୁ ଯାଇଛି । ଶତାବାଘ କୌଣସି କାରଣରୁ ମୋଡ଼ ପାଖରୁ ହୁଡ଼ୁଡ଼ି ଯାଇ ଆଶ୍ରୟ ସନ୍ଧାନରେ ଏଆଡ଼େ ଆସିଛି ବୋଲି ଅନୁମାନ କଲି । ଚିତାବାଘକୁ ଦେଖି କାଣ୍ଡେଲୁଡ଼ାପାଲକ ତେଣା ଫଡ଼ଫଡ଼ କରି ଉଡ଼ିଗଲେ । ସେ ଶବ୍ଦରେ ଚିତାବାଘର ଧ୍ୟାନଚ୍ୟୁତ ଘଟିଥିବାର ସୁଯୋଗ ନେଇ ମୁଁ ବୁଲିପଡ଼ି ତା'ର ଆଡ଼କୁ ମୁହାଁଇ ରହିଗଲି । ଶତାବାଘ ମୋତେ ଦେଖି ନ ପାରି ଖୋଲି ବାଁବନ୍ଧରେ ଅସି ପହଞ୍ଚିଗଲା ।

ଖୋଲ ସେଠାରେ ପ୍ରାୟ ପନ୍ଦର ଫୁଟ ଓସାର; ତାର ଢଣ ବାଁବନ୍ଧଟି ସେଠାରେ ପ୍ରାୟ ବାରଫୁଟ ଓ ଡାହାଣବନ୍ଧ ଅଠଫୁଟ ଉଚ । ଡାହାଣ ବନ୍ଧ ଧାରରୁ ପ୍ରାୟ ଦୁଇଫୁଟ ତଳକୁ ଗୋଟିଏ ପଥର ଉପରେ ମୁଁ ବସିଥାଏ । ଶତାବାଘ ବାଁବନ୍ଧରେ ମୋଠାରୁ ଦୁଇଫୁଟ ଉଚରେ ଓ ବାରଫୁଟ ଦୂରରେ ଥାଏ । ଖୋଲ ଧାରରେ ପହଞ୍ଚିବା ମାତ୍ରେ ଶତାବାଘ ପଛକୁ ମୁହଁ ବୁଲାଇ ତା ଅସିବା ବାଟକୁ ଥରେ ଫେରି ଚାହିଁଲା । ସେହି ଅବସରରେ ମୁଁ ରାଇଫଲ ଉଠାଇ ତା ଗ୍ରୀବାକୁ ଲକ୍ଷ୍ୟ କଲି ଓ ଶତାବାଘ ମୁହଁ ଫେରାଇବା ମାତ୍ରେ ଘୋଡ଼ା ଟିପିଦେଲି । କଳାବାରୁଦର ବହଳ ଧୂଆଁ ଭିତରେ ଶତାବାଘ ମୋ ମୁଣ୍ଡ ଉପର ଦେଇ ଖୋଲ ଡାହାଣ ବନ୍ଧକୁ କୁଦିବା ଅତି ଅସ୍ପଷ୍ଟଭାବେ ଦେଖିଦେଲି । ଟୋକା ଟୋକା ରକ୍ତ ଝରି ମୋ ଲୁଗାପଟା ଓ ପଥରଟି ପୂରି ଭିଜିଗଲା ।

ଗୁଳିଟିଏ ନିର୍ଭୁଲ ଭାବେ ଲକ୍ଷ୍ୟସ୍ଥଳରେ ବସାଇ ଦେଇ ପାରିବା—ସାମାନ୍ୟ ସେତିକି ସାମର୍ଥ୍ୟ ଉପରେ ବିଶ୍ୱାସ ରଖି ନିର୍ବୋଧଙ୍କ ପରି ମୁଁ ଭାବିଥିଲି ଯେ ଗୁଳି ବାଜିବା ମାତ୍ରେ ଶତାବାଘ ସେହିଠାରେ ମରି ଢଳିପଡ଼ିବ । ଶତାବାଘକୁ ମାରିଦେବା ପରିବର୍ତ୍ତେ କେବଳ ଆହତ କରି ନିଜ ପ୍ରତି ଯେ ଘୋର ବିପଦ ବରଣ କରିଛି—ମୋତେ ବିବ୍ରତ କରିବା ଛଡ଼ା ଏହା ମୋର ଅତ୍ୟଧିକ ଆତ୍ମବିଶ୍ୱାସ ମୂଳରେ କୁଠାରାଘାତ କଲା । ପ୍ରଚୁର ରକ୍ତସ୍ରାବ ଘଟିଥିବା ହେତୁ ଶତାବାଘ ସାଂଘାତିକ ଭାବେ ଆହତ ବୋଲି ଆଶା ହେଲା । କିନ୍ତୁ ଗୁଳି ତା ମର୍ମସ୍ଥଳରେ ବାଜିଛି କି ନାହିଁ ଏବଂ ସେଥିଯୋଗୁ ସେ ମରିବ କି ନାହିଁ—ରକ୍ତ ପରୀକ୍ଷାଦ୍ୱାରା କ୍ଷତର ସ୍ଥାନ ନିରୂପଣ ବା ଗୁରୁତ୍ୱ ନିର୍ଣ୍ଣୟ କରିବା ଭଳି ଜ୍ଞାନ ନ ଥିବାରୁ ତାହା ମଧ୍ୟ କଳନା କରିପାରିଲି ନାହିଁ । ଏଣେ ଆହତ ଶତାବାଘକୁ ସଙ୍ଗେ ସଙ୍ଗେ ଅନୁସରଣ କରି ନିକାଶ ନ କଲେ ସେ ଦୁର୍ଗମ ଜଙ୍ଗଲ ବା ପଥରଖୋଲରେ ଛପିଯାଇ ପରେ ବିଷମ ଅନର୍ଥ ଘଟାଇବ । ଏହି ଆଶଙ୍କାରେ ବନ୍ଧୁକରେ ପୁଣି ଗୁଳି ଭରି ଖୋଲ ଡାହାଣ ବନ୍ଧକୁ ଚଢ଼ିଲି ଓ ରକ୍ତଧାର ଠଉରାଇ ଶତାବାଘକୁ ଅନୁସରଣ କରିବାକୁ ଆରମ୍ଭ କଲି ।

ଖୋଲବନ୍ଧରୁ ପ୍ରାୟ ଶହେ ଗଜ ଯାଏ ଅଳ୍ପ କେତୋଟି ବୁଦା ଓ ଗଛ ଥିବା ଚଟକା ଭୂଇଁ ପଡ଼ିଲା । ସେଠାରୁ ପାହାଡ଼ କଡ଼ ଉପରେ ଶହ ପଚିଶ ଗଜ ତଳେ ଆଉ ଚକଡ଼ାଏ ଚଟକା ଜାଗା ସହିତ ମିଶିଥାଏ । ପାହାଡ଼ର ଢାଲ ଗଡ଼ାଣି ଝଙ୍କାଳିଆ ବୁଦା ଓ

Digitized by srujanika@gmail.com

ବଡ଼ ବଡ଼ ପଥରରେ ଭର୍ତ୍ତି । ସେଥିରୁ ଯେକୌଣସିଟି ପଛରେ ଚିତାବାଘ ଛପି ରହିଥିବାର ବିଶେଷ ସମ୍ଭାବନା । ଅତି ସନ୍ତର୍ପଣରେ ସେ ସବୁକୁ ତନ୍ନତନ୍ନ କରି ପରୀକ୍ଷା କରି ଗଡ଼ାଣିରେ ପ୍ରାୟ ଅଧାଅଧି ଓହ୍ଲାଇଛି, ଏତିକିବେଳେ କୋଡ଼ିଏ ଫୁଟ୍ ଦୂର ଗୋଟିଏ ପଥର ପଛରୁ ଚିତାବାଘର ଲାଞ୍ଜ ଓ ପଛ ଗୋଡ଼ିଟିଏ ପଦାକୁ ବାହାରିଥିବା ଦେଖିଲି । ଚିତାବାଘ ବଞ୍ଚିଛି ନା ସେହିଠାରେ ପଡ଼ି ମରିଯାଇଛି ଜାଣିବା ଦରକାର । ସମ୍ପୂର୍ଣ୍ଣ ନିଶ୍ଚଳ ହୋଇ ଅପେକ୍ଷା କରିଥିବା ଭିତରେ ଚିତାବାଘ ଗୋଡ଼ ଜାକିନେଲା, ଲାଞ୍ଜଟି କେବଳ ପଦାକୁ ଦିଶୁଥାଏ । ତାହାର କିମ୍ବା ଆଁକୁ ନ ଗଲେ ଗୁଳି ଚଳାଇବା ଅସମ୍ଭବ । ପରିସ୍ଥିତିର ସମୀକ୍ଷା କରି ଅତି ସରଳ ଓ ସହଜଭାବେ ସ୍ଥିର କରିନେଲି ଯେ ପୂର୍ବଥର ଦେହରେ ଗୁଳି ଖାଇ ଚିତାବାଘ ମରି ନ ଥିବାରୁ ଏଥର ତା ମୁଣ୍ଡକୁ ହିଁ ଗୁଳି କରାଯିବା ଉଚିତ । ଅତି ସାବଧାନରେ ଧୀରେ ଧୀରେ ଥରକେ ଇଞ୍ଚେ କରି ଗୋଡ଼ ବଢ଼ାଇ ଅଳ୍ପ ଆଗେଇବା ପରେ ଚିତାବାଘର ମୁଣ୍ଡ ନଜରକୁ ଆସିଲା । ପଥରକୁ ପିଠି ଲଗାଇ ମୋଠାରୁ ବିପରୀତ ଦିଗକୁ ମୁହାଁଇ କରି ସେ ଶୋଇଥିଲା । ମୁଁ କୌଣସି ଶବ୍ଦ କରି ନ ଥିଲେ ମଧ୍ୟ ସମ୍ଭବତଃ ଅବଚେତନ ମନର କୌଣସି ସଙ୍କେତରୁ ମୋର ଉପସ୍ଥିତି ସେ ଅନୁଭବ କରିନେଲା । ମୋ ଆଡ଼କୁ ମୁହଁ ବୁଲାଇ-ଦେବା ମାତ୍ରେ ଅଳ୍ପ ଦୂରରୁ ଅଚଞ୍ଚଳ ଭାବେ ଲକ୍ଷ୍ୟ କରି ତା କାନରେ ଗୁଳିଟିଏ ବସାଇଦେଲି ଓ ଚିତାବାଘ ମରିଗଲା ବୋଲି ଧରିନେଇ ବିନା ସଙ୍କୋଚରେ ପାଖକୁ ଯାଇ ଲାଞ୍ଜ ଧରି ଚକ୍ରମଳାରୁ ତାକୁ ଦୂରକୁ ଘୋଷାରି ଆଣିଲି ।

ଜୀବନରେ ପ୍ରଥମ ଥର ପାଇଁ ସେଦିନ ଚିତାବାଘଟି ଶିକାରଭାବେ ହାସଲ କଲି । ମଲା ଚିତାବାଘଟିକୁ ଅନାଇ ଛିଡ଼ା ହୋଇଥିବାବେଳେ ମୋର ମନର ଅବସ୍ଥା କଣ ଥିଲା ତାହା ବର୍ଣ୍ଣନା କରିବା ସମ୍ଭବ ନୁହେଁ । ଚିତାବାଘ ପାହାଡ଼ରୁ ଓହ୍ଲାଉଥିବା ବେଳୁ ଲାଞ୍ଜ ଧରି ତାକୁ ଘୋଷାରି ଆଣିବାଯାଏ ମୋ ହାତ ସମ୍ପୂର୍ଣ୍ଣ ସ୍ଥିର ଓ ନିଷ୍କମ୍ପ ରହିଥିଲା । ତା'ପରେ କିନ୍ତୁ ଦେହ ହାତ ଏତେ ଜୋର୍‌ରେ ଠକ୍ ଠକ୍ ଥରିବାକୁ ଲାଗିଲା ଯେ କୌଣସିମତେ ତାକୁ ରୋକି ପାରିଲି ନାହିଁ । ଯୋଉ ତାହାର ବନ୍ଧୁକୁ ନ ଡେଇଁ ଚିତାବାଘ ମାତ୍ର ଦୁଇଫୁଟ ତଳ ପଥର ଉପରକୁ କୁଦିପଡ଼ି ମୋତେ ସେହିଠାରେ ମାଡ଼ିବସିଲେ କଣ ଘଟିଥାଆନ୍ତା, ତାହା ଭାବିବା-ବେଳକୁ ପ୍ରବଳ ଆତଙ୍କରେ ଦେହ ଥରିବା ସ୍ୱାଭାବିକ । ଅପରପକ୍ଷେ ଏତେବଡ଼ ଚିତାବାଘଟିକୁ ମୁଁ ଯେ ଏକାକୀ ଶିକାର କରିଛି ଓ ଘରର ସମସ୍ତେ ଏଥିରେ କେତେ ଆନନ୍ଦ, କେତେ ଗୌରବ ଅନୁଭବ କରିବେ, ତାହା ଭାବିଲାବେଳକୁ ପ୍ରାଣ ମନ ଦେହ ଆନନ୍ଦରେ ନାଚି ଉଠିବା କଥା । ତେଣୁ ସେ ଧରଣର ଅଦମନୀୟ କମ୍ପନ ସୃଷ୍ଟିହେବା ମୂଳରେ ଦୁଃସାହସର ପ୍ରତିକ୍ରିୟା, ପ୍ରାଣର ଆତଙ୍କ ନା ମନର ଉଲ୍ଲାସ ଅଧିକ ଅଂଶ ଗ୍ରହଣ କରିଥିଲା, ତାହା କଳନା କରିବା ସହଜ ନୁହେଁ । ସେଦିନ ଉଚ୍ଚସ୍ୱରରେ ଚିତ୍କାର କରି ଗଗନ ପବନ କମ୍ପାଇ ଦେଇଥିଲେ କିମ୍ବା ଉଚ୍ଛୃଙ୍ଖଳ ଓ ଅସଂଯତ ଭାବେ ଗୀତ ଗାଇଥିଲେ ବା ନାଚିଥିଲେ ମନର ଆନନ୍ଦ ହୁଏତ ଆଂଶିକ ପ୍ରକାଶ ପାଇ ଥାଆନ୍ତା । କିନ୍ତୁ ସେସବୁ କିଛି ନ କରି ନୀରବ ଓ

Digitized by srujanika@gmail.com

ନିଶ୍ଚଳ ହୋଇ କେବଳ ଠକ୍ ଠକ୍ ଥରିବାକୁ ଲାଗିଲି । ଆତ୍ମହରା ଆନନ୍ଦ ଏକାନ୍ତରେ ଉପଭୋଗ କରି ହୁଏନା; ସମାନୁଭବୀ ଲୋକଙ୍କ ମେଳରେ ହିଁ ତାହା ଆସ୍ୱାଦନ କରିହୋଇ-ପାରେ । ନିର୍ଜନ ଜଙ୍ଗଲ ଭିତରେ ମନର ଅସୀମ ଆବେଗ ଓ ଉନ୍ମାଦନା ଏବଂ ପ୍ରାଣର ବିପୁଳ ପୁଲକର ପରିପ୍ରକାଶ ପାଇଁ ଉପଯୁକ୍ତ ସ୍ଥାନ, କାଳ ଓ ପାତ୍ରର ଅଭାବ ଥିଲା ବୋଧହୁଏ । ହୁଏତ ସେଇଥିପାଇଁ ଆନନ୍ଦରେ ଆତ୍ମହରା ହେବା ପରିବର୍ତ୍ତେ ମୁଁ ଛିଡ଼ାହୋଇ କେବଳ ଠକ୍ ଠକ୍ ଥରିବାକୁ ଲାଗିଲି ।

ଚିତାବାଘର ଓଜନ ସମ୍ବନ୍ଧରେ ମୋର କୌଣସି ଧାରଣା ନ ଥିଲା । ତେଣୁ ମନଖୁସିରେ ନିଜ ଶିକାରକୁ ନିଜେ ହିଁ ବୋହିନେବି ବୋଲି ସ୍ଥିର କଲି । ରାଇଫଲ୍ ତଳେ ରଖି ଜଙ୍ଗଲରୁ ଲଇ କାଟି ଆଣିଲି ଓ ତାକୁ ଦଉଡ଼ି ପରି ବଳି ଚିତାବାଘର ଗୋଡ଼ଗୋଡ଼କୁ ଏକାଠି ବାନ୍ଧିଲି । ତା'ପରେ ତଳେ ବସି ଗୋଡ଼ ମଝିରେ ଲଇ ଛନ୍ଦରେ ମୁଣ୍ଡ ଗଳାଇ ଦଉଡ଼ିକୁ କାନ୍ଧକୁ ନେଲି ସତ; କିନ୍ତୁ ସଳଖି ଛିଡ଼ାହୋଇ ପାରିଲି ନାହିଁ । ଚିତାବାଘକୁ ଘୋଷାରି ଘୋଷାରି ଆଣି ଗୋଟିଏ ପଥର ଉପରେ ଥୋଇ ଆଉ ଥରେ ଚେଷ୍ଟାକରି ସୁଦ୍ଧା ତାକୁ ଉଠାଇ ପାରିଲି ନାହିଁ । ଚିତାବାଘକୁ ନିହାତି ଗ୍ରୁଡ଼ିଯିବାକୁ ପଡ଼ିବ ଜାଣି ତାଳପତ୍ରରେ ତାକୁ ଭଲଭାବରେ ଘୋଡ଼ାଇ ଡନମାଇଲ ଦୂର ଆମ ଘରକୁ ଧାଇଁଲି । ଖବର କହିବାମାତ୍ରେ ଘରସାରା ଆନନ୍ଦର ଲହରୀ ଖେଳିଗଲା; କେଇମିନିଟ୍ ଭିତରେ ମ୍ୟାଗି ଓ ମୁଁ ଲୋକ ଦୁଇଜଣ ସଙ୍ଗରେ ନେଇ ଚିତାବାଘକୁ ଆଣିବାକୁ ବାହାରିପଡ଼ିଲୁ ।

କଥାରେ ଅଛି—'ଅରକ୍ଷିତକୁ ଦଇବ ସାହା ।' ମୋ ପରି ନିରୀହ ଓ ନିର୍ବୋଧ ଅର୍ବାଚୀନମାନଙ୍କୁ ତାଙ୍କର ଦୋଷତ୍ରୁଟି ପାଇଁ ପୂର୍ଣ୍ଣ ପରାଭବ ଦେବା ଯଦି ବିଧାତାଙ୍କ ଉଦ୍ଦେଶ୍ୟ ଥାଆନ୍ତା, ତେବେ ଚିତାବାଘ ସହିତ ମୋର ପ୍ରଥମ ସଂଘର୍ଷ ଅନ୍ତିମ ସଂଗ୍ରାମରେ ହିଁ ପରିଣତ ହୋଇଥାନ୍ତା । ଚିତାବାଘ ମୋଠାରୁ ଉଚ୍ଚରେ ଓ ସାମାନ୍ୟ ବାରଫୁଟ ଦୂରରେ ଥିଲା ଏବଂ କୁଦାକେ ଅତି ସହଜରେ ମୋତେ ମାଡ଼ିବସିପାରିବ—ଗୁଳି ଚଳାଇବା ବେଳେ ଏସବୁ ପ୍ରତି ମୋର ଆଦୌ ଖିଆଲ ନ ଥିଲା । ସେଦିନଯାଏଁ ମୁଁ ଦାରୁଖିନ୍ଦା ବନ୍ଧୁକରେ ହରିଣଟିଏ ଓ ରାଇଫଲ୍‌ରେ ସମୁଦାୟ ତିନୋଟି ବଣଘୁଷୁରି ଓ ଗୋଟିଏ କୁଟୁରା ମାରିଥିଲି । କୁଟୁରା ଓ ଘୁଷୁରି ତିନୋଟି ଗ୍ରୁଡିରେ ଗୁଳିଖାଇ ସେଇଠାରେ ଟଳିପଡ଼ିଥିଲେ । ସାମାନ୍ୟ ସେତିକି ଅନୁଭୂତିରୁ ମୁଁ ଧାରଣା କରିଥିଲି ଯେ ଗ୍ରୁଡିରେ ଗୁଳି ବସିଗଲେ ଚିତାବାଘ ମଧ୍ୟ ତତ୍କ୍ଷଣାତ୍ ସଙ୍ଗେ ମରିପଡ଼ିଯିବ । ଏ ବିଗରେ ଅନୁଭୂତି ବଢ଼ିବା ପରେ ଶିକ୍ଷାହେଲା ଯେ, ଗୋଟିଏ ଗୁଳିରେ ଚିତାବାଘକୁ ମାରିଦେବାକୁ ହେଲେ ଗୁଳିଟି ତାର ମର୍ମସ୍ଥଳରେ ବାଜିବା ଦରକାର ଓ ଗ୍ରୁଡିକୁ ଗୁଳିକଲେ ଚିତାବାଘ ସାଧାରଣତଃ ମରେନାହିଁ ।

ଦେହରେ ଗୁଳି ଖାଇବା ପରେ ଚିତାବାଘ ଶିକାରୀକୁ ସାଧାରଣତଃ ଆକ୍ରମଣ କରେନାହିଁ । ଗୁଳି ବାଜିବାମାତ୍ରେ ନ ମଲେ ବା ଅଚଳ ହୋଇ ନ ଗଲେ; ଚିତାବାଘ କୁଦା ମାରି ସେଠାରୁ ପ୍ରାଣମୂର୍ଚ୍ଛା ପଳାୟନ କରେ; କିନ୍ତୁ ପଳାଇ ଯାଉ ଯାଉ ଶିକାରୀ ସହିତ

Digitized by srujanika@gmail.com

ଆକସ୍ମିକ ଭାବେ ଭେଟ ହୋଇଗଲେ ଆକ୍ରମଣ କରିବାକୁ ସେ ପଶ୍ଚାତ୍‌ପଦ ହୁଏନାହିଁ । ଚିତାବାଘ ଶିକାରୀଠାରୁ ଉଚ୍ଚରେ ଏବଂ ଲମ୍ଫ ଦେବାଭଳି ଦୂରତା ଭିତରେ ଥିଲେ ଏବଂ ବିଶେଷକରି ଶିକାରୀର ଅବସ୍ଥିତ ଚିତାବାଘକୁ ଜଣା ନ ଥିଲେ, ସେଭଳି ଆକସ୍ମିକ ଭେଟ ଓ ଆକ୍ରମଣର ସମ୍ଭାବନା ବହୁଗୁଣେ ବୃଦ୍ଧିପାଏ । ସେଦିନ ଚିତାବାଘ ଯେ ମୋ ଉପରକୁ ନ କୁଦି ଖୋଲା ଅରବିନ୍ଦକୁ ଡେଇଁଲା—ତାହାକୁ କପାଳକୋର୍ ଛଡ଼ା ଆଉ କିଛି କୁହାଯାଇ ନ ପାରେ । ଚିତାବାଘ ମୋତେ ଦେଖି ନଥିଲା । ତେଣୁ ସେ ପଳାଇ ଯାଉ ଯାଉ ବାଟରେ ମୋତେ ଅକସ୍ମାତ ଭେଟିଥିଲେ ପରିଣତି ମୋପାଇଁ ଅତି ଭୟାବହ ହୋଇଥାଆନ୍ତା ଏବଂ ଅପ୍ରତ୍ୟାଶିତ ଭାବେ ଘଟିଥିଲେ ମଧ୍ୟ ସେଭଳି ଆକ୍ରମଣର ବୀଭତ୍ସତା ଉଦ୍ଦେଶ୍ୟମୂଳକ ଆକ୍ରମଣଠାରୁ କୌଣସି ଗୁଣେ କମ୍ ହୋଇ ନ ଥାନ୍ତା ।

ଚିତାବାଘ ସ୍ବଭାବକୁ ଗୁରୁ କରିବା ଉପରେ ଯେ ଆସ୍ଥା ସ୍ଥାପନ କରିବା ଉଚିତ ନୁହେଁ, ତାହାର ଏକ ପ୍ରାମାଣିକ ଦୃଷ୍ଟାନ୍ତ ଏଠାରେ ଦେଉଛୁ । କାଲାଦୁଙ୍ଗୀ ଜଙ୍ଗଲରେ ଭଲ ଘାସପତ୍ର ନ ମିଳିଲେ ଗାଁଯାକର ଗାଈଗୋରୁଙ୍କୁ ଆମେ 'ମଙ୍ଗଲିଆ ଝରଣା' ଗୋଶାଳାକୁ ପଠାଇଦେଉ । ଥରେ ଶୀତଦିନେ ଚିତାବାଘଟାଏ ଆମ ଗାଈଗୋରୁଙ୍କୁ ମାରି ଖାଉଛି ବୋଲି ଖବର ପାଇ ମ୍ୟାଗି ଓ ମୁଁ 'ମଙ୍ଗଲିଆ ଝରଣା'ରେ ଡେରା ପକାଇଲୁ । ଦିନେ ସକାଳୁ ଡେରାରେ ବସି ଦୁହେଁ ଜଳଖିଆ କରୁଛୁ, ଏତିକିବେଳେ ଜଙ୍ଗଲରୁ ହରିଣପଲେ ବୋବାଇ ଉଠି ତାଙ୍କ ପଲରୁ ଗୋଟିକୁ ଚିତାବାଘ ମାରୁଥିବାର ସୂଚନା ଦେଲେ । ସେହି ଚିତାବାଘଟି ହୁଏତ ଆମ ଗୋରୁଙ୍କର ଅନିଷ୍ଟ କରୁଥିବ ବୋଲି ବିଚାରି ମୁଁ ଜଳଖିଆ ଛାଡ଼ି ଉଠିଗଲି ଓ କାଳବିଳମ୍ବ ନ କରି .୨୭୫ ରାଇଫଲ୍‌ଟିଏ ଧରି ଡେରାରୁ ବାହାରିପଡ଼ିଲି ।

ହରିଣପଲ ଡେରାର ପଶ୍ଚିମକୁ ପ୍ରାୟ ଚାରିଶହ ଗଜ ଦୂରରେ ବୋବାଉଥିଲେ । ସେଠାକୁ ସଳଖ ବାଟରେ ଦୁର୍ଗମ ବେତବଣ ଓ ପାଟ ଗୁଡ଼ାଏ ପଡ଼େ । ତେଣୁ ବାଟ ଛାଡ଼ି ଦକ୍ଷିଣଦିଗରୁ ବୁଲିଯାଇ ଅଗ୍ରସର ହେଲି । ପବନ ମୋ ଆଡ଼କୁ ବହୁଥିବାରୁ ହରିଣଗୁଡ଼ିକ ମୋ ଗନ୍ଧ ପାଇବାର ସମ୍ଭାବନା ନ ଥିଲା । ଛପି ଛପି ପାଖକୁ ଯାଇ ଦେଖିଲି ଯେ ବଣପୋଡ଼ିରେ ସଫା ହୋଇଯାଇଥିବା ଗୋଟିଏ ପଡ଼ିଆରେ ପ୍ରାୟ ପଚିଶଟି ହରିଣ ହରିଣୀ ବେତବଣକୁ ଅନାଇ ଛିଡ଼ାହୋଇଛନ୍ତି । ପଡ଼ିଆ ଓ ବେତବଣ ମଝିରେ ଗୋଟିଏ ସଙ୍କୀର୍ଣ୍ଣ ପାଟ ଓ ତା ଆରପାଖରେ ଦୁଇଶହ ଗଜ ଓସାର କେଡ଼ାଏ ଘଞ୍ଚ ଘାସବଣ । ମୋଠାରୁ ପ୍ରାୟ ଷାଠିଏ ଗଜ ଦୂରରେ ଚିତାବାଘଟିଏ ପ୍ରକାଣ୍ଡ ଗୋଟିଏ ମଲ୍ଲହରିଣକୁ ପଡ଼ିଆରୁ ଘୋଷାରି ଘୋଷାରି ନେଇ ଘାସବଣରେ ପୂରାଇବାକୁ ଚେଷ୍ଟା କରୁଥିଲା । ସେଠାରୁ ଆଉ ଆଗକୁ ଗଲେ ହରିଣପଲ ତରକିକରି ଆତଙ୍କଧ୍ୱନି ଦ୍ୱାରା ଚିତାବାଘକୁ ଚେତାଇଦେବେ । ତେଣୁ ସେହିଠାରୁ ହିଁ ଗୁଳି ଚଳାଇବାକୁ ସ୍ଥିର କରି ବସିପଡ଼ି ରାଇଫଲ୍ ସଜ କଲି ।

ପ୍ରକାଣ୍ଡ ମଲ୍ଲ ହରିଣଟିକୁ ଅସମତଳ ଭୂଇଁରେ ଚିତାବାଘ ଘୋଷାରି ପାରୁ ନ ଥାଏ । କିଛିବାଟ ତାକୁ ଟାଣି ଟାଣି ନେଲା ପରେ ଥକ୍କା ମାରିବା ପାଇଁ ସେ ଅଟକି ଛିଡ଼ାହେଲା ।

Digitized by srujanika@gmail.com

ସେତିକି ସୁଯୋଗ ପାଇଁ ମୁଁ ଅପେକ୍ଷା କରିଥିଲି । ଚିତାବାଘ ମୁଣ୍ଡ ଟେକିଦେବା ମାତ୍ରେ ତାର ଛୁପଛୁପକା ଛାତି ମୋର ସ୍ଥିରଲକ୍ଷ୍ୟ ରାଇଫଲ ପାଇଁ ଅତି ପ୍ରକୃଷ୍ଟ ଶରବ୍ୟର କାର୍ଯ୍ୟ କଲା । ଛାତିରେ ଗୁଳି ବସିଯିବାମାତ୍ରେ ଚିତାବାଘ ଉଚ୍ଚକୁ ଥରେ କୁଦିଉଠି ଗୁଡ଼ିଗୋଡ଼ ଜମାଇ ପୁଣି ଭୂଇଁରେ ପଡ଼ିଲା ଓ ଖରବେଗରେ ଛୁଟି ପଳାଇଯାଇ ଘାସବଣରେ ପଶି ଲୁଚିଗଲା ।

ମଲା ହରିଣଟି ପାଖକୁ ଯାଇ ଲକ୍ଷ୍ୟ କଲି ଯେ ଚିତାବାଘ ଯିବା ବାଟରେ ରକ୍ତଧାରେ ଅଣ୍ଟାଏ ଉଚ୍ଚ ଚକଡ଼ାଏ ଘାସବଣକୁ ପଡ଼ିଛି । ଯୁବା ବୟସର ହରିଣଟି ଅତି ହୃଷ୍ଟପୁଷ୍ଟ; ତାର ଶିଙ୍ଘ ଦୁଇଟି ମଧ୍ୟ ମଖମଲ ପରି ଚିକ୍କଣ । ମୋ ଲୋକେ ହରିଣଟିକୁ ପାଇଲେ ଖୁସି ହୋଇ-ଯିବେ ଜାଣି ଶାଗୁଣାଙ୍କ ନଜର ଏଡ଼ାଇବା ପାଇଁ ଡାଳପତ୍ର ଭାଙ୍ଗି ତାକୁ ଘୋଡ଼ାଇ ଦେଲି । ତା'ପରେ ଜେଟିକୁ ଫେରି ଜଳଖିଆ ଶେଷ କଲି ଓ ଲୋକ ଚାରିଜଣଙ୍କୁ ସଙ୍ଗରେ ନେଇ ଘାସବଣକୁ ବାହୁଡ଼ିଲି । ଯେଉଁଠାରୁ ଗୁଳି ଚଳାଇଥିଲି ସେଠାରେ ପହଞ୍ଚିବା ମାତ୍ରେ ଲୋକ ଜଣେ ମୋ କାନ୍ଧରେ ହାତମାରି ଘାସବଣ ଧାର ଆଡ଼କୁ ଆଙ୍ଗୁଳି ଦେଖାଇଲା । ସେଆଡ଼େ ଚାହିଁ ଦେଖିଲି ଯେ ମୋ ସାମନା ଓ ସାମାନ୍ୟ ଡାହାଣକୁ ପ୍ରାୟ ଅଢ଼େଇଶହ ଗଜ ଦୂରରେ ଚିତାବାଘଟିଏ ବଣରୁ ବାହାରି ଖୋଲାମେଲାରେ ଛିଡ଼ାହୋଇଛି ।

ମୋ ସହିତ ଶିକାରକୁ ଆସିଥିବା ଆମ ଗାଁର ଏହି ଲୋକମାନେ, ଯେତେ ଯାଚିଲେ ବି ମଜୁରି ନେବାକୁ ରାଜି ହୁଅନ୍ତି ନାହିଁ; କିନ୍ତୁ ଜଙ୍ଗଲରେ ଶିକାର ଯୋଗ୍ୟ ଜନ୍ତୁଟିଏ ପ୍ରଥମେ କାହା ନଜରରେ ପଡ଼ିବ—ତାହା ନେଇ ସେମାନଙ୍କ ସହିତ ମୋର ବାଜି ପଡ଼ିଥାଏ । ବାଜିରେ ହାରିଲେ ମୋତେ ଟଙ୍କାଟିଏ ପଣ ଦେବାକୁ ପଡ଼େ ଏବଂ ସେମାନେ ପରମ ଉଲ୍ଲାସର ସହ ତାହା ଗ୍ରହଣ କରନ୍ତି । ଚିତାବାଘକୁ ଦୁଇଜଣ ଏକସଙ୍ଗରେ ଦେଖାଇ ଦେଇ-ଥିଲେ, ପଣ ବାବଦକୁ ଦୁହିଁଙ୍କୁ ଟଙ୍କାଏ କରି ଗଣିଦେବା ପରେ ଲକ୍ଷ୍ୟ କଲି ଯେ ଚିତାବାଘ ସେ ଭିତରେ ବୁଲିପଡ଼ି ଆମରି ଆଡ଼କୁ ଆସୁଛି । ତାହାକୁ ଆହତ ହୋଇଥିବା ଚିତାବାଘର ସାଥୀ ବୋଲି ମନେକରି ଭାବିଲି ଯେ ସମ୍ଭବତଃ ମୋରିପରି ହରିଣଙ୍କ ଆତଙ୍କଧ୍ୱନି ଶୁଣି ତାର ସାଥୀର ଶିକାରକୁ ଖୋଜି ଖୋଜି ସେ ସେଠାରେ ଆସି ପହଞ୍ଚିଯାଇଛି । ଆମଠାରୁ ପ୍ରାୟ ଶହେ ଗଜ ଦୂରରେ ପଟାଳିଏ ଗହଳି ଘାସ ବଣଧାରରୁ ପଡ଼ିଆର କେଇ ଗଜ ଭିତରକୁ ଲମ୍ବି ଆସିଥିଲା । ଚିତାବାଘ ଘାସବଣରେ ଶେଷମୁଣ୍ଡ ଯାଏ ଆସି ସେଠାରେ ଅଟକି ହରିଣଟିକୁ ଅନାଇ କେଇମିନିଟ ଯେପରି ସ୍ଥିରଭାବେ ଛିଡ଼ାହେଲା, ସେ ଭିତରେ ତା ଛାତିରେ ଗୁଳିଟିଏ ସହଜରେ ବସାଇ ଦେଇପାରି ଥାଆନ୍ତି । କିନ୍ତୁ ଛାତିରେ ଗୁଳି ଖାଇ ଗୋଟିଏ ଚିତାବାଘ ଘାଇଲା ହୋଇ ବଣରେ ପଶିଛି; ଏବେ ଆଉ ଗୋଟିକୁ ଘାଏଲ କଲେ ବିପଦ ଦୁଇଗୁଣ ବଢ଼ିଯିବ ବୋଲି ବିଚାରି ଗୁଳି ଚଳାଇବାକୁ ପଶ୍ଚାଦପଦ ହେଲି ।

ଚିତାବାଘଟି ହୁରୁଡ଼ିଯିବା ଆଶଙ୍କାରେ ଲୋକଚାରିଜଣଙ୍କୁ ହଲଚଲ ନହୋଇ ବସି ପଡ଼ିବାକୁ କହିଥିଲି । ହରିଣଟି ଡାଳପତ୍ରରେ ଘୋଡ଼ାହୋଇଥିବା ଦେଖି ଚିତାବାଘ ପ୍ରଥମେ

Digitized by srujanika@gmail.com

ତା ପାଖ ପଶିବାକୁ ଭରସିଲି ନାହିଁ । ତା'ପରେ ଅତି ଧୀରେ ଧୀରେ ସେଆଡ଼େ ଅଗ୍ରସର ହେବାଦ୍ୱାରା ମୋ ଆଡ଼କୁ ସେ କନ୍ଧ ବୁଲାଇଦେଲା ଏବଂ ସଙ୍ଗେ ସଙ୍ଗେ ବାଁ କାନ୍ଧରୁ ଇଞ୍ଚେ ଦୁଇଇଞ୍ଚ ପଛରେ ଗୁଳି ଖାଇ ସେହିଠାରେ ଭୂଇଁରେ ଲୋଟିପଡ଼ିଲା । ଚିତାବାଘ କିଛି ସମୟ ନିଶ୍ଚଳ ରହିବା ପରେ ପାଖକୁ ଯାଇ ସେ ମରିପଡ଼ିଥିବା ଦେଖିଲି । ତାକୁ ଡେବ୍ରରେ ପହଞ୍ଚାଇ ଦେବାପରେ ହରିଣଟିକୁ ଆସି ନେଇଯିବାକୁ ଲୋକ ଗୃହଜଣଙ୍କୁ ବନ୍ଦବସ୍ତକଲି । ତା'ପରେ ଅଣ୍ଟାଏ ଉଞ୍ଚ ଗହଳ ଘାସ ଭିତରେ ଆହତ ଚିତାବାଘକୁ ଠାବ କରି ମାରିବା ଭଳି ଅତି ବିପଦ୍‌ଜନକ ଓ ଅପ୍ରୀତିକର କାର୍ଯ୍ୟଟିକୁ ସମ୍ପାଦନ କରିବା ଦିଗରେ ମନ ଦେଲି ।

ଆହତ ଜନ୍ତୁଙ୍କୁ ଅନୁସରଣ କରି ଶେଷ କରିବା ଶିକାରର ଏକ ଅଲଙ୍ଘନୀୟ ନିୟମ । ଆହତ ହିଂସ୍ରଜନ୍ତୁଙ୍କୁ ଅନୁସରଣ କରି ମାରିବାପାଇଁ ଶିକାରୀମାନେ ଭିନ୍ନ ଭିନ୍ନ ଉପାୟ ଅବଲମ୍ବନ କରିଥାଆନ୍ତି । ହାତୀ ପିଠିରେ ବସିଥିବା ଶିକାରୀଙ୍କ ପାଇଁ ଏ ଧରଣର ଅଭିଯାନ ଅପେକ୍ଷାକୃତ ବିପଦମୁକ୍ତ ଓ ସହଜ; କିନ୍ତୁ ମୋ ପରି ପଦଗାମୀ ଶିକାରୀମାନଙ୍କୁ ଆହତ ଜନ୍ତୁଙ୍କୁ ଶେଷକରିବା ସଙ୍ଗେ ନିଜକୁ ରକ୍ଷା କରିବାର ସବୁଠାରୁ ପ୍ରକୃଷ୍ଟ ପନ୍ଥା ନିଜ ଅନୁଭୂତିରୁ ହିଁ ଉଦ୍ଭାବନ କରିବାକୁ ପଡ଼େ । ଆହତ ଜନ୍ତୁଙ୍କୁ ପଦାକୁ ଘଉଡ଼ାଇ ଆଣିବା ପାଇଁ କେତେକ ଶିକାରୀ ଜଙ୍ଗଲରେ ନିଆଁ ଲଗାଇ ଦିଅନ୍ତି । ମୋ ମତରେ ସେଭଳି କାର୍ଯ୍ୟ କେବଳ ଜଙ୍ଗଲ ପ୍ରତି କ୍ଷତିକାରକ ନୁହେଁ—ଜନ୍ତୁଙ୍କ ପ୍ରତି ଅତି ନିଷ୍ଠୁର ମଧ୍ୟ । ଅଚଳ ହୋଇଥିଲେ ଜନ୍ତୁଟି ନିଆଁରେ ପୋଡ଼ିହୋଇ ମରେ; ଆଉ ଚଳନକ୍ଷମ ଥିଲେ ଦୂରକୁ ହଟିଯାଇ କେଉଁଠି ଅପନ୍ତରାରେ ବଡ଼ ଦୀର୍ଘକାଳ ଯମଯନ୍ତ୍ରଣା ଭୋଗ କରି କରି ଶେଷରେ ପ୍ରାଣ ହରାଏ ।

ଗହଳ ଉଚ୍ଚ ଘାସ ଭିତରେ ମାଂସଭୋଜୀ ପଶୁଙ୍କୁ ଅନୁସରଣ କଲାବେଳେ ରକ୍ତଧାର ଠଉରାଇ ଅଗ୍ରସର ହେବା ଆଦୌ ନିରାପଦ ନୁହେଁ । ସେଭଳି ସ୍ଥାନରେ ରକ୍ତଧାରକୁ ସମ୍ପୂର୍ଣ୍ଣ ଉପେକ୍ଷା କରି କେବଳ ଜନ୍ତୁର ଗତିପଥ ଅନୁମାନ କରି ମୁଁ ଅତି ସନ୍ତର୍ପଣରେ ଅଗ୍ରସର ହୁଏ ଏବଂ ଅଭିଯାନର ଶୁଭସମାପ୍ତି ପାଇଁ ଯେତେ ଆଶା ଥିଲେ ମଧ୍ୟ ଚରମ ବିପତ୍ତି ପାଇଁ ପ୍ରତି ମୁହୂର୍ତ୍ତରେ ସମ୍ପୂର୍ଣ୍ଣ ପ୍ରସ୍ତୁତ ଥାଏ । ଆହତ ମାଂସଭୋଜୀ ଜନ୍ତୁ ଅତି ସାମାନ୍ୟ ଶବ୍ଦ ଶୁଣିବାମାତ୍ରେ ଆକ୍ରମଣ କରିବାକୁ ଛୁଟିଆସନ୍ତି କିମ୍ବା ଚଞ୍ଚଳ ହୋଇ ଉଠି ନିଜକୁ ଧରପକାଇ ଦିଅନ୍ତି । ସେଭଳି ଆକ୍ରମଣରୁ ଜନ୍ତୁଟି ଥରେ ଓହରିଗଲେ କିମ୍ବା ସଞ୍ଚାଳନ ଯୋଗୁ ତାର ଅବସ୍ଥିତି ପ୍ରକାଶ ପାଇଗଲେ, ତା ସହିତ ମୁକାବିଲା ଅପେକ୍ଷାକୃତ ସହଜ ହୋଇଯାଏ । ଟେକାଟିଏ, କାଠଖଣ୍ଡେ କିମ୍ବା କିଛି ନ ମିଳିଲେ ନିଜ ଟୋପିଟିକୁ ମଧ୍ୟ ତା ନିକଟକୁ ଫିଙ୍ଗିଦେଲେ ଜନ୍ତୁଟି ଆକ୍ରମଣ କରିବାକୁ ସେଆଡ଼େ ଛୁଟିଯାଏ ଏବଂ ସେହି ଅବକାଶରେ ତାକୁ ଶେଷ କରିହୁଏ । ଏ ସବୁ ଉପାୟ କେତେକ ପରିସ୍ଥିତିରେ କିନ୍ତୁ ବିଶେଷ ଫଳପ୍ରଦ ହୁଏ ନାହିଁ । ପବନରେ ଘାସ

Digitized by srujanika@gmail.com

ଦୋହଲୁଥିଲେ ଜନ୍ତୁଙ୍କ ସଞ୍ଚଳନ ଲକ୍ଷ୍ୟକରିବା କଷ୍ଟକର ହୋଇପଡ଼େ । ଅଧିକାଂଶ ସମୟରେ ପୁଣି ଆହତ ଜନ୍ତୁ ଘାସଗହଳରେ ଦୀର୍ଘ ସମୟ ଗର୍ଜନ-ତର୍ଜନ କରୁଥିଲେ ମଧ୍ୟ ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ ଆକ୍ରମଣ ବା ଆତ୍ମପ୍ରକାଶ କରନ୍ତି ନାହିଁ । ତେଣୁ ଘାସ ଗହଳରେ ମୁହୂର୍ତ୍ତକେ ଗୁଳି ଚଳାଇ ସଫଳ ହେବା ଭଳି ସାଧ ଓ ସାମର୍ଥ୍ୟ ନଥିଲେ ଜନ୍ତୁଙ୍କୁ ଶେଷକରିବା ପରିବର୍ତ୍ତେ ଶିକାରୀ ନିଜକୁ ରକ୍ଷାକରିବା ମଧ୍ୟ ଦୁଷ୍କର ହୋଇପଡ଼େ ।

ଘାସବଣ ପାଖରେ ସେଦିନ ପବନର ବେଗ ବେଶି ନ ଥିଲା । ଲୋକଙ୍କୁ ପଛରେ ଛାଡ଼ି ରକ୍ତଧାର ଦେଖି ଦେଖି ପଡ଼ିଆଟି ପାରହେଲି ଏବଂ ଘାସବଣରେ ପଶିବାପୂର୍ବରୁ ରାଇଫଲ୍‌ରେ ଗୁଳି ଅଛି ଓ ସେଟି ଠିକ୍ ଭାବେ କାମ କରୁଛି ବୋଲି ଶେଷଥର ପାଇଁ ପରଖି ନେଲି । ଘାସ ଭିତରକୁ ପାହୁଣ୍ଡେ ଆଗେଇଛି, ଏତିକିବେଳେ ସିଁଟି ଶବ୍ଦ ଶୁଣି ପଛକୁ ଅନାଇଁ ଦେଖିଲି ଯେ ଲୋକମାନେ ହାତ ଠାରି ମୋତେ ଫେରିବାକୁ ସଙ୍କେତ ଦେଉଛନ୍ତି । ମୁଁ ଆସିବା ପରେ ମୃତ ଚିତାବାଘ ଦେହରେ ସେମାନେ ସମୁଦାୟ ତିନୋଟି ଗୁଳିର କ୍ଷତ ଦେଖାଇଲେ । ମୋର ପ୍ରଥମ ଗୁଳିଟି ଗୁଣ୍ଡି ସାମନାରୁ ପ୍ରବେଶ କରି ଚିତାବାଘର ଲାଞ୍ଜଠାରୁ ଦୁଇଇଞ୍ଚ ଛଡ଼ାରେ ବାହାରିଯିବାଦ୍ୱାରା ଦୁଇଟି କ୍ଷତ କରିଥିଲା । ଦ୍ୱିତୀୟ ଗୁଳି ବାଁ କାନ୍ଧ-ତଳେ ବସିଯାଇ ତାର ମୃତ୍ୟୁ ଘଟାଇଥିଲା ।

ମୃତ ଜନ୍ତୁଟିକୁ ପାଖରୁ ଦେଖିବାମାତ୍ରେ ଜାଣିଗଲି ଯେ ସେଟି ଚିତାବାଘ ନୁହେଁ—ସନ୍ତାନ ପାଳନ କରୁଥିବା ବାଘୁଣୀଟିଏ ମାତ୍ର । ଅତି ଶୋଚନୀୟଭାବେ ଆହତ ହେବା ସତ୍ତ୍ୱେ ହରିଣପାଟକୁ ସେ କାହିଁକି ଫେରିଲା, ତାହାର କାରଣ ମଧ୍ୟ ବୁଝିଗଲି । କ୍ଷୁଧାତୁର ସନ୍ତାନଙ୍କ ମୁହଁରେ ଆହାର ଦେବାପାଇଁ ବାଘୁଣୀଟି ମୁମୂର୍ଷୁ ଅବସ୍ଥାରେ ମଧ୍ୟ ଘୋର ବିପଦ ସମ୍ମୁଖକୁ ପୁଣି ଫେରି ଆସିଥିଲା ଓ ସନ୍ତାନଙ୍କ ଜୀବନ ରକ୍ଷା କରିବାର ପ୍ରୟାସରେ ତାକୁ ସେଇଠାରେ ପ୍ରାଣପାତ କରିବାକୁ ପଡ଼ିଲା—ଏହା ହୃଦ୍‌ବୋଧ ହେବା ମାତ୍ରେ ଗଭୀର କ୍ଷୋଭ ଓ ଅନୁତାପରେ ଅଭିଭୂତ ହୋଇପଡ଼ିଲି । ସନ୍ତାନବତ୍ସଳା ଅତି ସାହସିକା ଏହି ବାଘୁଣୀଟିର ଅକାଳ ମୃତ୍ୟୁ ଘଟାଇଥିବା ପାଇଁ ନିଜକୁ କ୍ଷମା କରିପାରିଲି ନାହିଁ । ପ୍ରାୟଶ୍ଚିତ୍ତ ସ୍ୱରୂପ ଶାବକଗୁଡ଼ିକୁ ନିଜେ ହିଁ ପାଳିବି ବୋଲି ବିଚାରିଲି; କିନ୍ତୁ ବହୁତ ଖୋଜାଖୋଜି କରିବା ପରେ ସେଥିରେ ମଧ୍ୟ ବିଫଳ ହେବାକୁ ପଡ଼ିଲା । ଚିତାବାଘଛୁଆ ଅତି ଅଳ୍ପ ବୟସରୁ ମୂଷା, ବେଙ୍ଗ ଓ ଛୋଟ ଛୋଟ ପକ୍ଷୀ ମାରି ଖାଆନ୍ତି । ମାତୃହୀନ ଶାବକଗୁଡ଼ିକଙ୍କର ସେତିକି ଶକ୍ତି ହୋଇଥାଉ ଓ ନିଜର ପ୍ରାଣରକ୍ଷା କରିବା ସହିତ ସେମାନେ ଅନ୍ତତଃ ଶିଶୁହତ୍ୟା-ଦୋଷରୁ ମୋତେ ମୁକ୍ତି ଦିଅନ୍ତୁ—ଏତିକି କାମନା କରି ଗଭୀର ମର୍ମଦାହ ସହ ଡେରିକୁ ଫେରିବାକୁ ପଡ଼ିଲା ।

ଚିତାବାଘ ପାଖକୁ ଗଲାବେଳେ ମୁଁ ରାଇଫଲ୍‌ରେ ଗୁଳି ଭରିଥିଲି ଓ ତାହାକୁ ପରଖି ନେଇଥିଲି । ତେଣୁ ଘାସବଣରେ ପଶିବା ପୂର୍ବରୁ ଗୁଳି ଓ ରାଇଫଲ୍‌କୁ ପୁଣି ଥରେ ପରୀକ୍ଷା କରିବା କାହିଁକି ଦରକାର ପଡ଼ିଲା—ପାଠକଙ୍କ ମନରେ ଏହି ପ୍ରଶ୍ନ ହୁଏତ

Digitized by srujanika@gmail.com

ଜାଗିପାରେ । ଏହାର କାରଣ ସ୍ୱରୂପ ମୁଁ କହିବି ଯେ କେବଳ ଏହି ଘଟଣାରେ ନୁହେଁ; ଜୀବନକାଳ ମଧ୍ୟରେ ଏପରି ପ୍ରତ୍ୟେକ ବିପଦସଙ୍କୁଳ ଅଭିଯାନରେ ଚରମ ପଦକ୍ଷେପ ନେବା ପୂର୍ବରୁ ରାଇଫଲ୍ ଓ ଗୁଳିକୁ ମୁଁ ବାରମ୍ବାର ପରୀକ୍ଷା କରିଛି ଓ ତାହା ବ୍ୟବହାରଯୋଗ୍ୟ ହୋଇଥିବା ଯୋଗୁଁ ହିଁ ପ୍ରାଣ ନେଇ ବର୍ତ୍ତି ଆସି ପାରିଛି । ଗୋଟିଏ ଘଟଣାରେ ଅପେକ୍ଷାକୃତ ଅଳ୍ପ ବୟସରେ ଏ ଦିଗରେ ଯେଉଁ ଶିକ୍ଷା ପାଇଥିଲି, ତାହା ଜୀବନସାରା ସ୍ମରଣ ରଖି ଅତି ନିଷ୍ଠାର ସହ ପାଳନ କରିଥିବା ଯୋଗୁ ହିଁ ଆପଣମାନଙ୍କ ସମ୍ମୁଖରେ ଏ ସବୁ ବିଷୟ ଉପସ୍ଥାପନ କରିବା ପାଇଁ ଆଜିଯାଏ ବଞ୍ଚିକରି ରହିପାରିଛି ।

ମୋକାମା ଘାଟରେ ମୋର ଚାକିରି ଜୀବନ ବିଷୟ 'ମୋର ଭାରତ'* ବହିଟିରେ ବିସ୍ତୃତ ଭାବେ ବର୍ଣ୍ଣନା କରିଛି । ଚାକିରିରେ ଯୋଗଦେବାର ଅଳ୍ପ ଦିନ ପରେ ସିଲ୍‌ଭର ଓ ମ୍ୟାନ୍ ନାମକ ଦୁଇଜଣ ବନ୍ଧୁଙ୍କୁ କାଲାଦୁଙ୍ଗୀରେ ଶିକାର କରିବାକୁ ନିମନ୍ତ୍ରଣ କଲି । ବିଲାତରୁ ସଦ୍ୟ ଆସିଥିବା ଏହି ବନ୍ଧୁଦ୍ୱୟ ଭାରତୀୟ ଜଙ୍ଗଲରେ ଗୁଳି ଚେଷ୍ଟେ ଚଳାଇବାକୁ ସୁଯୋଗ ପାଇ ନ ଥିଲେ । କାଲାଦୁଙ୍ଗୀରେ ପହଞ୍ଚିବା ପରଦିନ ଦୁହିଁଙ୍କୁ ସଙ୍ଗରେ ନେଇ ଶିକାର କରିବାକୁ ସକାଳୁ ସକାଳୁ ବାହାରିପଡ଼ିଲି ।

ହଲ୍‌ଦ୍ୱାନୀ ସଡ଼କରେ ଦୁଇମାଇଲ ଅଗ୍ରସର ହେବା ପରେ ଡାହାଣପାଖ ଜଙ୍ଗଲରେ ଚିତାବାଘ ହରିଣ ମାରୁଥିବାର ଶବ୍ଦ ଶୁଭିଲା । ଛପି ଛପି ସେଠାକୁ ଯିବା ବନ୍ଧୁ ଦୁହିଁଙ୍କ ପକ୍ଷରେ ସମ୍ଭବ ହେବନାହିଁ ଜାଣି ଜଣକୁ ଶିକାର ନିକଟର ଗୋଟିଏ ଗଛରେ ଜଗାଇବାକୁ ସ୍ଥିର କଲି । ବନ୍ଧୁ ଦୁହେଁ ଯେଉଁ ରାଇଫଲ୍ ଧରି ଆସିଥିଲେ, ତାହା ତାଙ୍କର ନିଜର ନଥିଲା । ସିଲ୍‌ଭର .୫୦୦ ରାଇଫଲ୍‌ଟିଏ ଓ ମ୍ୟାନ୍ କଳାବାରୁଦ ଲାଗୁଥିବା ଗୋଟିଏ .୪୦୦ ଏମ୍. ବି. ରାଇଫଲ୍ ମାଗିଆଣିଥିଲେ । ମୋ ହାତରେ ଥିବା .୨୭୫ ମାଗାଜିନ୍ ରାଇଫଲ୍‌ଟି ହାଲୁକା ହୋଇଥିବାରୁ ବନ୍ଧୁ ଦୁହିଁଙ୍କର ତାହା ଉପରେ ଆଦୌ ଭରସା ନ ଥିଲା ।

ସେମାନଙ୍କ ଭିତରୁ କିଏ ଗଛରେ ବସିବ—ଗୁଳା ପକାଇ ତାହା ମୀମାଂସା କରିବାକୁ ମୁଁ ପ୍ରସ୍ତାବ ଦେଲି । ସିଲ୍‌ଭର ମ୍ୟାନ୍‌ଙ୍କଠାରୁ ମୁଁ ବୟସରେ ସାମାନ୍ୟ ବଡ଼ ଓ ତାଙ୍କ ରାଇଫଲ୍‌ଟି ମଧ୍ୟ ଉତ୍କୃଷ୍ଟତର । ଏହି ଦୃଷ୍ଟିରୁ ମ୍ୟାନ୍ ଉଦାରତା ପ୍ରକାଶ କରି ମୋ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲେ ଓ ନିଜଆଡ଼ୁ ସିଲ୍‌ଭରଙ୍କୁ ସୁଯୋଗ ଛାଡ଼ିଦେଲେ । ଆମେ ପହଞ୍ଚିବାବେଳକୁ ସଦ୍ୟମୃତ ହରିଣଟିର ଗୋଡ଼ ଛଟଛଟ ହେବା ବନ୍ଦ ହୋଇ ନ ଥିଲା । ସେଠାରୁ ଅଳ୍ପ ଦୂରରେ ସୁବିଧା ହେବାଭଳି ଗଛଟିଏ ବାଛିଲି । ସିଲ୍‌ଭରଙ୍କୁ ଗଛରେ

---

* 'My India'—ମୋର ଭାରତ' ଶିରୋନାମାରେ ଏହି ବହିଟିର ଅନୁବାଦ ପୂର୍ବରୁ ପ୍ରକାଶ ପାଇଛି ।

Digitized by srujanika@gmail.com

ଚଢ଼ିବା ଦେଖିଲେ ଚିତାବାଘ ଉପରକୁ କରି ଶିକାର ଛାଡ଼ି ପଳାଇବାର ସମ୍ଭାବନା । ତେଣୁ ଗଛ ଚଢ଼ିବାରେ ତାଙ୍କୁ ସାହାଯ୍ୟ କରିବା ପାଇଁ ମ୍ୟାନ୍‌ଙ୍କୁ ସେଠାରେ ଛାଡ଼ି ନିଜେ ଚିତାବାଘକୁ ଘଉଡ଼ାଇ ଦେବାକୁ ଗଲି । ଚିତାବାଘ ଏକେଲା ଥିଲା; ଶିକାର ପାଖରୁ ସେ ସହଜରେ ହଟିଲା ନାହିଁ । ସାମନାରେ କେଇଥର ଆଗପଛ ହୋଇ ତାକୁ ଦୂରକୁ ତଡ଼ିଦେବା ପରେ ଫେରିଆସି ଦେଖିଲି ଯେ ସିଲ୍‌ଭର୍ ମନ ମାରିଦେଇ ଗଛଡ଼ାଳରେ ବସିଛନ୍ତି । ସେ କୁଆଡ଼େ ପୂର୍ବରୁ କେବେ ଗଛ ଚଢ଼ି ନ ଥିଲେ; ତା ପରେ ଚିତାବାଘଟି ବେଶ୍ ବଡ଼ ପୁରୁଷ ଜନ୍ତୁଟିଏ ଓ ଅତି ସାବଧାନରେ ତାକୁ ଗୁଳି ଚଳାଇବାକୁ ହେବ ବୋଲି ମୋଠାରୁ ଶୁଣି ତାଙ୍କ ମନ ଆହୁରି ଦବିଗଲା ପରି ଲାଗିଲା । ଊଣା ଅଧିକେ ପାଞ୍ଚମିନିଟ୍ ଭିତରେ ହିଁ ଚିତାବାଘ ଶିକାର ପାଖକୁ ନିଶ୍ଚୟ ବାହୁଡ଼ିବ ବୋଲି ତାଙ୍କୁ ଚେତାଇ ଦେଇ ମ୍ୟାନ୍‌ଙ୍କୁ ଡାକନେଇ ସେଠାରୁ ଚାଲିଗଲି ।

ହରିଣଠାରୁ ପ୍ରାୟ ଶହେଗଜ ଛଡ଼ାରେ ପୋଡାଂହରିଟିଏ ହଲ୍‌ଦ୍ୱାନି ସଡ଼କ କଡ଼ରୁ ଜଙ୍ଗଲ ଭିତରକୁ ଲମ୍ବିଥିଲା । ଜଙ୍ଗଲ ପାରହୋଇ ମ୍ୟାନ୍ ଓ ମୁଁ ସେଥିରେ କେଇ ପାହୁଣ୍ଡ ଆଗେଇଛୁ, ଏତିକିବେଳେ ସିଲ୍‌ଭର୍ ଲଗ ଲଗ ଦୁଇଗୋଟି ଗୁଳି ଫାଏର୍ କଲେ । ଆମେ ଦୁହେଁ ବୁଲିପଡ଼ିବା ମାତ୍ରେ ଚିତାବାଘ ଆଗରେ ଠାଏ ଦାଣ୍ଡି ପାରହୋଇ ଜଙ୍ଗଲରେ ପଶିଯିବା ଦେଖିଲୁ । ଚିତାବାଘ ଘାଏଲ୍ ହୋଇଛି ନା ନାହିଁ—ସିଲ୍‌ଭର୍ ତାହା ନିର୍ଭରଯୋଗ୍ୟଭାବେ କହିପାରିଲେ ନାହିଁ । ଧନେହେଁ ଆଗେଇ ଯାଇ ଚିତାବାଘ ପାର ହୋଇଥିବା ସ୍ଥାନରେ ଘାସଉପରେ ରକ୍ତ ଧାରେ ଝରିଥିବା ଦେଖିଲୁ । ବନ୍ଧୁ ଦୁହିଁଙ୍କୁ ସେଠାରୁ ଦୂରରେ ଖୋଲାମେଲାରେ ବସିବାକୁ ପଠାଇଦେଇ ଚିତାବାଘକୁ ଖୋଜ ନିକାଶ କରିବାକୁ ମୁଁ ଏକାକୀ ବଣରେ ପଶିଲି । ଏକାକୀ ବଣରେ ପଶିବାଦ୍ୱାରା ମୁଁ ବାହାଦୁରୀ ଦେଖାଉ ନ ଥିଲି । ଏସବୁ ବିପଦଜ୍ଜନକ ଅଭିଯାନରେ ସହଚର କେହି ସଙ୍ଗରେ ଥିଲେ ଉପସ୍ଥିତ କର୍ତ୍ତବ୍ୟରୁ ଧ୍ୟାନଚ୍ୟୁତି ଘଟିବାର ସମ୍ଭାବନା ଥାଏ । ଏହାଛଡ଼ା ବନ୍ଧୁକଘୋଡ଼ା ଉପରେ ଟିପ ରଖି ଅଗ୍ରସର ହେଉଥିବା ଲୋକେ ଉତ୍ତେଜନାର ବଶବର୍ତ୍ତୀ ହୋଇ ଯେପରି ଦୁର୍ଘଟଣାମାନ ଘଟାନ୍ତି, ତାହା ଆହତ ହିଂସ୍ର ଜନ୍ତୁଠାରୁ ବିପଦକୁ ମଧ୍ୟ ବହୁଗୁଣେ ବଳିଯାଏ ।

ଅଳ୍ପଦୂର ନ ଯାଉଣୁ ସିଲଭର୍ ଆସି ମୋ ସହିତ ଯୋଗଦେଲେ ଓ ଚିତାବାଘ ସନ୍ଧାନରେ ସେ ମଧ୍ୟ ଯିବେ ବୋଲି ପ୍ରସ୍ତାବ ଦେଲେ । ମୁଁ ତାହା ପ୍ରତ୍ୟାଖ୍ୟାନ କରିବାରୁ ନିଜ ରାଇଫଲ୍‌ଟିକୁ ମୋତେ ଯାଚି ସେ କହିଲେ ଯେ ହାଲୁକା ରାଇଫଲ୍ ଯୋଗୁ ଚିତାବାଘଠାରୁ ନିଜକୁ ରକ୍ଷାକରିବାରେ ଯଦି ମୁଁ ଅସଫଳ ହୁଏ, ତେବେ ସେ ନିଜକୁ କଦାପି କ୍ଷମା କରିପାରିବେ ନାହିଁ । ତାଙ୍କୁ ମନାଇ ବିଦା କରିଦେବା ପାଇଁ ଶେଷରେ ରାଇଫଲ୍ ବଦଳ କରିବାକୁ ରାଜିହେଲି । ସିଲ୍‌ଭର ମୋ ରାଇଫଲ୍ ନେଇ ଫେରିଗଲେ । ଗନ୍ତବ୍ୟପଥରେ ନିଜେ ଅଗ୍ରସର ହେବା ପୂର୍ବରୁ ତାଙ୍କର ରାଇଫଲର ବ୍ରିଚ୍ ଖୋଲି ଚେମ୍ବରରେ ଦୁଇଟି କାର୍ତ୍ତୁଜ ଥିବା ଦେଖିଲି ।

Digitized by srujanika@gmail.com

ସେଠାରୁ ଶହେଗଜ ଯାଏ ଖୋଲା ଜାଗା ପଡ଼ିଲା । ସେତକ ପାରହେବା ପରେ ରକ୍ତଧାର ଗହଳ ଜଙ୍ଗଲକୁ ପଡ଼ିଥିବା ଦେଖିଲି । ସେଆଡ଼େ ଅଗ୍ରସର ହେବାକୁ ଯାଉଛି, ଏତିକବେଳେ ଠିକ୍ ସାମନା ଜଙ୍ଗଲରୁ ଚିତାବାଘ ଗହଳ ଲଟାବୁଦାରେ ପଶି ଆଗଉଥିବାର ଶବ୍ଦ ଶୁଭିଲା । ତାର ଆକ୍ରମଣ ଆସନ୍ନପ୍ରାୟ ବୋଲି ଆଶଙ୍କା କରି ପ୍ରସ୍ତୁତ ହୋଇ ରହିଗଲି । ଶବ୍ଦର ପୁନରାବୃତ୍ତି ନ ହେବାରୁ ଅତି ସାବଧାନରେ ପୁଣି ଅଗ୍ରସର ହୋଇ ଜଙ୍ଗଲର କୋଡ଼ିଏ ଗଜ ଭିତରକୁ ପଶି ଦେଖିଲି ଯେ ଚିତାବାଘ ସେଠାରେ ଜାଗାଏ ଶୋଇଥିଲା ଓ ମୋତେ ଆସିବା ଦେଖି ଲଟାବୁଦାରେ ପଶି ପଳାଇଗଲା । ଅତି ଧୀରେ ଧୀରେ ଆହୁରି ଦେଢ଼ଶହ ଗଜ ଅତିକ୍ରମ କରି ସାମନାରେ ପଦାଜାଗାଟିଏ ଦେଖି ଆଶ୍ୱସ୍ତ ହେଲି । ସେତିକି ବାଟ ଅଧିକ ବେଗରେ ଆଗେଇବା ପରେ ପ୍ରକାଣ୍ଡ ଗୋଟିଏ ହାଲ୍‌ଦୁ ଗଛ ପଛରେ ଚିତାବାଘର ଲାଞ୍ଜର ଅଗଟି କେବଳ ଦିଶିଗଲା । ମୁଁ କ୍ରମାଗତ ଭାବେ ତାକୁ ଅନୁସରଣ କରୁଛି ଦେଖି ଚିତାବାଘ ପ୍ରତିଆକ୍ରମଣ ଚଳାଇବା ପାଇଁ ପ୍ରସ୍ତୁତ ହୋଇ ମୁଁ ପାଖେଇବାକୁ ଅପେକ୍ଷା କରି ଗଛ ଉଢ଼ାଳରେ ଜଗି ବସିଥିଲା ।

ସାମ୍ପ୍ରତିକ ପରିସ୍ଥିତିରେ ଚିତାବାଘ ମୋତେ ସମ୍ମୁଖରୁ ଆକ୍ରମଣ କରିବା ହିଁ ଅଧିକ ସୁବିଧାଜନକ ହେବ ବୋଲି ବିଚାରିଲି ଏବଂ ସେଭଳି ଆକ୍ରମଣକୁ ପ୍ରରୋଚିତ କରିବା ପାଇଁ ଧୀରେ ଧୀରେ ଗୋଟିଏ ପାଦକୁ ଅଡ଼େଇ ଯିବାକୁ ଲାଗିଲି । କ୍ରମେ ଚିତାବାଘର ମୁଣ୍ଡ ସ୍ପଷ୍ଟ ଦେଖାଗଲା; ପଞ୍ଝା ଉପରେ ମୁଣ୍ଡ ରଖି ମୁହୂର୍ତ୍ତକେ ଛୁଟିଆସିବା ପାଇଁ ସେ ଛକିଥାଏ । ତା କାନ ଓ ନିଶର କମ୍ପନରୁ ଆକ୍ରମଣ ପାଇଁ ଆଉ ବେଶି ଡେରିନାହିଁ ଜାଣି ମୁଁ ମଧ୍ୟ ପ୍ରସ୍ତୁତ ହୋଇ ଅପେକ୍ଷା କଲି । ସାମାନ୍ୟ କେଇ ଫୁଟ ବ୍ୟବଧାନରୁ ଗୋଟିଏ ଗୁଳିରେ ଚିତାବାଘର ମୁଣ୍ଡ ଉଡ଼ାଇଦେଇ ପାରିଥାଆନ୍ତି । କିନ୍ତୁ ମୁଣ୍ଡ ବିନା ତା ଚମଟିର ମୂଲ୍ୟ ନଥାନ୍ତା ଓ ସିଲ୍‌ଭର୍ ତାଙ୍କ ପ୍ରଥମ ଶିକାରର ଅତି ସୁନ୍ଦର ନିଦର୍ଶନଟିଏ ହାସଲ କରିବାରୁ ବଞ୍ଚିତ ହୋଇଥାଆନ୍ତେ । ଚିତାବାଘ ସହିତ ଆଖି ମିଶାଇ ଛିଡ଼ାହୋଇ ରହିବା ଭିତରେ କ୍ରମେ କ୍ରମେ ତା ଆଖି ଦୁଇଟି ମୁଦିହୋଇ ଆସିଲା ଏବଂ ଶେଷରେ ଠିକ୍ ସେହିଭଳି ଶୋଇରହି ସେ ପ୍ରାଣତ୍ୟାଗ କଲା । ମୁଁ ଖଣ୍ଡେ କାଠ ମାରିଲି; କୌଣସି ପ୍ରତିକ୍ରିୟା ନ ଦେଖି ଚିତାବାଘ ମୁଣ୍ଡକୁ ଟେକାଟିଏ ମଧ୍ୟ ପକାଇଲି । ମରିଯାଇଛି ବୋଲି ନିଶ୍ଚିତ ଭାବେ ଜାଣିବା ପରେ ସିଲ୍‌ଭର୍ ଓ ମ୍ୟାନ୍‌ଙ୍କୁ ପାଖକୁ ଡାକିଲି ।

ସିଲ୍‌ଭର୍‌ଙ୍କୁ ତାଙ୍କ ରାଇଫଲ୍‌ଟି ଫେରାଇଦେବା ପୂର୍ବରୁ ବ୍ରିଚ୍‌ରୁ କାର୍ଟ୍ରିଜ ଦୁଇଟି କାଢ଼ିଆଣି ଯାହା ଦେଖିଲି, ସେଥିରେ ଆଖିକୁ ବିଶ୍ୱାସ କରିପାରିଲି ନାହିଁ । ଦୁଇଟିଯାକ କାର୍ଟ୍ରିଜ ପୂର୍ବରୁ ଫଏର୍ ହୋଇ କେବଳ ଫମ୍ପା ଖୋଳ ଦୁଇଟି ଚେମ୍ବରରେ ଥିଲା । ପରେ ପରେ ଦୁଇଥର ଫଏର୍ କରିସାରି ସିଲ୍‌ଭର୍ ରାଇଫଲ୍‌ରେ ନୂଆ ଗୁଳି ଭରିବାକୁ ଭୁଲି ଯାଇଥିଲେ । ସେ ଯାହାହେଉ, ଅତି ସଙ୍କଟମୟ ପରିସ୍ଥିତିରେ ଖାଲି ରାଇଫଲ୍‌ର ଗୁଳି ଟିପି

Digitized by srujanika@gmail.com

ଯେଉଁ ଶିକାରୀମାନେ ନିଜ ଅସାବଧାନତାର ପ୍ରତିଫଳ ପାଇଛନ୍ତି, ଭାଗ୍ୟବଳରୁ ସେ ଗୋଷ୍ଠୀର ସଂଖ୍ୟାବୃଦ୍ଧି କରିବାରୁ ସେଦିନ ମୁଁ ଅଳ୍ପକେ ନିସ୍ତାର ପାଇଗଲି । ଆହତ ହିଂସ୍ରଜନ୍ତୁଦ୍ୱାରା ଶୋଚନୀୟ ଭାବେ କ୍ଷତବିକ୍ଷତ ନ ହୋଇ ମଧ୍ୟ ଯେଉଁ ବହୁମୂଲ୍ୟ ଶିକ୍ଷା ଲାଭକଲି, ତାହା ଜୀବନସାରା ମୁଁ ଭୁଲିନାହିଁ । ସେହିଦିନୁ ବିପଦପୂର୍ଣ୍ଣ ପରିବେଶରେ ପଦାର୍ପଣ କରିବାର ଠିକ୍ ପୂର୍ବରୁ ଗୁଳି ଓ ବନ୍ଧୁକକୁ ମୁଁ ନିୟମିତ ପରୀକ୍ଷା କରେନିଏ । ହାତରେ ସାଧାରଣ ରାଇଫଲ ଥିଲେ ଗୁଳି ଠିକ୍ ଅଛି ଓ ବୋଲ୍ଟ୍ ଠିକ୍‌ଭାବେ କାମ କରୁଛି ବୋଲି ଦେଖିସାରି ଗୁଳିଟିକୁ ଚେମ୍ବରକୁ ଫେରିଦିଏ; ଦୁଇନଳିଆ ବନ୍ଧୁକରୁ ଦୁଇଟିଯାକ ଗୁଳି ପଦାକୁ କାଢ଼ି ପରୀକ୍ଷା କରିବା ପରେ ମୁଁ ତାକୁ ଅଦଲବଦଳ କରି ଚେମ୍ବରରେ ଭରିଦିଏ ।

## ଦର୍ପ

ଆମ ଅଞ୍ଚଳର ନାମଜାଦା ସ୍ୱେଚ୍ଛ ଶିକାରୀ କୁଅଁର ସିଂଙ୍କ ବିଷୟରେ 'ମୋର ଭାରତ' ବହିରେ ଗୋଟିଏ ଅଧ୍ୟାୟ ଲେଖିଛି । କୁଅଁର ସିଂ ଗାରୁପ୍‌ପୁ ଜଙ୍ଗଲରେ ଲୁଚ୍ଚାଚ୍ଚୋରାରେ ବରାବର ଶିକାର କରନ୍ତି; କିନ୍ତୁ କାଲାଦୁଙ୍ଗୀ ପାଖ ଜଙ୍ଗଲରେ ପଶିବାକୁ ଆଦୌ ରାଜି ହୁଅନ୍ତି ନାହିଁ । ସେଠାକାର ଜଙ୍ଗଲରେ ଭୂଇଁରେ ମାଡ଼ିଥିବା କଣ୍ଟାଳିଆ ଲଇଲଟା ତାଙ୍କ ଗୋଡ଼ରେ କୁଆଡ଼େ ଛନ୍ଦିହୁଏ; ଜଙ୍ଗଲରକ୍ଷୀ କଣ୍ଟାଳ କଲେ କିମ୍ବା ମହାବଳ ବାଘ ହାବୁଡ଼େ ପଡ଼ିଗଲେ ସେଠାରୁ ଧାଇଁ ପଳାଇ ଯାଇ ହୁଏ ନାହିଁ ।

ଗାରପ୍‌ପୁ ଜଙ୍ଗଲର ଅନ୍ଧିସନ୍ଧି ସବୁ କୁଅଁର ସିଂଙ୍କୁ ଜଣା । ଜଙ୍ଗଲ ବିଷୟରେ ତାଙ୍କର ଅସାଧାରଣ ଜ୍ଞାନ; ବନ୍ଧୁକ ନିଶାଣ କରିବାରେ ମଧ୍ୟ ସେ ଅତ୍ୟନ୍ତ ଧୁରନ୍ଧର । କିନ୍ତୁ ଶିକାରର ନୀତିନିୟମ ଓ ଆଚରଣବିଧି ଆଦୌ ମାନୁ ନ ଥିବାରୁ ତାଙ୍କୁ ମୁଁ ଉଚ୍ଚକୋଟିର ଶିକାରୀର ସ୍ଥାନ ଦେଉନାହିଁ । ଗହଳ ଜଙ୍ଗଲରେ ବିନା ଶୋଚନାରେ ସେ ଦଣ୍ଡେ ଅଗ୍ରସର ହୁଅନ୍ତି ଓ ଜନ୍ତୁ ଜାନୁଆର ହୁରୁଡ଼ି ପଳାଇଗଲେ ସେଥିପ୍ରତି ଭ୍ରୁକ୍ଷେପ ନକରି ଆଗକୁ ସେପରି ଆହୁରି ଅନେକ ଶିକାର ମିଳିବେ ବୋଲି କହନ୍ତି । ଅବଶ୍ୟ ସେତେବେଳେ ଏସବୁ ଜଙ୍ଗଲରେ ଯେତେ ଶିକାର ମିଳୁଥିଲା, ତାହା ଆଜିକାଲି ଦେଖିବାକୁ ସ୍ୱପ୍ନ । ହୁଏତ ସେଇଥିପାଇଁ ନିୟମ ଶୃଙ୍ଖଳା ମାନି ବିଶିଷ୍ଟ ଶିକାରୀ ବୋଲାଇବାର ଆବଶ୍ୟକତା କୁଅଁର ସିଂ କେବେ ଅନୁଭବ କରି ନ ଥିଲେ ।

ବାଲ୍ୟଜୀବନରେ କୁଅଁର ସିଂଙ୍କ ସଂସ୍ପର୍ଶରେ ଆସି ଜଙ୍ଗଲ ବିଷୟରେ ତାଙ୍କଠାରୁ ଯେ ଅନେକ ଶିକ୍ଷା ପାଇଛି, ତାହା କୌଣସିକାଳେ ଅସ୍ୱୀକାର କରିନାହିଁ । ସର୍ବୋପରି ଜଙ୍ଗଲରେ ଅଜଣା ଆପଦ-ବିପଦ ପ୍ରତି ପିଲାଦିନେ ମୋର ଯେଉଁ ଗଭୀର ଭୟ ଥିଲା, ସେଥିରୁ

Digitized by srujanika@gmail.com

ମୋତେ ମୁକ୍ତ କରିବାରେ କୁଅଁର ସିଂଙ୍କର ଯଥେଷ୍ଟ ଅବଦାନ ଥିଲା । ବିଶେଷ କରି ବଣ-ପୋଡ଼କୁ ମୋର ଭାରି ଭୟ ଥିଲା । ଅତି ଅଳ୍ପ ବୟସରୁ ସେ ବିଷୟରେ ନାନା ଭୟଙ୍କର କାହାଣୀ ଶୁଣି ଓ ବଣପୋଡ଼ର ବିଭୀଷିକା ଆଖିରେ ଦେଖି ମୋର ଦୃଢ଼ ଆଶଙ୍କା ଥିଲା ଯେ ଦିନେ ନା ଦିନେ ମୁଁ ବଣପୋଡ଼ରେ ହିଁ ଅଗ୍ନିସାତ୍ ହୋଇଯିବି । କେବଳ କୁଅଁର ସିଂଙ୍କ ଯୋଗୁ ହିଁ ମନରୁ ସେହି ଦୃଢ଼ମୂଳ ଅହେତୁକ ଆତଙ୍କ ଚିରଦିନ ପାଇଁ ବର୍ଜନ କରିପାରିଲି ।

କଥାରେ ଅଛି, "ଗାଁରେ ଯେବେ କରିବ ଘର, ଅଧେ ଆପଣା ଅଧେ ପର ।" ପାହାଡ଼-ପର୍ବତଭରା କୁମାୟୁଁ ଅଞ୍ଚଳର ଗ୍ରାମଗୁଡ଼ିକ ପ୍ରତି ଏହି ଉକ୍ତିଟି ବିଶେଷଭାବେ ପ୍ରଯୁଜ୍ୟ । ସେଠାକାର ପ୍ରତ୍ୟେକ ଗ୍ରାମବାସୀ ଅନ୍ୟମାନଙ୍କ କାର୍ଯ୍ୟକଳାପ ଏବଂ ବ୍ୟକ୍ତିଗତ ଓ ପାରିବାରିକ ବ୍ୟାପାରମାନ ଜାଣିବା ପାଇଁ କେବଳ କୌତୂହଳୀ ଓ ଆଗ୍ରହୀ ନୁହଁନ୍ତି, ବିଶେଷ ବ୍ୟଗ୍ର ଓ ବ୍ୟାକୁଳ ମଧ୍ୟ । ଦୈନିକ ସମ୍ବାଦପତ୍ରର ସେସବୁ ଅଞ୍ଚଳକୁ ପ୍ରବେଶ ନ ଥାଏ । ସେଠାକାର ଲୋକଙ୍କ ସଂସାର ଜଙ୍ଗଲଘେରା କେତୋଟି ଗ୍ରାମ ମଧ୍ୟରେ ଆବଦ୍ଧ ଏବଂ ସାମାଜିକ ଜୀବନର ବିସ୍ତୃତି ଓ ପରିସର ମଧ୍ୟ ସେହି ଜଙ୍ଗଲର ବେଷ୍ଟନୀଦ୍ୱାରା ସୀମିତ । ତେଣୁ ନିଜର ବା ଆଖପାଖ ଗ୍ରାମରୁ କୌଣସି ଖବର ମିଳିଗଲେ, ସେମାନେ ତାହା ପ୍ରବଳ ଉତ୍ସାହ ସହ ପ୍ରଚାର କରନ୍ତି ଏବଂ ପ୍ରକୃତ ଘଟଣା ସହିତ କଳ୍ପନାପ୍ରସୂତ ବହୁ ତଥ୍ୟ ମିଶାଇ ତାହାକୁ ପରିବର୍ତ୍ତିତ ଓ ବହୁ-ଗୁଣେ ପରିବର୍ଦ୍ଧିତ କରିଦିଅନ୍ତି ।

'ଫାର୍ମ ୟାର୍ଡ଼' ଅଞ୍ଚଳରେ ମୁଁ ଚିତାବାଘଟିଏ ମାରିଛି—ଚିତାବାଘ ଦେହରୁ ଉଷ୍ମ ଛାଡ଼ିବା ପୂର୍ବରୁ ଏ ଖବର ଚାରିଆଡ଼େ ବ୍ୟାପିଗଲା । ସବୁ କ୍ରୀଡ଼ାବିତ୍‌ଙ୍କ ପରି ଶିକାରିମାନେ ମଧ୍ୟ ଅନ୍ୟର କୃତିତ୍ୱ ପାଇଁ ଅଭିନନ୍ଦନ କରିବାରେ ଅତ୍ୟନ୍ତ ଉଦାର । ଖବର ପାଇବାମାତ୍ରେ କୁଅଁର ସିଂ ନିଜେ ଆସି ମୋତେ ଅଭିନନ୍ଦନ ଜଣାଇଲେ । ସର୍ଜେଣ୍ଟ-ମେଜରଙ୍କ କୃପାରୁ ମୁଁ ରାଇଫଲ୍‌ଟିଏ ପାଇଥିବା କଥା ତାଙ୍କୁ ଜଣାଇଥିଲେ ମଧ୍ୟ ମୁଁ ତାହା ବ୍ୟବହାର କରିପାରିବି ବୋଲି ସେପର୍ଯ୍ୟନ୍ତ ତାଙ୍କର ବିଶ୍ୱାସ ନ ଥିଲା । ମୋ ସାମର୍ଥ୍ୟ ସପକ୍ଷରେ ପ୍ରତ୍ୟକ୍ଷ ପ୍ରମାଣ ପାଇବା ପରେ କୁଅଁର ସିଂ ମୋ ପ୍ରତି ଓ ମୋ ରାଇଫଲ୍ ପ୍ରତି ଅଧିକ ଦୃଷ୍ଟିଦେଲେ । ସେଦିନ ବିଦାୟ ନେବା ପୂର୍ବରୁ ମୋଠାରୁ ସେ ପ୍ରତିଶ୍ରୁତି ଆଦାୟ କରିନେଲେ ଯେ ପରଦିନ ଭୋର ପାଞ୍ଚଟାରେ କାରଣ୍ଡୁ ସଡ଼କର ଚାରି ନମ୍ବର ମାଇଲଖୁଣ୍ଟ ପାଖରେ ମୁଁ ତାଙ୍କୁ ଭେଟିବି ।

ପରଦିନ ଅନ୍ଧାରୁଆରୁ ଉଠି ମ୍ୟାଗି ମୋ ପାଇଁ କପେ ଚାହା କରିଦେଲା । ଚାହା ଖାଇ କଟିକଟି ଅନ୍ଧାରରେ ଭୋର ଚାରିଟାରେ ଘରୁ ବାହାରିଲି । ରାତିରେ ଜଙ୍ଗଲରେ ବହୁବାର ଯାତାୟାତ କରି ଅନ୍ଧାରରେ ବାଟ ଚାଲିବାକୁ ମୋର ଭୟ ନ ଥାଏ । ଚାରିନମ୍ବର ମାଇଲ ଖୁଣ୍ଟ ପାଖରେ ପହଞ୍ଚିବାକୁ ଆଉ ଅଳ୍ପ ବାଟ ଅଛି, ଏତିକିବେଳେ ଗଛମୂଳେ ଗୋଟିଏ

Digitized by srujanika@gmail.com

ଜାଗାରେ ପତ୍ର ଫାଙ୍କରେ ନିଆଁର ଝଲକ ଦେଖିଲି । କୁଅଁର ସିଂ ମୋ ଆଗରୁ ପହଞ୍ଚି ସେଠାରେ ବସି ନିଆଁ ପୋଉଁଥିଲେ । ହାତ ଦୁଇଟି ନିଆଁକୁ ଦେଖାଇ ତାଙ୍କ ପାଖରେ ବସି ପଡ଼ିଲି । କୁଅଁର ସିଂ ମୋ ଆଡ଼େ ଥରଟିଏ ଅନାଇ ଦେଇ ଭର୍ତ୍ସନାଭରା ସ୍ୱରରେ କହିଲେ, "ତମେ ଏଡ଼େ ତରତରରେ ପଳାଇ ଆସିଲ ଯେ ପ୍ୟାଣ୍ଟ୍ ପିନ୍ଧିବାକୁ ହେଜ ହେଲା ନାହିଁ ।" ସେଦିନ ନୂଆ କରି ମୁଁ ଅଧା ପେଣ୍ଟଟିଏ ପିନ୍ଧିଥିଲି । ସେତେବେଳେ ଅଧାପ୍ୟାଣ୍ଟ ପିନ୍ଧିବା ନୂଆ ନୂଆ ଆରମ୍ଭ ହୋଇଥାଏ ଏବଂ ଏହି ଅଞ୍ଚଳରେ ତାର ବିଶେଷ ପ୍ରଚଳନ ନ ଥାଏ । ମୁଁ ପ୍ୟାଣ୍ଟ ପିନ୍ଧିବାକୁ ଭୁଲିନାହିଁ—ଏହା ମଧ୍ୟ ଏକ ନୂଆ କିସମର ପ୍ୟାଣ୍ଟ ବୋଲି ଯେତେ ବୁଝାଇଲେ ମଧ୍ୟ କୁଅଁର ସିଂଙ୍କ ମନକୁ ତାହା ପାଇଲା ନାହିଁ । ବଣଜଙ୍ଗଲରେ ବୁଲିବୁଲିବା ପାଇଁ ଏଭଳି 'ଜଂଘିଆ' ଉପଯୁକ୍ତ ପୋଷାକ ନୁହଁ ବୋଲି ସେ ପ୍ରକାଶ୍ୟରେ ମନ୍ତବ୍ୟ ଦେଲେ, ତାଙ୍କ ହାବଭାବରୁ କିନ୍ତୁ ଜଣାପଡ଼ିଲା ଯେ ମୋର ଏଭଳି ପୋଷାକପତ୍ର ପିନ୍ଧିବାକୁ ସେ ଆଦୌ ଭଦ୍ରୋଚିତ ମନେ କରୁନାହାନ୍ତି ଓ ବାଣ୍ଡ-ବାଡ଼େଇଲେ ବି ମୋ ପରି ଗୋଟିଏ ଅର୍ଦ୍ଧନଗ୍ନ ବାଳକ ସହିତ ସେ ଭଦ୍ର ସମାଜରେ କଦାପି ମୁହଁ ଦେଖାଇବେ ନାହିଁ । ଆରମ୍ଭରୁ ବୁଝାମଣାର ଏଭଳି ବିଭ୍ରାଟ ଘଟି ଏକ ଅସ୍ୱସ୍ତିକର ପରିସ୍ଥିତି ଉପୁଜିଲା । କୁଅଁର ସିଂ ମୋ ସହିତ କଥାବାର୍ତ୍ତା ନ କରି ଗୁମ୍ ମାରି ବସିଲେ । ଶେଷରେ ନିକଟର ଗୋଟିଏ ଗଛରୁ ବଣକୁକୁଡ଼ାଟିଏ ରାବି ଉଠି ତାଙ୍କ ଅଶାନ୍ତିର କିଛିଟା ଉପଶମ ଘଟାଇଲା । ନିଆଁ ଲିଭାଇ ଦେଇ କୁଅଁର ସିଂ ଉଠି ଛିଡ଼ାହେଲେ ଓ ଆଗକୁ ଦୂର ବାଟ ପଡ଼ିଛି ବୋଲି କହି ଯାତ୍ରା ଆରମ୍ଭ କରିବାକୁ ସୂଚନା ଦେଲେ ।

ଗଛମୂଳ ଛାଡ଼ି ଦୁହେଁ ସଡ଼କକୁ ଉଠିଲାବେଳକୁ ଚତୁର୍ଦ୍ଦିଗରୁ ପଶୁପକ୍ଷୀଙ୍କ କଣ୍ଠସ୍ୱର ଓ କଳରବରେ ଜଙ୍ଗଲ ମୁଖରିତ ହୋଇ ଉଠିଥିଲା । ଗଛମୂଳେ ନିଆଁ ଜଳିବା ଯୋଗୁ ବଣକୁକୁଡ଼ାଟି ଜାଗି ଉଠି ସମଗ୍ର ଜଙ୍ଗଲକୁ ଜାଗରଣ ପାଇଁ ପ୍ରଥମ ସଙ୍କେତ ଜଣାଇଥିଲା । ନାନାଜାତିର ଅସଂଖ୍ୟ ପକ୍ଷୀ ସେ ସଙ୍କେତରେ ତନ୍ଦ୍ରା ତେଜି ଭିନ୍ନ ଭିନ୍ନ ତାଳ ଓ ତାନରେ କଳଧ୍ୱନି ଆରମ୍ଭ କରିଦେଲେ । ପ୍ରଭାତର ଆଗମନରେ ବଣକୁକୁଡ଼ା ହିଁ ଜାଗରଣ ପାଇଁ ପ୍ରଥମ ସଙ୍କେତ ଦିଏ ଏବଂ କସ୍ତୁରୀ ଚଢ଼େଇ ସର୍ବପ୍ରଥମେ ଭୂଇଁକୁ ଓହ୍ଲାଇ ଆସି ଆହାର ସଂଗ୍ରହ କରିବାରେ ଲାଗିପଡ଼େ । ପ୍ରତ୍ୟୁଷ ଓ ପ୍ରଦୋଷର ଈଷତ୍ ଅନ୍ଧକାରରେ କସ୍ତୁରୀ ଚଢ଼େଇ ଇତସ୍ତତଃ ଉଡ଼ିବୁଲି ଯେପରି ଲଳିତ କୁହୁ ତାନରେ ଚତୁର୍ଦ୍ଦିଗ ମୁଖରିତ କରିଦିଏ, ତାହା ଥରେ ଶୁଣିଲେ ଭୁଲିହୁଏ ନାହିଁ । ସୁଶୃଙ୍ଖଳ ବିଦ୍ୟାର୍ଥୀ ସ୍ତବ ଗାନ କଲା ପରି ଦିବସର ଆଗମନ ଓ ଅବସାନରେ ଏହି ସୁସ୍ୱନ ପକ୍ଷୀ ସ୍ୱାଗତିକା ତଥା ବିଦାୟ ଗୀତି ଗାଏ ଏବଂ ଦିନସାରା ଗଛପତ୍ର ଗହଳରେ ଛପି ରହି ଶିକ୍ଷାରତ ଛାତ୍ର ସ୍ୱଗତୋକ୍ତି କଲା ପରି ଅନୁଚ୍ଚ ସ୍ୱରରେ ଅବିରାମ ଗାଇବାରେ ଲାଗିଥାଏ । କୁମାୟୁଁ ଅଞ୍ଚଳର ଲୋକେ କସ୍ତୁରୀ ଚଢ଼େଇକୁ ଶ୍ରଦ୍ଧାରେ ଯେଉଁ ନାମଟି ଦେଇ-ଥାଆନ୍ତି, ସ୍ଥାନୀୟ ଭାଷାରେ ତାର ଅର୍ଥ ହେଲା 'ଗାୟକ ଛାତ୍ର' । କସ୍ତୁରୀ ଚଢ଼େଇର ଠିକ୍ ପରେ

Digitized by srujanika@gmail.com

ପରେ ଭୃଙ୍ଗରାଜ ମଧ୍ୟ ଜାଗି ଉଠି ଉଷାର ସ୍ୱାଗତକାରେ ଯୋଗଦିଏ । ତା'ପରେ ମୟୂର-ମୟୂରୀ ରାବିବାକୁ ଆରମ୍ଭ କରନ୍ତି । ଶିମିଳି ଗଛ ଆଗଡାଳରୁ ମୟୂରଙ୍କ ଉଚ୍ଚ କେକାରବ ଆରମ୍ଭ ହେବା ପରଠାରୁ ସମଗ୍ର ଜଙ୍ଗଲରେ କୌଣସି ପଶୁପକ୍ଷୀ ଆଉ ଶୁଅନ୍ତି ନାହିଁ । ରାତ୍ରିର ଅବସାନ ଓ ଉଷାର ଆଗମନର ସନ୍ଦେଶ ଜଣାଇ ସେମାନଙ୍କର ସମବେତ କଣ୍ଠସ୍ୱର ବଣ-ଜଙ୍ଗଲରେ ନୂତନ ପୁଲକର ସ୍ପନ୍ଦନ ସୃଷ୍ଟିକରେ ।

ସେଦିନ ପ୍ରତ୍ୟୁଷରୁ ପକ୍ଷୀଙ୍କ କଳଧ୍ୱନି ସହିତ ପଶୁଙ୍କର ସଞ୍ଚଳନ ମଧ୍ୟ ଆରମ୍ଭ ହୋଇଥାଏ । ସାମନାରେ ସଡ଼କରେ ଖୁରାଦାଗ ଦେଖି ଜାଣିଲୁ ଯେ ଅଳ୍ପ ସମୟ ପୂର୍ବରୁ ହରିଣଙ୍କର ଗୋଟିଏ ପଲଟିଏ ସେଠାରେ ସଡ଼କ ପାର ହୋଇଛି । ଦୁଇଶହ ଗଜ ଆଗକୁ ମାଈ ସମ୍ବରଟିଏ ତା ଛୁଆ ସହିତ ରାସ୍ତାକଡ଼ରୁ ଗୋଟି ଗୋଟି ଘାସ ଖୁଣ୍ଟି ଖାଉଥିଲା । ସେତିକିବେଳକୁ ପୂର୍ବଦିଗରୁ କେଉଁଠୁ ବାଘଟିଏ ହେଣ୍ଟାଳିବାକୁ ଆରମ୍ଭ କଲା । ସେ ଶବ୍ଦରେ ଜଙ୍ଗଲର ସବୁଆଡ଼ୁ ଅସଂଖ୍ୟ ମୟୂର-ମୟୂରୀ ଉଚ୍ଚ ସ୍ୱରରେ ଆତଙ୍କ ଧ୍ୱନି କରିବାକୁ ଲାଗିଲେ । କୁଅଁର ସିଂ କିଛି ସମୟ କାନ ଡେରିବା ପରେ କହିଲେ ଯେ ଆମଠାରୁ ଚାରିଟା ଗୁଳିର ଦୂରତା* ଭିତରେ ଥିବା ଗୋଟିଏ ବାଲିଭରା ଶୁଖିଲା ନାଳପାଖରୁ ବାଘ ଗର୍ଜନ



କରୁଛି । ସେ ନାଳଟି ସହିତ କୁଅଁର ସିଂ ପୂର୍ବରୁ ଭଲଭାବେ ପରିଚିତ । ତାହାରି ଭିତରେ ତାଙ୍କ ଓ ହର ସିଂଙ୍କୁ ବାଘଟାଏ ଆକ୍ରମଣ କରିଥିଲା; ଗୁରୁତର ଭାବେ ଆହତ ହୋଇ ଓ ତା'ଠାରୁ ଆହୁରି ବୀଭତ୍ସ ଭାବେ ଚକଟିତ ହେବା ସତ୍ତ୍ୱେ ହର ସିଂ କିପରି ଅତି ଆଶ୍ଚର୍ଯ୍ୟ ଭାବରେ ବଞ୍ଚିଗଲେ; ତାହା ମଧ୍ୟ କୁଅଁର ସିଂ ସ୍ମରଣ କଲେ* । ଠିକ୍ ତା ପରେ ପରେ ନାଳ ଆଖପାଖରୁ ପ୍ରଥମେ କୁଟ୍ରାଟିଏ, ତା'ପରେ ଦୁଇଟି ସମ୍ବର ଓ ଶେଷରେ ହରିଣପଲେ ବୋବାଇ ଉଠି ଜଣାଇ ଦେଲେ ଯେ ବାଘ ଶିକାର ମାରି ବସାକୁ ଫେରୁଛି ଓ ଲୁଚି ରହିବାର ଆଉ ଆବଶ୍ୟକତା ନଥିବାରୁ ଜଙ୍ଗଲର ପଶୁପକ୍ଷୀଙ୍କ ଦୃଷ୍ଟି ଏଡ଼ାଇବାକୁ କୌଣସି ଚେଷ୍ଟା ନ କରି ଖୋଲାମେଲାରେ ବେପରୁଆ ଭାବେ ଘରମୁହାଁ ଆଗୋଉଛି ।

ଗାରପ୍ପୁ ଜଙ୍ଗଲରେ ଆମେ ପହଞ୍ଚିବାବେଳକୁ କଅଁଳ ଖରା ବଡ଼ ବଡ଼ ଗଛର ଅଗ ଛୁଉଁଥାଏ । ଆଗରେ ଶୁଖିଲା ନାଳଟିଏ ପଡ଼ିଲା । ଏକଦା ନାଳ ଉପର କାଠର ପୋଲ୍‌ଠାରୁ

* କୁମାୟୁଁ ଅଞ୍ଚଳର ସାଧାରଣ ବାଣୁଆମାନେ ଗୁଳିର କ୍ଷେପଣସୀମା ଅନୁସାରେ ଦୂରତା ନିରୂପଣ କରନ୍ତି । ବନ୍ଧୁକର ଗୁଳି ଯେତିକି ଦୂର ଯାଏ, ତାହାକୁ 'ଗୋଟିଏ ଗୁଳିର ଦୂରତା' ବୋଲି ଧରାଯାଏ—ଅନୁବାଦକ

* ଘଟଣାଟି 'ମୋର ଭାରତ' ବହିରେ ବର୍ଣ୍ଣନା କରାଯାଇଛି —ଅନୁବାଦକ

Digitized by srujanika@gmail.com

ଅଳ୍ପ ଛଡ଼ାରେ ଆଉ ବନ୍ଧରେ ବାଙ୍ଗୋଇଙ୍କ ବିଶ୍ରାମ ପାଇଁ ସଡ଼କ କଡ଼ରେ ପକ୍କା ଦଲାଣଟିଏ ଥିଲା । ବହୁଦିନୁ ଭାଙ୍ଗିରୁଜି ପଡ଼ିଥିବା ସେହି ଦଲାଣ ଉପରେ ଗଛଅଡ଼ୁ ଜଙ୍ଗଲ ମାଡ଼ିଚାଲିଣି । ଦଲାଣ ପାଖ ଗୋଟିଏ ଖୋଲା ଜାଗାରେ ଶୁଖିଲାପତ୍ର ଖେଳାଉଥିବା ପକ୍ଷୀଙ୍କରୁ ଅଧିକ ବଣକୁକୁଡ଼ା ଆମକୁ ଦେଖି ଫଡ଼ଫଡ଼ ହୋଇ ଉଡ଼ିଗଲେ । ପୋଲମୁଣ୍ଡରୁ ଗୋଟିଏ ସରୁ ବାଟରେ ଦୁହେଁ ଦଲାଣ କଡ଼େ କଡ଼େ ଚାଲୁ ଓ ଅଳ୍ପ ଏପାରି ସେପାଏ ଝାଟିବଣ ପାରହୋଇ ବନ୍ଧର ନାଲକୁ ଗଡ଼ିଲୁ । ନାଲଟିରେ କେବଳ ବର୍ଷାଦିନେ ପାଣି ଥାଏ, ଅନ୍ୟ ସମୟରେ ଏଠାରୁ ତିନ ମାଇଲ ତଳେ ବାଲିସେରରେ ନିର୍ମଳ ପାଣିର ସରୁ ଧାରଟିଏ ବହିଥାଏ । ଜଙ୍ଗଲର ଜନ୍ତୁ ନାଲ ସେଇର ଶୁଖିଲା ବାଲିରେ ଗାତ ଖୋଳି ଯାଇ ସେହି ଝରରୁ ପାଣି ପିଅନ୍ତି ।

ପରବର୍ତ୍ତୀ କେତେ ବର୍ଷ ଭିତରେ ଏହି ନାଲ ଆଖପାଖ ଜଙ୍ଗଲ ସହିତ ପରିଚୟ ନିବିଡ଼ତର ହେବା ସଙ୍ଗେ ସଙ୍ଗେ ତାହା ମୋର ଅତି ପ୍ରିୟ ଶିକାର କ୍ଷେତ୍ର ତଥା ପ୍ରମୋଦ ଉଦ୍ୟାନରେ ପରିଣତ ହେଲା । ଜନବସତି ତଥା ଜନସମାଗମଠାରୁ ବହୁଦୂର ଏହି ଜଙ୍ଗଲଟି ନାନା ରକମର ଅସଂଖ୍ୟ ପଶୁପକ୍ଷୀଙ୍କ ଆବାସସ୍ଥଳୀ ଏବଂ ରାଇଫଲ୍ ବା କାମେରାର ସୁଯୋଗ ପାଇଁ ଅତି ପ୍ରକୃଷ୍ଟ କ୍ଷେତ୍ର । ନାଲର ଶୁଖିଲା ବାଲିରେ ଅସଂଖ୍ୟ ଜନ୍ତୁଙ୍କ ଖୁରା ଓ ପାଦଚିହ୍ନ ଭିତରେ ମଣିଷର ଖୋଜ କେବେ ଦେଖିଦେଲେ ରବିନ୍‌ସନ୍ କ୍ରୁସୋ ନିର୍ଜନ ଦ୍ୱୀପର ବେଳାଭୂମିରେ ମ୍ୟାନ ଫ୍ରାଇଡ଼େର ପାଦଚିହ୍ନ ଦେଖିଲା ପରି ବିପୁଳ ବିସ୍ମୟ ଜାତ ହୁଏ ଓ କ୍ରୁସୋଙ୍କ ପରି ସ୍ୱାଧିକୃତ ଏକ ଜନମାନବଶୂନ୍ୟ ନିର୍ଜନ ସ୍ଥାନରେ ଅନ୍ୟର ଅନୁପ୍ରବେଶ ପାଇଁ କାରଣ ଖୋଜିବାର ପ୍ରବୃତ୍ତି ମନରେ ସ୍ୱତଃ ଜାଗିଉଠେ ।

ନାଲ ଦୁଇକଡ଼େ ପ୍ରଥମ ଅଧମାଇଲ ଝାଟି ଜଙ୍ଗଲ ପଡ଼େ; ତା'ପରେ ତେଣିକି ମାଇଲ ଓସାର ଗହଳ ନଲବଣ* ଦୁଇ ବନ୍ଧରେ ଦୀର୍ଘ ଦୂର ଲମ୍ବିଥାଏ । ବାଉଁଶ ପରି ପବ ଓ ଗଣ୍ଠି ଥିବା ପ୍ରାୟ ଚଉଦ ଫୁଟ ଲମ୍ବବିଶିଷ୍ଟ ଏହି ସଦାସବୁଜ ଶରକ୍ତୃଣ ଆମ ଗାଁଗଣ୍ଡାରେ ଘର ଛାଉଣି ପାଇଁ ବ୍ୟାପକ ଭାବେ ବ୍ୟବହୃତ ହୁଏ । ଶରକ୍ତୃଣ ଓଦା ସନ୍ତସନ୍ତିଆ ସ୍ଥାନରେ ମାଡ଼େ ଓ ତାହା ବାରମାସି କଞ୍ଚା ଥାଏ । ଗୋଚର ଭୂମି ପ୍ରସ୍ତୁତ କରିବା ପାଇଁ ଲୋକେ ଜଙ୍ଗଲ ପୋଡ଼ିଦେଲେ ନଲବଣ ତାର ଆର୍ଦ୍ରତା ଯୋଗୁ ନିଆଁରୁ ବର୍ତ୍ତିଯାଏ ଓ ଜନ୍ତୁମାନେ ସେଠାକୁ ପଳାଇ ଯାଇ ଆଶ୍ରୟ ନିଅନ୍ତି । ତେବେ କ୍ରମାଗତ ଅନାବୃଷ୍ଟି ଯୋଗୁ ଶରକ୍ତୃଣ ଶୁଖିଯିବା ପରେ ଯଦି ନିଆଁ ଲାଗେ ତାହା ଅତି ଭୟଙ୍କର ଦାବାଗ୍ନିରେ ପରିଣତ ହୁଏ । ଶରକ୍ତୃଣରେ ଗଣ୍ଠିମାନ ନିଆଁରେ ଠିକ୍ ପିସ୍ତଲ ପରି ଆବାଜ କରି ଫୁଟେ; ଲକ୍ଷ ଲକ୍ଷ ଗଣ୍ଠି ଏକସଙ୍ଗରେ ଫୁଟିବାଦ୍ୱାରା ଯେପରି ଶବ୍ଦ ହୁଏ, ସେଥିରେ ଦୀର୍ଘ କେତେ ମାଇଲ୍ ଦୂରରୁ ମଧ୍ୟ କାନ ଅତଡ଼ା ପଡ଼ିଯାଏ ।

---

* ଶରକ୍ତୃଣର ଜଙ୍ଗଲ—ଅନୁବାଦକ

Digitized by srujanika@gmail.com

ସେଦିନ କୁଅଁର ସିଂଙ୍କ ସହିତ ନାଲରେ ଚାଲି ଚାଲି ଦୂରରେ କାଗାଏ କଳା କଳା ଧୂଆଁ ଡେଉ ପରି ଫୁଲି ଫୁଲି ଉଠୁଥିବା ଦେଖିଲି । କ୍ରମେ ବଣପୋଡ଼ର ଘୂ ଘୂ ଗର୍ଜନ ଓ ଚଡ଼ଚଡ଼ ଶବ୍ଦ ମଧ୍ୟ ଶୁଣାଗଲା । ନାଳଟି ସେଠାରେ ଦକ୍ଷିଣକୁ ଗତି କରିଥାଏ । ନାଲ ବାଁ ବନ୍ଧରୁ ଆରମ୍ଭ ହୋଇଥିବା ପୂର୍ବ ପାଖର ଜଙ୍ଗଲରେ ନିଆଁ ଲାଗି ବତାସିଆ ପବନଝୋଡ଼ରେ ଆମରି ଆଡ଼କୁ ମାଡ଼ିଆସୁଥାଏ । କୁଅଁର ସିଂ ଆଗରେ ଥିଲେ, ମୋ ଆଡ଼କୁ ମୁହଁ ଫେରାଇ 'ଦଶବର୍ଷ ପରେ ଏଥର ନଳବଣରେ ନିଆଁ ଲାଗିଲା' ବୋଲି ଅତି ସହଜଭାବେ ମନ୍ତବ୍ୟ ଦେଇ ବିନା ଶୋଚନାରେ ଆଗେଇ ଚାଲିଲେ । ନାଲର ମୋଡ଼ ବୁଲିବା ମାତ୍ରେ ନିଆଁ ନାଲବନ୍ଧରୁ ପ୍ରାୟ ଶହେ ଗଜକୁ ପାଖେଇ ଆସିଥିବା ଦେଖିଲି । ପ୍ରବଳ ନିଆଁର ଏକ ଅବଚ୍ଛିନ୍ନ ପ୍ରାଚୀର ବହୁ ଉଚ୍ଚକୁ ଲହଲହ ହୋଇ ଉଠୁଥାଏ; ଧୂସର ଧୂଆଁ ଆକାଶ ସାରା ବ୍ୟାପିଇ ହୋଇ ଯାଇଥାଏ । ଝିଣ୍ଟିକା ଆଦି ଅସଂଖ୍ୟ ପୋକଜୋକ ଝାଞ୍ଜିରେ ପଦାକୁ ଉଡ଼ି ହୋଇ ଆସୁଥାଆନ୍ତି । ନଳବଣ ଧାରରେ ମଇନା, ଭରଦ୍ୱାଜ, ମୀନା ଓ ବଣି ଆଦି ପକ୍ଷୀ ପଲ ପଲ ହୋଇ ନିଆଁ ପାଖରେ ଖଣ୍ଡିଉଡ଼ା ଦେଇ ପୋକ ଖାଇବାରେ ଲାଗିଥାଆନ୍ତି । ସେମାନଙ୍କଠାରୁ ଖସି ଆସିଥିବା ପୋକଜୋକ ନାଲରେ ପଡ଼ିବା ମାତ୍ରେ ସେଠାରେ ଠୁଳ ହୋଇଥିବା ମୟୂର, ବଣକୁକୁଡ଼ା ଓ କଳାତିତିରଙ୍କ ଶିକାର ହେଉଥାଆନ୍ତି । ନାଲବନ୍ଧର ପ୍ରକାଣ୍ଡ ଶିମିଳି ଗଛଟିରୁ ରସାଳିଆ ବଡ଼ ବଡ଼ ଫୁଲ ପବନତୋଡ଼ରେ ଝଡ଼ି ବାଲିରେ ଆସି ପଡ଼ୁଥାଏ । ଚଢ଼େଇଙ୍କ ମେଳରେ ଗଳାପଣି କୋଡ଼ିଏଟି ଯାଏ ହରିଣ ବାଲିରେ ବୁଲି ବୁଲି ଆନନ୍ଦରେ ଶିମିଳିଫୁଲ ଖାଇବାରେ ଲାଗିଥାଆନ୍ତି ।

ବଣପୋଡ଼ ପାଖରୁ ଦେଖିବା ମୋ ଜୀବନରେ ସେଇ ପ୍ରଥମ । ଅଜଣା ଅଦେଖା ବିପଦକୁ ମଣିଷ ସବୁଦିନେ ବେଶି ଭୟ କରେ; ସମ୍ଭବତଃ ପାଖରୁ କେବେ ନ ଦେଖିଥିବାରୁ ବଣପୋଡ଼କୁ ମୁଁ ଏତେ ବେଶି ଡରୁଥିଲି । ଏବେ ପ୍ରବଳ ହୁତାଶନର ଅତି ନିକଟରେ ଏତେ ଗୁଡ଼ିଏ ପଶୁପକ୍ଷୀ ନିର୍ଭୟରେ ଚରୁଥିବା ଦେଖି ବୁଝିଗଲି ଯେ ମୋର ଭୟର କୌଣସି ଭିତ୍ତି ନାହିଁ । ସେଦିନ ଏକାକୀ ଥିଲେ ସେତିକ ବୁଝିବାର ସୁଯୋଗ ଜୁଟି ନ ଥାଆନ୍ତା; ଦୂରରୁ ଧୂଆଁ ଦେଖିଦେବା ମାତ୍ରେ ମୁଁ ଫେରପଡ଼ି ଘରମୁହାଁ ଧାଇଁଥାଆନ୍ତି । କୁଅଁର ସିଂ ମୋତେ କାଳେ ଡରୁଆ ଭାବବେ ବୋଲି ସେଦିନ ପଳାଇ ପାରିଲି ନାହିଁ । ପ୍ରବଳ ହୁତାଶନ ହୁ-ହୁ ଜଳୁଥିବା ବେଳେ ସେଥିପ୍ରତି ଆଦୌ ଧ୍ୟାନ ନ ଦେଇ ଶିକାରଯୋଗ୍ୟ ଜନ୍ତୁଟିଏ ବାହାରିବା ଅପେକ୍ଷାରେ ଯେ ଆମେ ସେଠାରୁ ଅତି ନିକଟରେ ଛିଡ଼ା ହୋଇଛୁ, ଏହା ହିଁ ସେଦିନ ବଣପୋଡ଼ ପ୍ରତି ଅହେତୁକ ଭୟକୁ ଚିରଦିନ ପାଇଁ ମୋ ମନରୁ ଅପସାରି ଦେଲା । ନିଆଁ ଧାସ ଅସମ୍ଭାଳ ହେବା ପରେ ହରିଣ ଓ ପକ୍ଷୀଗୁଡ଼ିକ ଧୀରେ ଧୀରେ ଆରକୂଳର ଜଙ୍ଗଲକୁ ଫେରି-ଗଲେ । ଆମେ ଦୁହେଁ ସେଠାରୁ ବୁଲି ଗାରପ୍ଲୁ ବାଟେ ଗାଁକୁ ବାହୁଡ଼ିଲୁ ।

ପରବର୍ତ୍ତୀ ଜୀବନରେ ଘାସବଣରେ ନିଆଁ ଲଗାଇ ବହୁବାର ଶିକାର କରିଛୁ । ହିମାଳୟର ଜଙ୍ଗଲଭରା ତଳପାର୍ବତ୍ୟ ଅଞ୍ଚଳରେ ଗ୍ରୀଷ୍ମବାସ କରି ଚଳୁଥିବା ଆମ ପରି

Digitized by srujanika@gmail.com

ଲୋକମାନଙ୍କୁ ଅସଂରକ୍ଷିତ ଜଙ୍ଗଲରେ ଘାସବଣ ପଦାକରି ଚଷିବାକୁ ପ୍ରସ୍ତୁତ କରିବାକୁ ସରକାରଙ୍କ ତରଫରୁ ଅନୁମତି ଦିଆଯାଏ । ଏଠାକାର ଜଙ୍ଗଲରେ ମିଳୁଥିବା ବିଭିନ୍ନ ରକମର ଘାସ ଭିନ୍ନ ଭିନ୍ନ ସମୟରେ ଶୁଖିବାକୁ ଲାଗେ । ତେଣୁ ଫେବୃଆରୀ ମାସରୁ ଘାସବଣ ପୋଡ଼ାପୋଡ଼ି ଆରମ୍ଭ ହୋଇ ଜୁନ୍ ମାସରେ ସରେ । ସେହି ପାଞ୍ଚ ମାସ ଯାକ ଜଙ୍ଗଲର ଜାଗାଏ ଜାଗାଏ ଘାସବଣ ଜଳୁଥିବା ପ୍ରାୟ ପ୍ରତିଦିନ ଦେଖିବାକୁ ମିଳେ । ଲୋକେ ଖୋଜି ଖୋଜି ଶୁଖିଲା ଘାସରେ ନିଆଁ ଲଗାନ୍ତି; ବଣ ଭିତରେ ଯାତାୟାତ କଲାବେଳେ ଘାସ ଚକଡ଼ାଏ ଶୁଖିଥିବା ଦେଖିଲେ ବାଟୋଇମାନେ ମଧ୍ୟ ବିନା ଶୋଚନାରେ ସେଥିରେ ନିଆଁ ଧରାଇ ଦିଅନ୍ତି ।

ଘାସବଣରେ ନିଆଁ ଲଗାଇ ଶିକାର କରିବାର ଏକ ବିଚିତ୍ର ଅନୁଭୂତି ସବୁଦିନେ ମୋ ମନେଥିବ । ଥରେ କମିଶନର୍ ଉଇଣ୍ଡହାମ୍‌ଙ୍କ ସହିତ କଲାଢିଗିର ଶିକାର କରିବା ପାଇଁ ତରାଇ ଅନ୍ତର୍ଗତ ବନ୍ଦ୍ରୁଖେରୀ ଅଞ୍ଚଳକୁ ଯାଇଥିଲି । ଶିକାର ସାରି ସକାଳୁ ବାହାଦୁର୍ ସହିତ ଦୀର୍ଘ ପଚିଶ ମାଇଲ ଦୂର ଆମ ଗାଁକୁ ବାହୁଡ଼ା ଯାତ୍ରା ଆରମ୍ଭ କଲି । ବାହାଦୁର୍ ଗତ ତିରିଶ ବର୍ଷ ଧରି ଆମ ଗାଁର ମୁଖିଆ । ଆଗପଛ ହୋଇ ଚାଲିବା ଭିତରେ ଅଳ୍ପ କେତୋଟି ଚକଡ଼ା ଛଡ଼ା ବାଟ କଡ଼ର ଅଧିକାଂଶ ଘାସବଣ ପୋଡ଼ା ସରିଥିବା ଲକ୍ଷ୍ୟ କଲୁ । ଜାଗାଏ ଶଗଡ଼-ଗୁଳାଟିଏ ହାତୀଆ ଘାସର ଗହଳ ବଣ ପାଖ ଦେଇ ଯାଇଥିଲା । ହଠାତ୍ ଆମ ସାମନାରେ ବଡ଼ ଜନ୍ତୁଟିଏ ଘାସବଣରୁ ବାହାରିପଡ଼ି ଶଗଡ଼ଗୁଳାରେ ମିନିଟିଏ କାଳ କଡ଼େଇ କରି ଛିଡ଼ା-ହୋଇ ରହିଲା । ସକାଳବେଳା; ଜନ୍ତୁଟି ଉପରେ କିଅଁ ଲଖରା ପଡ଼ିଥିଲା । ତା ସତ୍ତ୍ୱେ ପ୍ରକାଣ୍ଡ ଆକାର ଦେଖି ପ୍ରଥମେ ତାକୁ ମହାବଳ ବାଘ ବୋଲି ଭୁଲ କଲି । ଜନ୍ତୁଟି ଶଗଡ଼ଗୁଳା ପାରି ହୋଇ ଘାସବଣରେ ପଶିସିବାବେଳକୁ ଲାଙ୍ଗୁଡ଼ର ଲମ୍ବ ଦେଖି ତାକୁ ମସ୍ତବଡ଼ ଚିତାବାଘଟିଏ ବୋଲି ଚହ୍ନିଲି । ବାହାଦୁର ଦୁଃଖ କରି କହିପକାଇଲା, "ଆହା ! କମିଶନର୍ ସାହେବ ତାଙ୍କ ହାତୀଙ୍କ ସହିତ ଦଶ ମାଇଲ୍ ଦୂରରେ ଯାହା ରହିଗଲେ ! ଏଡ଼େ ବଡ଼ ଚିତାବାଘ ତରାଇ ମୁଲକରେ ଆଉ କେଉଁଠି ନ ଥିବ ! କମିଶନର୍ ସାହେବ ଥିଲେ ତାଙ୍କୁ ମନଲାଖି ଶିକାରଟିଏ ମିଳିଥାଆନ୍ତା !"

ଚିତାବାଘ ଯେଉଁଆଡ଼୍ୁ ଆସିଥିଲା, ସେଆଡ଼େ ଗୋଶାଳାଟିଏ ଥିବା ଆମେ ଜାଣିଥିଲୁ । ଚିତାବାଘ ଲୁଚିବାକୁ ଚେଷ୍ଟା ନ କରି ଦିନବେଳେ ଖୋଲାମେଲାରେ ଏପରି ବେପରୱାୟ ଭାବେ ସେହିଆଡ଼୍ୁ ଆସିବାଦ୍ୱାରା ଜଣାଗଲା ଯେ ଗୋଶାଳା ନିକଟରେ ପୂର୍ବରାତିରେ ହିଁ ସେ ଶିକାର ମାରିଛି । ତେଣୁ ଉଇଣ୍ଡହାମ୍ ଓ ତାଙ୍କ ହାତୀଙ୍କ ଅନୁପସ୍ଥିତି ପାଇଁ ଦୁଃଖ ପ୍ରକାଶ କରି ଚିତାବାଘକୁ ଛାଡ଼ିଦେବାର ପ୍ରଶ୍ନ ଉଠୁ ନ ଥିଲା । ଘାସବଣରେ ନିଆଁ ଲଗାଇ ଚିତାବାଘକୁ ପଦାକୁ ଘଉଡ଼ାଇ ଆଣିବାକୁ ମୋର ପ୍ରସ୍ତାବ ବାହାଦୁରର ମନକୁ ପାଇଲାନାହିଁ । ସେଥିରେ ସଫଳ ହେବା ସମ୍ବନ୍ଧରେ ଘୋର ସନ୍ଦେହ ପ୍ରକାଶ କରିବା ସତ୍ତ୍ୱେ ମୋତେ ସାହାଯ୍ୟ କରିବାକୁ ସେ ରାଜିହେଲା ।

Digitized by srujanika@gmail.com

ନିଆଁ ଲଗାଇବା ପୂର୍ବରୁ ଘାସବଣର ଆକାର ଓ ଆୟତନ ସଠିକଭାବେ ଜାଣିବା ଦରକାର । ଶଗଡ଼ଗୁଳା ଗୁଡ଼ ଗଛରପଟେ ଯେପରି ବୁଲି ଦେଖିଲି ଯେ ବଣଟି ପ୍ରାୟ ତ୍ରିକୋଣାକାର ଓ ତାର ଆୟତନ ପ୍ରାୟ ଦଶମାଣ । ତ୍ରିଭୁଜର ଭୂମି ପାଖେ ପାଖେ ଶଗଡ଼-ଗୁଳାଟି ଯାଇଥାଏ । ପବନର ଗତି ପରୀକ୍ଷା କରି ତାହା ମୋ ପ୍ରତି ଅନୁକୂଳ ହେବ ବୋଲି ଜାଣିଲି । ତ୍ରିଭୁଜାକାର ବଣଟିର ଶୀର୍ଷବିନ୍ଦୁ ଭୂମିଠାରୁ ପ୍ରାୟ ଦୁଇଶହ ଗଜ ଦୂର । ଦୁହେଁ ସେଠାକୁ ଯାଇ ଘାସ ବରିଆ ବଳ ସେଥିରେ ନିଆଁ ଧରାଇଲୁ ଏବଂ ଡାହାଣ ଓ ବାଁ ପାଖରୁ ବଣରେ ଏକସଙ୍ଗରେ ନିଆଁ ଲଗାଇଦେଲୁ । ବାରଫୁଟ ଉଚ୍ଚ ହାତିଆଘାସ ଖରାରେ ଶୁଖି ଶୁଖି ଥିଲା, ନିଆଁ ଲାଗିଯିବାର ମିନିଟକ ମଧ୍ୟରେ ତାହା ହୁ-ହୁ ଜଳିବାକୁ ଲାଗିଲା । ବାହାଦୁର ପ୍ରତି କୌଣସି ଆକସ୍ମିକ ବିପଦ-ଆପଦ ଯେପରି ନ ଘଟେ, ସେଥିପାଇଁ ନିକଟସ୍ଥ ଗୋଟିଏ ଗଛରେ ତାକୁ ଚଢ଼ାଇ ନିଜେ ଶଗଡ଼ଗୁଳାକୁ ଧାଇଁଗଲି ଓ ବଣଧାରରୁ ପ୍ରାୟ ଦଶଫୁଟ ଛଡ଼ାରେ ଭୂଇଁରେ ସାଷ୍ଟାଙ୍ଗ ଶୋଇଯାଇ .୨୫୦ ରାଇଫଲଟିକୁ ଠିକ୍ ଚିତାବାଘର ଉଚ୍ଚତାରେ ଶଗଡ଼ଗୁଳାକୁ ମୁହାଁଇ କରି ଧରିଲି । ସେଠାରୁ ପଚିଶ ଗଜ ଦୂରରେ ଚିତାବାଘ ବଣରେ ପଶିଥିଲା । ବଣରୁ ବାହାରି ସେ ଶଗଡ଼ଗୁଳା ପାରହେବାବେଳେ ଗୁଳି ଚଳାଇବା ମୋର ଉଦ୍ଦେଶ୍ୟ ଥିଲା ।

ବେଗବାନ୍ ରେଳଗାଡ଼ି କାଠପୋଲ ପାରହେଲା ପରି ଘୂ-ଘୂ ଗର୍ଜନ କରି ଘାସବଣ ଜଳିବାକୁ ଲାଗିଲା । ବଣଟି ପ୍ରାୟ ଅଧାଅଧି ଜଳିପରେ ଶଗଡ଼ଗୁଳାକୁ ଅନାଇ ରହି ଚିତାବାଘ ବାହାରିବା ପାଇଁ ଅପେକ୍ଷା କରିଛି—ଏତିକିବେଳେ ମୋ ଡାହାଣ କାନ୍ଧ ପାଖରେ ମଣିଷର ନଗ୍ନପାଦଟିଏ ଦେଖି ଚମକିପଡ଼ିଲି । ଲୋକଟିଏ ସେ ଭିତରେ ନିଃଶବ୍ଦରେ ଶଗଡ଼ଗୁଳାରେ ଆସି ମୋ ଅଲକ୍ଷ୍ୟରେ କେତେବେଳେ ଏତେ ପାଖକୁ ଆସିଥିଲା । ପୋଷାକପତ୍ରରୁ ଜାଣିଲି ଯେ ସେ ମୁସଲମାନ ଶଗଡ଼ିଆଟିଏ, ସମ୍ଭବତଃ ହଜିଲା ବଳଦଟିଏ ଖୋଜି ଖୋଜି ଅକସ୍ମାତ ଏଠାରେ ପହଞ୍ଚିଯାଇଛି । ଲୋକଟିକୁ କିଛି ବୁଝାଇ କହିବାକୁ ଭିତର ନଥିଲା, କହିଥିଲେ ବି ନିଆଁର ଘୂ-ଘୂ ଗର୍ଜନ ଭିତରେ ତାହା ଶୁଭିଥାଆନ୍ତା କି ନାହିଁ ସନ୍ଦେହ । ତେଣୁ ବିନା ବାକ୍ୟବ୍ୟୟରେ ତାକୁ ତରତରରେ ଭିଡ଼ିଆଣି ମୋ ପାଖରେ ଭୂଇଁରେ ମୁହଁମାଡ଼ି ଶୁଆଇଦେଲି ଓ ହଲଚଲ ନ ହେବାକୁ ତା କାନପାଖରେ ଥରଟିଏ ଚିତ୍କାର କରି କହି ତା ଉପରେ ଗୋଡ଼ ପକାଇ ଭୂଇଁରେ ମାଡ଼ିଧରିଲି ।

ଗୁହୁଁ ଗୁହୁଁ ନିଆଁ ବଣଧାରରୁ ପଚିଶ ଗଜକୁ ପାଖେଇ ଆସିଲା । ଏତିକିବେଳେ ଚିତାବାଘ ଘାସଗହଳରୁ ତୀରବେଗରେ ବାହାରିଆସି ଶଗଡ଼ଗୁଳା ପାରହୋଇ ଆରପାଖକୁ ଧାଇଁଲା । ମୁଁ ରାଇଫଲର ଘୋଡ଼ା ଚିପିଦେଲି; ଗୁଳି ଫୁଟିବାମାତ୍ରେ ଚିତାବାଘ ଥରଟିଏ କେବଳ ଲମ୍ଫ ଦେଇଦେବା ଲକ୍ଷ୍ୟ କଲି । ଶଗଡ଼ଗୁଳା ଆରପାଖେ ଘାସବଣ ପୂର୍ବରୁ ପୋଡ଼ା ସରିଥିଲା । ସେଥିର କଳା କଳା ଦରପୋଡ଼ା ଡାଳ ଓ ଡାଙ୍ଗି ଭିତରେ ଚିତାବାଘ

Digitized by srujanika@gmail.com

କୁଅଡ଼େ ଗଲାଗଲା । ଗୁଳି ତା'ଠାରେ ବାଜିଲା ନା ନାହିଁ ନିର୍ଭରଯୋଗ୍ୟଭାବେ ଜାଣି-ପାରିଲିନାହିଁ ।

ଗୁଳି ଫୁଟିବା ମାତ୍ରେ ଚିତାବାଘ ଲାଙ୍ଗୁଡ଼ ଟେକିଦେବା ସେ ମାରାତ୍ମକ ଭାବେ ଆହତ ହୋଇଥିବା ସପକ୍ଷରେ ଯାଉଥିଲା । ସେତେବେଳକୁ ନିଆଁ ପ୍ରାୟ ଆମ ଉପରକୁ ମାଡ଼ିଆସିଲାଣି; ଧୂଆଁରେ ଶଗଡ଼ଗୁଡ଼ା ଆଉ ଦିଶୁନାହିଁ । ତରତରରେ ଶଗଡ଼ିଆକୁ ଟିକିଏ ଛିଡ଼ାକରାଇଦେଲି ଓ ତା' ହାତ ଧରି ନିଆଁ ଧୂଆଁ ନ ମାନି ଶଗଡ଼ଗୁଡ଼ାରେ ଚିତାବାଘ ପଛେ ପଛେ ଧାଇଁଲି । ବାଟ ନ ଦେଖି ଅମୁହାଁ ଧାଇଁ ଧାଇଁ ଯାଇଲି ଚିତାବାଘକୁ ଠିକ୍ ଝୁଣ୍ଟିବା ପୂର୍ବରୁ ଦୁହେଁ ଅଳ୍ପକେ ଅଟକିଗଲୁ । ନିଆଁ ଆସି ଆମକୁ ଛୁଇଁବା ଉପରେ । ପ୍ରବଳ ଧାସରେ ଛିଡ଼ାହୋଇ ହେଉନଥାଏ । କାଳବିଳମ୍ବ ନ କରି ଶଗଡ଼ିଆକୁ ଚିତାବାଘର ଲାଞ୍ଜଟି ଧରାଇଦେଲି ଓ ନିଜେ ତା ହାତକୁ ଶକ୍ତଭାବେ ମୁଠାଇ ଧରି ଚିତାବାଘକୁ ନିଆଁ ପାଖରୁ ହଟାଇବାକୁ ଘୋଷାରିଲି । ଚିତାବାଘ ବେକରେ ଗୁଳିଖାଇ କେବଳ ଅଚଳ ହୋଇଯାଇଥିଲା । ତା ଲାଞ୍ଜ ଆମେ ଭିଡ଼ିବା ମାତ୍ରେ ପଛକୁ ମୁହଁ ଫେରାଇ ସେ ଆଁ କରି ଯେପରି ଝେଙ୍କାରି ଉଠିଲା, ମନେ ହେଲା ଶକ୍ତି ପାଇଥିଲେ ସେଦିନ ସେ ଆମ ପ୍ରାଣ ରଖିନଥାନ୍ତା । ଚିତାବାଘର ଗର୍ଜନରେ ମୁଁ ଭୟରେ ଥରିଉଠିଲି; ତେଣୁ ଶଗଡ଼ିଆ ଉପରେ ତାହାର କେଉଁ ପ୍ରକାର କଣ ପ୍ରଭାବ ପଡ଼ିଥିବ ଅନୁମାନ କରାଯାଇପାରେ । ସେ ଯାହାହେଉ, ଟିକିଏ ଓଟାରି ପଚିଶ ଗଜ ନେବା ଭିତରେ ଚିତାବାଘର ପ୍ରାଣ ବାହାରିଗଲା । ମୁଠା ଫିଟାଇଦେବାମାତ୍ରେ ମୁଁ ତାକୁ କାମୁଡ଼ି ଗୋଡ଼ାଇଲା ପରି ଶଗଡ଼ିଆ ବାପୁଡ଼ା କୁଦାକେ ଛଅହାତକୁ ହଟିଗଲା ଓ ମୁଣ୍ଡରୁ ପଗଡ଼ିଟିକୁ ଫିଟାଇ ଧରି ଅମଡ଼ାମଡ଼ା ନ ମାନି ପ୍ରାଣମୂର୍ଚ୍ଛା ଧାଇଁବାକୁ ଲାଗିଲା । ପାଗଟି ପଛରେ ଭୂଇଁରେ ଲୋଟୁଥିବା ପ୍ରତି ତା'ର ନିଘା ନଥାଏ । ଆଜୀବନ ଧୀର ମନ୍ଥର ଗତିରେ ବଳଦ ଅଡ଼ାଇଥିବା ଶଗଡ଼ିଆ ପ୍ରାଣ ଭୟରେ ଏଡ଼େ ବେଗରେ ଧାଇଁପାରେ, ଆଖିରେ ଦେଖି ନ ଥିଲେ ତାହା କଦାପି ବିଶ୍ୱାସ କରି ନ ଥାଆନ୍ତି ।

ଗାଁରେ ପହଞ୍ଚିଲା ପରେ ଶଗଡ଼ିଆ ଏ ବିଷୟରେ କଣ କଣ କହିଥିବ ଜାଣିବା ପାଇଁ ପ୍ରବଳ କୌତୂହଳ ହୁଏ । ଆମ ଏଠାକାର ଲୋକେ ଗପ ଶୁଣିବାକୁ ଯେତିକି ଉତ୍ସୁକ, ଗପ ଶୁଣାଇବାରେ ମଧ୍ୟ ସେତିକି ପାରଙ୍ଗମ । ବିଷୟବସ୍ତୁର ଅତିରଞ୍ଜନ ଓ ବର୍ଣ୍ଣନାର ପରିପାଟୀରେ କେହି ସେମାନଙ୍କୁ ବଳିଯିବନାହିଁ । ଶଗଡ଼ିଆଟି ପାଖପଡ଼ିଶା ବନ୍ଧୁବାନ୍ଧବଙ୍କ ମେଳରେ ବସି 'ପାଗଳା ସାହେବ' ହାବୁଡ଼ରୁ ଖସି ପଳାଇ ଆସିବାର ବୃତ୍ତାନ୍ତ ଯେପରି ନାଟକୀୟ ଭଙ୍ଗୀରେ ବର୍ଣ୍ଣନା କରିଥିବ, ତାହା ଶ୍ରବଣୀୟ ହୋଇଥିବ ନିଶ୍ଚୟ । ବାହାଦୂର ଗଛ ଓ ଡାଳରେ ବସି ଘଟଣାଟିକୁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଲକ୍ଷ୍ୟକରିଥିଲା । ତଳକୁ ଓହ୍ଲାଇଲା ପରେ ସେ କହିଲା, "ଆଜିଠୁଁ କେତେବର୍ଷଯାଏ ଶୀତରାତିରେ ନିଆଁ ପୋଇଁଲାବେଳେ

Digitized by srujanika@gmail.com

ବିଚକ୍ଷଣର କଥା ଶୁଣିବାକୁ ବହୁତ ଲୋକ ରାଜି ହେବେ, କିନ୍ତୁ ତା କଥାରେ କେହି ପରତେ ଯିବେନାହିଁ ।

ହିଂସ୍ରଜନ୍ତୁଙ୍କ ନିକଟକୁ ଛପି ଛପି ପାଖେଇବା ସୁବିଧାଜନକ ନ ହେଲେ, ହାତୀ ବା ଘଉଡ଼ାଳିଙ୍କ ସାହାଯ୍ୟରେ ବଣବୁଦାରୁ ସେମାନଙ୍କୁ ଦୌଡ଼ାଇ ଘଉଡ଼ାଇ ଅଣାଯାଏ । ଜନ୍ତୁଙ୍କୁ ବଣଜଙ୍ଗଲରୁ ଘଉଡ଼ାଇ ବାହାର କରିବାର ବହୁ ଅନୁଭୂତି ଭିତରୁ ନିମ୍ନଲିଖିତ ତିନୋଟି ଶିକାର ଅଭିଯାନ ବିଶେଷ ଉଲ୍ଲେଖଯୋଗ୍ୟ । ସେଥିରୁ ପ୍ରଥମ ଦୁଇଟି ଅଭିଯାନରେ ଅତି ଅଳ୍ପସଂଖ୍ୟକ ଘଉଡ଼ାଳିଙ୍କ ସାହାଯ୍ୟ ନେଇ ମଧ୍ୟ ମୁଁ ସଫଳ ହୋଇପାରିଥିଲି । ଶେଷଟିରେ ମୋର ଏପରି ଆତଙ୍କମୟ ଅନୁଭୂତି ହୋଇଥିଲା, ଯାହାକୁ ସ୍ମରଣକଲେ ଏବେ ମଧ୍ୟ ହୃଦ୍‌ଯନ୍ତ୍ରର ସ୍ପନ୍ଦନରେ ତାଳଚ୍ୟୁତି ଘଟିଲା ପରି ଲାଗେ ।

## ପ୍ରଥମ ଅଭିଯାନ

ଆମ ଗାଁ ପାଖରେ ମୋଆର ନଦୀର ପୋଲଠାରୁ ଅଧମାଇଲ ପଶ୍ଚିମକୁ ସଡ଼କ ପରି ଓସାର ପୋଡ଼ାପଡ଼ିଟିଏ । ଜାଗାଏ ସେଦିନ ଦିକାଳରୁ ରବିନ୍‌କୁ * ସଙ୍ଗରେ ନେଇ ସେଠାକୁ ବୁଲିବାକୁ ଯାଇଥିଲି । ପଡ଼ିଟିରେ ଜାଗାଏ ଛୋଟ ଛୋଟ ଘାସ ମାଡ଼ିଥିଲା । ରବିନ ଘାସ ଶୁଙ୍ଘି ଶୁଙ୍ଘି ଆଗରେ ଚାଲୁ ଚାଲୁ କଣ ଗନ୍ଧ ବାରି ପ୍ରଶ୍ନିଳ ଦୃଷ୍ଟିରେ ମୋ ଆଡ଼କୁ ଫେରି ଚାହିଁଲା । ସେଠାରେ ଖୋଜଦାଗ ନ ଥିବାରୁ ଗନ୍ଧ ବାରି ଆଗେଇବାକୁ ତାକୁ ସଙ୍କେତ ଦେଲି । ରବିନ୍ ବିନା ସନ୍ଦେହରେ ବାଁକୁ ବୁଲି ପଡ଼ିଆ ଧାରଯାଏ ଗଲା ଓ ସେଠାରେ ନିର୍ଦ୍ଦିଷ୍ଟ ଗୋଟିଏ ଘାସକୁ ଭଲଭାବେ ଶୁଙ୍ଘି ସାରି ମୁହଁ ବୁଲାଇ ମୋତେ ଯେପରି ଅନାଇଲା, ମନେହେଲା ସେ କହୁଛି, "ମୁଁ ଠିକ୍‌ଭାବେ ଗନ୍ଧ ବାରିଛି—ଏଥିରେ ଭୁଲ୍ ଭଟକା କିଛି ନାହିଁ ।" ସେଠାରୁ ଆଗକୁ ହାତେ ଉଚ୍ଚର ଗହଳ ଘାସ । ରବିନ୍ ଘାସରେ ପଶି ଅତି ସାବଧାନରେ ଗନ୍ଧ ବାରି ଶହେ ଗଜ ଦୂର ଗୋଟିଏ ଛୋଟ ଖାଲପାଖଯାଏ ଗଲା । ଖାଲ ଭିତର ଓଦାମାଟିରେ ପାଦଚିହ୍ନଦାଗ ଦେଖି ଜାଣିଲି ଯେ ରବିନ୍ ମହାବଳ ବାଘର ହିଁ ପିଛା ଧରିଛି । ଖାଲ ଆରପାଖେ ରବିନ୍ କେତେ ଘାସ ଶୁଙ୍ଘିବାକୁ ଲାଗିଲା ନିକେ ସେଠାରେ ନଇଁପଡ଼ି ଦେଖିଲି ଯେ ଘାସରେ ରକ୍ତବୁନ୍ଦାଏ ପଡ଼ିଛି । ବଣଜଙ୍ଗଲରେ ମହାବଳ ବାଘର ଯିବାବାଟରେ ଚିହ୍ନ ରହିଥିବା

---

* 'ରବିନ୍' ଲେଖକଙ୍କ ସ୍ପାନିଏଲ୍-ସ୍ପାନିଏଲ କୁକୁର । ତା ବିଷୟରେ 'କୁମାୟୁଁର ନରଖାଦକ' ବହିରେ ସେ ଗୋଟିଏ ଅଧ୍ୟାୟ ଲେଖିଛନ୍ତି—ଅନୁବାଦକ ।

Digitized by srujanika@gmail.com

ଦେଖିଲେ ବାଘକୁ କେହି ଆହତ କରିଛି ବୋଲି ମୋର ଆଶଙ୍କା ହୁଏ । ତେବେ ରକ୍ତଚୋପାକ ତାଜା ଥିଲା; ହେଲେ ଆଖପାଖରୁ କେଉଁଠୁ ବନ୍ଧୁକ ଆବାଜ ମଧ୍ୟ ଶୁଣି ନ ଥିଲି । ତେଣୁ ଅନୁମାନ କଲି ଯେ ବାଘ ହୁଏତ ହରିଣ କିମ୍ବା ବଡ଼ ବାରହାଟାଏ ମାରି ସେହିବାଟେ ବୋହିନେଇଛି । ଝିଙ୍କଏ ଆଗକୁ ପନ୍ଦର ଗଜ ଲମ୍ବ ଓସାର ବିଶିଷ୍ଟ ଗେଙ୍ଗୁଟି ଗଛର ଗହଳ ବଣଟିଏ । ରବିନ୍ ବଣଧାରରେ ଅଟକି ମୋଠୁ ନିର୍ଦ୍ଦେଶ ପାଇଁ ଅପେକ୍ଷା କଲା ।

ପାହୁଲ ଦାଗରୁ ବାଘଟିକୁ ନିର୍ଭରଯୋଗ୍ୟଭାବେ ଚିହ୍ନଟ କରିପାରିଲି । ମସ୍ତବଡ଼ ସେହି ମହାବଳବାଘ ନଈ ସେପାରି ଝାଟିବଣରେ ରହୁଥିବା ମୋତେ ଜଣାଥିଲା । ନୈନିତାଲରୁ ଆସିବାଦିନୁ ଗତ ତିନିମାସ ଧରି ସେ ବାଘର ଦୈନନ୍ଦିନ ଲକ୍ଷ୍ୟ କରୁଥିଲି; ତାର କାର୍ଯ୍ୟକଳାପ ଦେଖି ମୋ ମନରେ ଦୟା ପଶିଥିଲା । ଆମେ ଯେଉଁ ବାଟେ ନିୟମିତ ଯାତାୟାତ କରୁ ଓ ହେଲେ ବୁଲିବାକୁ ଯାଉ, ବାଘ ମଧ୍ୟ ସେ ବାଟେ ବରାବର ଯିବାଆସିବା କରୁଥାଏ । ମୁଁ ଘରେ ନ ଥିଲାବେଳେ ମ୍ୟାଗି ଓ ରବିନ୍ ଏକାକୀ ବୁଲୁ ବୁଲୁ ତାକୁ କେତେଥର ଭେଟିଥାଆନ୍ତି; ତାଙ୍କୁ ବାଟ ଛାଡ଼ିବାକୁ ବାଘ କ୍ରମେ କ୍ରମେ ଅଧିକ ଅନିଚ୍ଛୁକ ହେଲାପରି ଜଣାପଡ଼ୁଥାଏ । ସେସବୁ ସ୍ଥାନରେ ବୁଲିବା ମ୍ୟାଗି ପ୍ରତି ନିରାପଦ ନୁହେଁ ବୋଲି ଶେଷରେ ରବିନ୍ ମଧ୍ୟ ବୁଝିପାରିଲା ଓ ମୁଁ ସାଙ୍ଗରେ ନ ଥିଲେ ମ୍ୟାଗି ସହିତ ବୋଆର୍ ପୋଲ ପାରହେବାକୁ ଆଦୌ ମଙ୍ଗିଲାନାହିଁ । ଅଘଟଣ କିଛି ଘଟିବା ପୂର୍ବରୁ ବାଘଟିକୁ ଶେଷକରିଦେବା ପାଇଁ ମୁଁ ସୁଯୋଗ ଖୋଜୁଥିଲି । ଯୋଗକୁ ବାଘ ସେଦିନ ଶିକାର ସହ ଗେଙ୍ଗୁଟି ବଣରେ ପଶି ଉପସ୍ଥିତ ସୁଯୋଗଟି ଜୁଟାଇଦେଲା ।

ପବନ ଆମ ପାଖରୁ ବଣ ଆଡ଼କୁ ବହୁଥିବାରୁ ସେବାଟେ ଆଉ ଆଗେଇବା ଠିକ ନ ଥାଆନ୍ତା । ବଣ ବାହାରେ ବାହାରେ ଦେଢ଼ଏ ବୁଲି ଆରପାଖରୁ ଆଗେଇବାକୁ ଲାଗିଲି । ବଣ ଧାରରୁ ପ୍ରାୟ ତିରିଶ ଗଜ ଛଡ଼ାରେ ରବିନ୍ ଥୋମଣି ଟେକି ପବନରୁ ଗନ୍ଧ ବାରିଲା ଓ ତା' ପରେ ଥୋମଣି ଉପର ତଳ ହଲାଇ ବାଘ ବଣ ଭିତରେ ହିଁ ଅଛି ବୋଲି ମୋତେ ଜଣାଇଦେଲା । ସେଥିକି ନିର୍ଭରଯୋଗ୍ୟଭାବେ ଜାଣିବା ପରେ ଅଉ ଆଗକୁ ନ ବଢ଼ି ରବିନ୍ ସହିତ ଘରକୁ ବାହୁଡ଼ି ଆସିଲି ।

ଜଲଖିଆପରେ ସାରି ବାହାଦୂର ଡକାଇ ବାଘ ବିଷୟ କହିଲି ଏବଂ ଧନବାନ୍ ଓ ଧର୍ମାନନ୍ଦଙ୍କୁ ଗାଁରୁ ଡାକି ଆଣିବାକୁ ତାକୁ ପଠେଇଲି । ସେ ଦୁହେଁ ମୋର ଅତି ବିଶ୍ବସ୍ତ ସହଚର । ନିଷ୍ଠାର ସହିତ ନିର୍ଦ୍ଦେଶ ମାନି କାମକରିବା ଛଡ଼ା ବାହାଦୂର ଓ ମୋପରି ଦୁହେଁ ସହଜରେ ଗଛ ଚଢ଼ିପାରନ୍ତି । ଖିଆପିଆ ସାରି ଖଟ୍‌ବେଳେ ଆମ ଘରେ ସମସ୍ତେ ଏକାଠି ହେଲୁ ଓ କାହାରି ପକେଟରେ ଭେଦ ହେବା ଭଳି କିଛି ଜିନିଷ ନାହିଁ ବୋଲି ଯାଞ୍ଚ - କଲାପରେ ଘରୁ ବାହାରିଗଲୁ । ୪୦୦/୪୫୦ ରାଇଫଲ୍‌ଟିଏ ଧରି ମୁଁ ଆଗରେ ରହିଲି । ବାହାଦୂର, ଧନବାନ୍ ଓ ଧର୍ମାନନ୍ଦ ଚଟି କୋତା ଥୋଇ ଦେଇ ଖାଲି ପାଦରେ ମୋ ପଛେ

Digitized by srujanika@gmail.com

ପଛେ ଚାଲିଲେ । ତିନିଜଣ ଲୋକରେ ସୁରୁଖୁରୁରେ ଘଉଡ଼ା ଚଳାଇବା ପାଇଁ ଯାହା ଯାହା କରିବାକୁ ପଡ଼ିବ, ବାଟ ଚାଲୁ ଚାଲୁ ସେସବୁ ବୁଝାଇ କହିଲି । ସେମାନେ ପ୍ରତ୍ୟେକେ ସେଠାକାର ଜଙ୍ଗଲ ସହିତ ଅତି ଭଲଭାବେ ପରିଚିତ । ମୋ ଯୋଜନାଟି ବୁଝିସିବା ମାତ୍ରେ ତିନିହେଁ ପରମ ଆଗ୍ରହ ସହି ତାହା ଗ୍ରହଣ କରିନେଲେ ।

ଯୋଜନାଟି ଥିଲି ଅତି ସହଜ ଓ ସରଳ । ବଣ ତିନିପାଖେ ତିନୋଟି ଗଛରେ ସେମାନେ ଜଣେ ଜଣେ ଜଗି ବସିବେ; ଚତୁର୍ଥଟି ପାଖରେ ମୁଁ ରାଇଫଲ୍ ଧରି ଛପିରହିବି । ବାହାଦୂର ମଝିରେ ରହିବ । ଚିତାବାଘକୁ ଅନୁକରଣ କରି ମୁଁ ଥରଟିଏ ହେଣ୍ଟାଳି ଦେବା ମାତ୍ରେ ଶୁଖିଲା କାଠ ଖଣ୍ଡିଏ ଗଛଡ଼ାଳରେ ବାଡ଼େଇ ବାଘକୁ ସେ ହୁରୁଡ଼ାଇ ଦେବ । ବାଘ ଜଙ୍ଗଲଧାର ଆଡ଼େ ମୁହାଁଇଲେ ସେ ପାଖର ଜଗୁଆଳ ତାଳି ମାରି ତାକୁ ବାହୁଡ଼ାଇ ଦେବ । ତିନି ପାଖରେ ବାଟ ଜଗୁଲା ଦେଖି ବାଘ ଶେଷରେ ମୋରି ଆଡ଼କୁ ଯିବାକୁ ବାଧ୍ୟ ହେବ । ଯୋଜନାଟି ସଫଳ ହେବାପାଇଁ ସମ୍ପୂର୍ଣ୍ଣ ନୀରବତା ରକ୍ଷା ନିତାନ୍ତ ଆବଶ୍ୟକ ବୋଲି ଜୋର୍ ଦେଇ କହିଲି । ବାଘଠାରୁ ମୋଟେ ତିରିଶ ଚାଳିଶ ଗଜକୁ ଅମେ ପାଖରେ ଥିବାରୁ ବାଟ ଚାଲିବା, ଗଛ ଚଢ଼ିବା ବା ମୋ ସଙ୍କେତକୁ ଅପେକ୍ଷା କରିଥିବା ବେଳେ କେହି ଟିକିଏ ଶବ୍ଦ କରିଦେଲେ ସବୁ ଆୟୋଜନ ବ୍ୟର୍ଥ ହୋଇଯିବ ।

ସକାଳେ ରବିନ୍ ଯେଉଁଠାରେ ବାଘର ଗନ୍ଧ ବାରିଥିଲା, ଧନବାନ୍ ଓ ଧର୍ମାନନ୍ଦଙ୍କୁ ସେଠାରେ ବସାଇ ବାହାଦୂରକୁ ନେଇ ବଣଧାରରୁ କୋଡ଼ିଏ ଗଜ ଛଡ଼ା ଗୋଟିଏ ଗଛରେ ଚଢ଼ାଇଲି । ତା'ପରେ ଅନ୍ୟ ଦୁଇଜଣଙ୍କୁ ମଧ୍ୟ ସଙ୍ଗରେ ନେଇ ବଣ ଦୁଇପାଖେ ଦୁଇଟି ଗଛରେ ଚଢ଼ାଇଲି । ଗଛ ତିନୋଟି ଯେମିତି ଥାଏ, ସେଥିରେ ବସି ପରସ୍ପର ଉପରେ ନଜର ରଖିବା ଛଡ଼ା ସେମାନେ ପ୍ରତ୍ୟେକେ ବାଘର ଗତିବିଧି ମଧ୍ୟ ସହଜରେ ଲକ୍ଷ୍ୟ କରିପାରିବେ । କିନ୍ତୁ ବଣ ମଝିରେ ବଡ଼ ବଡ଼ ଗଛଧାଡ଼ିଏ ପ୍ରତିବନ୍ଧକ ସୃଷ୍ଟି କରୁଥିବାରୁ କେବଳ ମୁଁ ସେମାନଙ୍କୁ ଦେଖିପାରିବି ନାହିଁ ।

ନିଃଶବ୍ଦରେ ସେତିକ କାମ ଶେଷ କରି ନିଜ ଜାଗାକୁ ବାହାରିଲି । ସେଠାରୁ ଶହେଗଜ ଦୂରରେ ସରୁ ବାଟଟିଏ ପାହାଡ଼ କଡ଼େ କଡ଼େ ବୁଲିଆସି ଗୋଟିଏ ବଣ ପାଖଦେଇ ଯାଇଥିଲା । ବାହାଦୂର ଜଙ୍ଗଲର ଯେଉଁ ପାଖରେ ଥିଲା; ବାଟଟି ଠିକ୍ ତାର ବିପରୀତ ପାଖରେ । ସେଠାରେ ପାହାଡ଼କଡ଼ର ଗୋଟିଏ ଅଳ୍ପ ଓସାର ଅଗଭୀର ଖୋଲ୍‌ଭିତରେଦେଇ ବଡ଼ ବଡ଼ ଜନ୍ତୁମାନେ ତଳକୁ ଗଡ଼ନ୍ତି । ତେଣୁ ବଣରୁ ହୁରୁଡ଼ିଯିବା ପରେ ବାଘ ମଧ୍ୟ ସେହି ଖୋଲରେ ପଶି ପଳାଇବାକୁ ଚେଷ୍ଟାକରିବ ବୋଲି ମୋର ଆଶା ଥାଏ । ତାକୁ ପ୍ରାୟ ତିରିଶ ଫୁଟ ଉଚ୍ଚରେ ଖୋଲ ଡାହାଣପାଖେ ପାହାଡ଼ କଡ଼ରେ ବଡ଼ ଜାମୁଗଛଟିଏ । ସେହି ଗଛରେ ବସି ବାଘ ଖୋଲ ଭିତର ଦେଇ ଗଲାବେଳେ ଗୁଳି ଚଳାଇବି ବୋଲି ସ୍ଥିର କରିଥିଲି; କିନ୍ତୁ ପାଖରେ ପହଞ୍ଚି ଦେଖିଲି ଯେ ଓଜନଦାର୍ ରାଇଫଲ୍‌ଟି ଧରି ଗଛରେ ଚଢ଼ିହେବ

Digitized by srujanika@gmail.com

ନାହିଁ । ସୁବିଧା ହେବାଭଳି ଅନ୍ୟ ଗଛ ବି ପାଖରେ ନ ଥିଲା । ଅଗତ୍ୟା ଶୁଖିଲା ପତ୍ର ଅଡ଼େଇ ଜାମୁଗଛକୁ ଆଉଜି ଭୂଇଁରେ ବସିପଡ଼ିଲି ଓ ସେଫ୍‌ଟିକ୍ୟାଚ୍ ଖୋଲି ରାଇଫଲ୍ କାନ୍ଧକୁ ନେଲାପରେ ଚିତାବାଘ ପରି ଥରଟିଏ ହେଣ୍ଟାଳିଦେଲି ।

ଚିତାବାଘର ହେଣ୍ଟାଳ ଅନୁକରଣ କରି ବାହାଦୂରକୁ ସଙ୍କେତ ଦେବା ଛଡ଼ା ବଣ ଏ ପାଖରୁ ବିପଦର ଆଶଙ୍କା ନାହିଁ ବୋଲି ବାଘର ବିଶ୍ୱାସ ଜନ୍ମାଇବା ମୋର ଅଭିପ୍ରାୟ ଥିଲା । କାର୍ଯ୍ୟତଃ ତାହା ହିଁ ଘଟିଲା । ମୁଁ ସଙ୍କେତ ଦେବାର କେଇ ସେକେଣ୍ଡ ଭିତରେ ବାହାଦୂର୍ ତାଳି ବାଡ଼େଇବାର ଶବ୍ଦ ଶୁଭିଲା ଓ ଠିକ୍ ତା'ପରେ ପରେ ପ୍ରକାଣ୍ଡ ମହାବଳ ବାଘଟିଏ ଗେଙ୍ଗୁଟି ବଣରୁ ବାହାରି ମୋ ସାମନାରେ ଛିଡ଼ାହୋଇଗଲା ।

ଦୀର୍ଘ ଦଶବର୍ଷ କାଳ ମହାବଳ ବାଘର ଚଳଚ୍ଚିତ୍ର ଉଠାଇବାକୁ ବହୁତ ଚେଷ୍ଟା କରିଥିଲି ଓ ମହାବଳ ବାଘ ବହୁବାର ସାମନାରେ ଦେଖି ମଧ୍ୟ ମନଲାଖି ଚଳଚ୍ଚିତ୍ରଟିଏ ଉଠାଇବାକୁ ସୁଯୋଗ କେବେ ପାଇ ନ ଥିଲି । ବାଘ ବଣରୁ ବାହାରି ପ୍ରଦର ଝଟ୍‌ରେ ଅତି ସୁନ୍ଦର ଠାଣିରେ ଛିଡ଼ାହୋଇଯିବାମାତ୍ରେ ଉତ୍କୃଷ୍ଟ ଚଳଚ୍ଚିତ୍ରଟିଏ ଉଠାଇନେବାର ଏକ ସୁବର୍ଣ୍ଣ ସୁଯୋଗ ସମ୍ପୂର୍ଣ୍ଣ ନିରର୍ଥକ ହୋଇଗଲାବୋଲି ଜାଣିଲି । ବାଘ ମୋଠାରୁ ମୋଟେ କୋଡ଼ିଏ ଗଜ ଛଡ଼ାରେ ନିଶ୍ଚଳ ହୋଇ ଛିଡ଼ାହୋଇଛି । ଶୀତଋତୁର ପ୍ରାରମ୍ଭରେ ଚିକ୍କଣ ହୋଇ ଉଠିଥିବା ତାର ଚମ ଉଜ୍ଜ୍ୱଳ ଖରାରେ ମଖମଲ ପରି ଝଟକୁଛି—ସମ୍ମୁଖ ଭୂମିରେ ତୃଣ ଉଦ୍ବେଳନରେ ଅନ୍ତରାୟ ସୃଷ୍ଟି କଲାଭଳି ସାମାନ୍ୟ ପ୍ରତିବନ୍ଧ କେଉଁଠାରେ ନାହିଁ—ପରିବେଶ ଓ ପୃଷ୍ଠଭୂମି ମଧ୍ୟ ଚଳଚ୍ଚିତ୍ର ପାଇଁ ଉପଯୁକ୍ତ ଓ ମନୋରମ—ମୁହୂର୍ତ୍ତିକେ ଏ ସବୁ ଲକ୍ଷ୍ୟକରି ଅବଶୋଷରେ ମନ ଭରିଗଲା । ଚଳଚ୍ଚିତ୍ର ଉଠାଇବା ପାଇଁ ସେଭଳି ସୁଯୋଗଟିଏ ହାସଲ କରିବାକୁ ଯେତେ ଅର୍ଥବ୍ୟୟ ଓ ଶ୍ରମ ସ୍ୱୀକାର କରିବାକୁ ପଡ଼ିଥିଲେ ମଧ୍ୟ ମୁଁ ତାହା ସାଦରେ ଗ୍ରହଣ କରିଥାଆନ୍ତି । ସେ ସୁଯୋଗ ଏପରି ଆକସ୍ମିକ ଓ ଅଯାଚିତ ଭାବେ ମିଳିଲା ଯେ ତାହା ଉପଯୋଗ କରିବାକୁ ଉପାୟ ନ ଥିଲା ।

ବଣଜଙ୍ଗଲରେ ପଶୁଜନ୍ତୁଙ୍କ ଅନୁସରଣ କଲାପରେ ମୁଁ ସବୁବେଳେ ସେମାନଙ୍କୁ ମାରେନାହିଁ; ଅନେକ ସମୟରେ ଦିନ ଦିନ ଧରି ଅନୁଧାବନ କରିଥିବା ଜନ୍ତୁଙ୍କ ପାଖରେ ପାଇ ମଧ୍ୟ ଗୁଳି ଚଳାଇବାକୁ ମୋର ହାତ ଯାଏନାହିଁ । ମୁଣ୍ଡରୁ ଟୋପି କାଢ଼ି ଥରଟିଏ ହଲାଇ ଦେଇ ଜନ୍ତୁଟିକୁ ମୁଁ ହୁରୁଡାଇ ଦିଏ ଏବଂ ଅନାହତ ଅବସ୍ଥାରେ ତାର ପ୍ରାଣମୂର୍ଚ୍ଛା ପଳାୟନ ତାକୁ ମାରିଦେବା ଅପେକ୍ଷା ମୋତେ ଯଥେଷ୍ଟ ବେଶୀ ଆନନ୍ଦ ଯୋଗାଏ । ଏଡ଼େ ସୁନ୍ଦର ବାଘଟିକୁ ମାରିଦେବାକୁ ସେଦିନ କାହିଁକି ମନ ବଳିଲାନାହିଁ । ଟୋପି ହଲାଇ ସେଠାରୁ ତାକୁ ଘଉଡ଼ାଇ ଦେବି ବୋଲି ଭାବିଲି । ଗୃହଆଡ଼ୁ ବିଗ୍ରହ କଲା ପରେ ସେପରି କରିବା କିନ୍ତୁ ଉଚିତ ମନେହେଲାନାହିଁ । ମ୍ୟାଗି ପ୍ରତି ବିପଦ ବିଗ୍ରହକୁ ନ ନେଲେ ମଧ୍ୟ ରେସିଂ*

* 'ମୋର ଭାରତ' ବହିଟି ଦ୍ରଷ୍ଟବ୍ୟ—ଅନୁବାଦକ

Digitized by srujanika@gmail.com

ଓ ତା'ପରେ ଆମ ଗାଁର ଗ୍ରେଣ୍ଟ ଗ୍ରେଣ୍ଟ ପିଲାମାନେ ଜଙ୍ଗଲରେ ଗୋରୁଗାଈ ଚରାଇବାକୁ ଯାଆନ୍ତି, ତାଲପତ୍ର ଗୋଟାଇବାକୁ ଗାଁର ସ୍ତ୍ରୀଲୋକ ଓ ପିଲାମାନେ ମଧ୍ୟ ପ୍ରତିଦିନ ବଣରେ ପଶନ୍ତି । ବାଘ ସେ ପର୍ଯ୍ୟନ୍ତ କାହାର କିଛି ଅନିଷ୍ଟ କରି ନ ଥିଲେହେଁ ମଣିଷ ଦେଖିଲେ ସେ ଯେମିତି ରାଗୁଛି, ହଠାତ୍ କେତେବେଳେ ତାତିଉଠି ବିଷମ ଅନର୍ଥ ଘଟାଇଦେବା ତା ପକ୍ଷରେ ଆଦୌ ଅସମ୍ଭବ ନୁହେଁ । ଏ ସବୁ ଦୃଷ୍ଟିରୁ ଶୀଘ୍ର ତାକୁ ଶେଷକରିବା ନିତାନ୍ତ ପ୍ରୟୋଜନ ବୋଲି ସ୍ଥିରକଲି ।

ବଣରୁ ବାହାରି ଆସିବା ପରେ ବାଘ ପୂର୍ବ ଦୁଇମିନିଟ୍ କାଳ ମୋ ସାମନାରେ ଛିଡ଼ା ହୋଇ ମୁହଁ ଫେରାଇ ବାହାଦୂର୍ ଆଡ଼କୁ ଅନାଇଲା । ତା'ପରେ ଅତି ମନ୍ଥରଗତିରେ ଖୋଲି ବାଁ ବନ୍ଧକୁ ଉଠି ସେ ପାହାଡ଼ ଚଢ଼ିବାକୁ ଲାଗିଲା । ଗେଙ୍ଗୁଟି ଗଛ ଫାଙ୍କରୁ ତା ମୁଣ୍ଡ ଦେଖାଦେବାବେଳକୁ ମୁଁ ରାଇଫଲ୍ ତା ଆଡ଼କୁ ମୁହାଁଇ ନିଶାଣ କରି ଧରିଥିଲି । ବାଘ ମୋ ସହିତ ସମାନ ଉଚ୍ଚତାକୁ ଆସିଯିବା ମାତ୍ରେ ରାଇଫଲ୍ ଗର୍ଜିଉଠିଲା । ବାଘ ତତ୍‌କ୍ଷଣାତ୍ ସେହିଠାରେ ଟଳିପଡ଼ି ପାହାଡ଼ ଗଡ଼ାଣିରେ ମୋ ଆଡ଼କୁ ଖସି ଖସି ଆସିଲା । ଗୁଳି ଫୁଟିବା ଓ ବାଘ ମରିଯିବା ଭିତରେ ସମୟର ବ୍ୟବଧାନ ଏତେ କମ୍ ଥିଲା ଯେ ବନ୍ଧୁକର ଆବାଜ ସେ ଶୁଣିଥିବ କି ନାହିଁ ସନ୍ଦେହ ।

## ଦ୍ୱିତୀୟ ଅଭିଯାନ

ଜିନ୍ଦର ମହାରାଜାଙ୍କ ଦେହାବସାନରେ ଦେଶ ଜଣେ ଅତି ଉଚ୍ଚକୋଟୀର ଶିକାର-ପ୍ରେମୀଙ୍କୁ ହରାଇଲା । ତାଙ୍କ ଦୀର୍ଘ ଜୀବନକାଳ ମଧ୍ୟରେ ମହାରାଜା ବହୁଭିନ୍ନସ୍ତରର ବହୁଲୋକଙ୍କ ସଂସ୍ପର୍ଶରେ ଆସିଥିଲେ ଏବଂ ପ୍ରତ୍ୟେକଙ୍କର ଶ୍ରଦ୍ଧା ଓ ସମ୍ମାନ ଲାଭକରିଥିଲେ । ତେରଶହ ବର୍ଗମାଇଲ ବିସ୍ତୃତ ତାଙ୍କ ରାଜ୍ୟରେ ବାସ କରୁଥିବା ତିନିଲକ୍ଷରୁ ଊର୍ଦ୍ଧ୍ୱ ଲୋକଙ୍କର ଶାସକ ଏବଂ ବିପୁଳ ରାଜସ୍ୱ ଓ ଐଶ୍ୱର୍ଯ୍ୟର ଅଧିକାରୀ ହୋଇ ମଧ୍ୟ ମହାରାଜାଙ୍କୁ ଗର୍ବ ବା ଅହଙ୍କାର କେବେ ସ୍ପର୍ଶ କରିନଥିଲା । ଶିକାରୀ କୁକୁରକୁ ତାଲିମ୍ ଦେବାରେ ଏବଂ ମହାବଳ ବାଘ ଶିକାରରେ ମହାରାଜାଙ୍କ ସମକକ୍ଷ ଲୋକ ଆମ ଦେଶରେ ବିରଳ । ମୋ ସହିତ ପ୍ରଥମ ପରିଚୟ ହେଲାବେଳେ ମହାରାଜାଙ୍କର ସମୁଦାୟ ଚାରିଶହ କୁକୁର ଥିଲେ । କୁକୁରଙ୍କୁ ତାଙ୍କର ତାଲିମ ଦେବାର ପ୍ରଣାଳୀ ଗଭୀର ମନୋଯୋଗ ସହ ବହୁବାର ଲକ୍ଷ୍ୟକରି ସେଥିରୁ ଧ୍ୟାନ, ଧୈର୍ଯ୍ୟ ଓ ଧୀରତା ସମ୍ବନ୍ଧରେ ମୁଁ ଯଥେଷ୍ଟ ଶିକ୍ଷା ପାଇଛି । ମୋ ଦେଖିବାରେ ମହାରାଜା ଥରେ ମାତ୍ର ଗୋଟିଏ କୁକୁରକୁ ବଡ଼ପାଟିରେ ତାଗିଦ୍ କରିଥିଲେ ଓ ଦଣ୍ଡ ଦେବାପାଇଁ ତା ପାଖରେ ଭୂଇଁକୁ କେତେ ଥର ଚାବୁକ୍‌ରେ ପିଟିଥିଲେ । ସେଦିନ ରାତିରେ

Digitized by srujanika@gmail.com

ଆମେ ଖାଇବାବେଳେ ମହାରାଣୀ ସେ ବିଷୟରେ ପ୍ରଶ୍ନ କରିବାରୁ ମହାରାଜା କହୁ ଉତ୍ତର ଦେଇଥିଲେ, "ସାଣ୍ଡି' ଅଜ୍ଞ ଅମାନିଆ ହେବାରୁ ତାକୁ କିଛି ମାଡ଼ଦେବାକୁ ପଡ଼ିଲା ।"

'ସାଣ୍ଡି' ସୁନେଲି ରଙ୍ଗର ଲାବ୍ରାଡ଼୍‌ର କୁକୁର । ଗ୍ରେଣ୍ଟ ଗ୍ରେଣ୍ଟ ଶିକାର ଗୋଟାଇ ଆଣିବା ପାଇଁ ତାକୁ ତାଲିମ୍ ଦିଆଯାଇଥିଲା । ସେଦିନ ମହାରାଜା ଓ ମୁଁ କୁକୁରଙ୍କୁ ସଙ୍ଗରେ ନେଇ ଚଢ଼େଇ ଶିକାରରେ ବାହାରିଥିଲୁ । ଘୋଡ଼ାଳମାନେ ଧାଡ଼ିଏ ହୋଇଁ ସହିତ ଲମ୍ବ ପଟାଳିଏ ଘାସ ଓ ଝାଟି ଜଙ୍ଗଲରେ ପଶି ଆମ ଆଡ଼କୁ ଅଗୋଇଥାଆନ୍ତି । ଜଙ୍ଗଲ ଆରପାଖେ ଗୋଟିଏ ଖୋଲା ପଡ଼ିଆରେ ମହାରାଜା ଓ ମୁଁ ପରସ୍ପରଠାରୁ କେଇ ଗଜ ବ୍ୟବଧାନରେ ବନ୍ଧୁକ ଧରି ଛିଡ଼ା ହୋଇଥାଉ । ପଡ଼ିଆ ସାରା ବୁଦା ବୁଦା ଘାସ । ସାଣ୍ଡି ସହିତ କଳାରଙ୍ଗର ଆଉ ଦୁଇଟି ଲାବ୍ରାଡ଼ର କୁକୁର ମହାରାଜାଙ୍କ ବାଁ ପାଖରେ ଧାଡ଼ିହୋଇ ବସିଥାଆନ୍ତି । ବଣରୁ କଳା ତିତିରଟିଏ ଫୁରୁଡ଼ି ଆସି ମହାରାଜାଙ୍କର ପ୍ରଥମ ଶିକାର ହେଲା । ଚଢ଼େଇଟି ପଡ଼ିଆରେ ପଡ଼ିଯିବା ମାତ୍ରେ ମହାରାଜାଙ୍କ ଇଙ୍ଗିତରେ କଳା କୁକୁରଟି ଗୋଟିଏ ଧାଇଁଯାଇ ତାକୁ ଗୋଟାଇ ଆଣିଲା । ତା'ପରେ ମୋ ମୁଣ୍ଡଉପର ଦେଇ ଅଳ୍ପ ଉଚ୍ଚରେ ଉଡ଼ିଯାଉଥିବା ବଣ କୁକୁଡ଼ାଟିଏ ମୋର ଛର୍‌ରା ମାଡ଼ରେ ପଡ଼ିଆ ପଛ ବଡ଼ ବଡ଼ ଘାସ ଭିତରେ ଯାଇ ପଡ଼ିଲା । ମହାରାଜା ଇଙ୍ଗିତ ଦେଲେ; ସୁଣ୍ଟଙ୍ଗଲ ସେଦିନକ ପରି ଆର କଳା କୁକୁରଟି ଉଠିଯାଇ କୁକୁଡ଼ାକୁ ନେଇଆସିଲା । ସେ ଭିତରେ ମଞ୍ଜୁର ଦଳେ ବଣରୁ ବାହାରି ଆସୁଥିଲେ । ସାମନାରୁ ବନ୍ଧୁକ ଆବାଜ ଶୁଣି ପଲକଯାକ ବାଁକୁ ବୁଲି ଦୂରକୁ ପଳାଇଗଲେ । ଠେକୁଆଟିଏ ଠିକ୍ ସେତିକବେଳେ ଧାଇଁ ଆସୁ ଆସୁ ଅଗରେ ମହାରାଜାଙ୍କୁ ଦେଖି ବାଟ ଭାଙ୍ଗି ମୋ ସାମନାଦେଇ ଛୁଟିଗଲା । ମହାରାଜା ସେତିକିବେଳୁ ମୁହଁ ଫେରାଇ ତାଙ୍କ ପାଖ ଲୋକଟିକୁ କଣ କହୁଥିଲେ । କୁକୁରଙ୍କ ନାଗପଣ୍ଡ ପାଇଁ ଠେକୁଆକୁ ଟଣ୍ଡେଦୂରକୁ ଯିବାକୁ ଦେଇ ମୁଁ ଗୁଳି ଚଳାଇଲି । ଠେକୁଆଟି ସେଇଠାରୁ ବାହୁଡ଼ି ଆସି ମହାରାଜାଙ୍କଠାରୁ ମାତ୍ର ଚରିଗଜ ଛଡ଼ାରେ ପଡ଼ି ମରିଗଲା ।

ଠେକୁଆକୁ ସାମନାରେ ଦେଖି 'ସାଣ୍ଡି' ଲୋଭ ସମ୍ଭାଳିପାରିଲାନାହିଁ । ଧାଡ଼ିରୁ ହଠାତ୍ ବାହାରିଯାଇ ସେ ତୀରବେଗରେ ଛୁଟିଗଲା ଆଗକୁ । ମହାରାଜା ତା ନାଁ ଧରି ଥରଟିଏ ଡାକିଲେ, ସାଣ୍ଡି ନ ଶୁଣିବାରୁ ସେ ତାକୁ ବଡ଼ପାଟିରେ ଆଉ ଥରେ ଡାକିଦେଲେ । ମହାରାଜା କୁକୁରଙ୍କୁ ବଡ଼ପାଟିରେ ଡାକିଦେବା ଜୀବନରେ ସେଇ ଥରକ ହିଁ ଶୁଣିଲି । ସାଣ୍ଡି କିନ୍ତୁ ଡାକହାକ ଆଉ ନ ଶୁଣେ । ତା ସାଥୀ ଦୁଇଟି ପ୍ରତ୍ୟେକେ ଥରେ କରି ଶିକାର ଗୋଟାଇ ଆଣିଲେଣି । ଏଥର ତାର ପାଳି । ଠେକୁଆଟିକୁ ଆଣିବା ପାଇଁ ସେ ହକ୍‌ଦାର । ହକ୍ ଦାବୀ ହାସଲ କରିବାରେ ସେ କାହାରି ବାଧାବରୋଧ ମାନିବା ଜନ୍ତୁ ନୁହେଁ । ଠେକୁଆଟିକୁ ଆଣି ମୋ ଗୋଡ଼ପାଖରେ ଥୋଇଦେଇ ସେ ଧାଇଁଯାଇ ଧାଡ଼ିରେ ନିଜଜାଗାରେ ବସିପଡ଼ିଲା । ମହାରାଜା ତାକୁ ଡାକ ଠେକୁଆଟିକୁ ତାଙ୍କର ପାଖକୁ ଆଣିବାକୁ ନିର୍ଦ୍ଦେଶ

Digitized by srujanika@gmail.com

ଦେଲେ ଓ ସାଣ୍ଡି ତାହା କରିବା ମାତ୍ରେ ବାରମ୍ବାର ହାତଠାରି ଠେକୁଆକୁ ସ୍ୱ ସ୍ଥାନକୁ ଫେରାଇନେବାପାଇଁ ତାକୁ ବାଧ୍ୟକଲେ । 'ସାଣ୍ଡି' ସେତେବେଳକୁ ନିଜ ଦୋଷ ବୁଝିଲାଣି । ଠେକୁଆକୁ ଥୋଇଦେଇ ଫେରିବାବେଳକୁ ଅନୁତାପରେ ତା ଲାଙ୍ଗୁଡ଼ ଓ କାନଦୁଇଟି ଝୁଲି-ପଡ଼ୁଥାଏ । ଧାଡ଼ିରେ ସେ ବସିଲାପରେ ତାହାରି ସାମନାରେ ଠେକୁଆଟିକୁ ପୁଣି ଅଣିବା ପାଇଁ ଆଉ ଗୋଟିଏ କୁକୁରକୁ ପଠାଗଲା । ତା'ପରେ ମହାରାଜା ତାଙ୍କ ପାଖ ଲୋକକୁ ବନ୍ଧୁକ ଧରାଇଦେଇ ଚାବୁକଟିଏ ହାତକୁ ନେଲେ ଓ ସାଣ୍ଡିକୁ ସେଥିରେ ଯେପରି 'ନିସ୍ତୁକ ମାଡ଼' ଦେଲେ, ତାହା ଦେଖିବାକୁ ଅତି ବିଚିତ୍ର । ସାଣ୍ଡିକୁ ବେକରୁ ଝୁଲାଇ ଧରି ସେ ଚାବୁକ ଚଲାଉଥାନ୍ତି; ଚାବୁକ ପାହାର କିନ୍ତୁ ସାଣ୍ଡି ଦେହରେ ନ ବାଜି ଦୁଇପାଖରେ ଭୂଇଁରେ ବସୁଥାଏ ।

ମହାରାଜା ସମ୍ପୂର୍ଣ୍ଣ ବଧିର ଥିବାରୁ ସବୁ ବିଷୟ ତାଙ୍କୁ ଲେଖିକରି ଜଣାଇବାକୁ ପଡ଼େ । ସାଣ୍ଡିକୁ ନିସ୍ତୁକ ମାଡ଼ଦେବା କଥା ସେଦିନ ରାତିରେ ସେ ମହାରାଣୀଙ୍କୁ କହିଲା-ବେଳେ ଆମେ ଖାଇବସିଥିଲୁ । ପରିଚାରକଠାରୁ କାଗଜ ଖଣ୍ଡିଏ ନେଇ ମହାରାଜାଙ୍କୁ ଲେଖି ଜଣାଇଲି, "ସାଣ୍ଡି ବାହାଦୂର ଆଜି ଆପଣଙ୍କ କଥା ମାନିଲା ନାହିଁ ସତ; କିନ୍ତୁ ତା ଭଳି ଶିକାରୀ କୁକୁର ଦେଶସାରା କେଉଁଠି ନଥିବ । ଆସନ୍ତା ଥର ଶିକାରୀ କୁକୁରଙ୍କ ମୁକ୍ତ ପ୍ରତିଯୋଗିତାରେ ସମଗ୍ର ଭାରତବର୍ଷରେ ସେ ନିଶ୍ଚୟ ଉତ୍କୃଷ୍ଟତମ ବିବେଚିତ ହେବ ।" କେଇ ମାସ ପରେ ମହାରାଜାଙ୍କଠାରୁ ତାରବାର୍ତ୍ତାଟିଏ ପାଇଲି । ସେ ଲେଖିଥିଲେ, "ଆପଣଙ୍କ କଥା ଠିକ୍ ହେଲା । ଏ ବର୍ଷର ସର୍ବଭାରତୀୟ ପ୍ରତିଯୋଗିତାରେ ସାଣ୍ଡି ପ୍ରଥମ ସ୍ଥାନ ଅଧିକାର କରିଛି ।"

ମହାରାଜା ଥରେ ଶିକାରକୁ ଆସି ମୋହାନ୍‌ରେ ଡେରା ପକାଇଥିଲେ । ତାଙ୍କଠାରୁ ଡାକରା ପାଇ ପରଦିନ ବଡ଼ିସକାଳୁ ମୁଁ ମୋହାନ୍ ବାହାରିଲି । ଅପ୍ରେଲ ମାସ; ଦିନ ଲମ୍ବିବା ସଙ୍ଗେ ଖରାତେଜ ମଧ୍ୟ ବଢ଼ୁଥାଏ । ଦୀର୍ଘ ଦଶମାଇଲ ବାଟ ଚାଲି ଡେରାରେ ମୁଁ ପହଞ୍ଚିବା-ବେଳକୁ ରାଜପରିବାରର ସମସ୍ତେ ବସି ଜଳଖିଆ କରୁଥିଲେ । ଟେବୁଲରେ ମୋ ପାଇଁ ଠାଆ କରାଗଲା । ଖାଇବାବେଳେ ମହାରାଜା କହିଲେ, "ଆପଣ ଠିକ୍ ସମୟରେ ଆସିଗଲେ । ବୁଢ଼ା ବାଘଟାଏ ଗତ ତିନିବର୍ଷଧରି ଆମ ଆଖିରେ ଧୂଳିଦେଇ ଖସି ପଳାଉଥିଲା । ଏବେ ତାର ଟେର୍ ମିଳିଛି; ଜଙ୍ଗଲରୁ ତାକୁ ବାହାର କରିବାକୁ ଆଜି ଘଉଡ଼ାର ଆୟୋଜନ କରିଛି ।" ଅତି ଚତୁର ସେହି ବାଘ ବିଷୟରେ ପୂର୍ବରୁ ମୁଁ ଅନେକ ଆଲୋଚନା ଶୁଣିଥିଲି ଏବଂ କଳକୌଶଳରେ ତାକୁ ପରାଜିତ କରିବାକୁ ମହାରାଜା ଯେ ଅତିଶୟ ଉଦ୍‌ଗ୍ରୀବ— ତାହା ମଧ୍ୟ ଭଲଭାବେ ଜାଣିଥିଲି । ଶିକାରକ୍ଷେତ୍ରରେ ସମୁଦାୟ ତିନୋଟି ମଞ୍ଚା ବନ୍ଧା

Digitized by srujanika@gmail.com

ହୋଇଥିବା କଥା ମହାରାଜା ଉଲ୍ଲେଖ କଲେ ଓ ନିଜର ସ୍ୱାଭାବିକ ମହାନୁଭବତା ପ୍ରକାଶ କରି ତାଙ୍କ ରାଇଫଲ୍‌ରୁ ଗୋଟିଏ ନେଇ ସବୁଠାରୁ ଭଲ ମଞ୍ଚାଟିରେ ବସିବାକୁ ମୋତେ ପ୍ରବର୍ତ୍ତାଇଲେ । ବାଘଟିକୁ ନିଜେ ଶିକାର କରିବାକୁ ମହାରାଜାଙ୍କର ବିଶେଷ ଆଗ୍ରହ ଓ ଅଭିଳାଷ ଥିବା ପୂର୍ବରୁ ମୁଁ ଧନ୍ୟବାଦ ଜଣାଇ ତାଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲି ଏବଂ କହିଲି ଯେ ମୁଁ କେବଳ ଶିକାର ଦେଖିବାକୁ ଆସିଛି ଓ ଖାଲି ହାତ୍ ରହି ସେଇଥିପାଇଁ ନିଜ ରାଇଫଲ୍ ମଧ୍ୟ ସଙ୍ଗରେ ଆଣିନାହିଁ ।

ଦିନ ଦଶଟାବେଳେ ମହାରାଜା, ମହାରାଣୀ, ରାଜକୁମାରୀ ଦୁଇଜଣ ଓ ମୁଁ ମୋଟର ଯୋଗେ ଶିକାରକୁ ବାହାରିଲୁ । କେମା ଦୁହିଁଙ୍କର ଜଣେ ମହିଳାବନ୍ଧୁ ମଧ୍ୟ ଆମ ସଙ୍ଗରେ ଗଲେ । ସକାଳେ ଯେଉଁ ସଡ଼କରେ ଦୀର୍ଘ ଦଶ ମାଇଲ ବାଟ ମୋତେ ବୁଲିବାକୁ ପଡ଼ିଥିଲା, ମୋଟର ଯୋଗେ ଅତି କମ୍ ସମୟରେ ତାହାକୁ ଅତିକ୍ରମ କରି ଗୋଟିଏ ଅଳ୍ପ ଓସାର ଉପତ୍ୟକାର ତଳମୁଣ୍ଡରେ ପହଞ୍ଚିଲୁ । ତିନିଶହ ଫୁଟ ଉଚ୍ଚ ଦୁଇଟି ପାହାଡ଼ ମଝିରେ ଥିବା ସେହି ଉପତ୍ୟକାର ମଝିଅଂଶଟି ଅପେକ୍ଷାକୃତ ପ୍ରଶସ୍ତ ଓ ସେଠାରେ ପ୍ରାୟ ଦଶ ମାଣ ଅଧିକାରର ଗହଳ ଜଙ୍ଗଲ । ସେଠାରୁ ଉପରକୁ ଓ ତଳକୁ ଉପତ୍ୟକାଟି କ୍ରମେ ସଙ୍କୁଚିତ ହୋଇ ଅଧମାଇଲ ଭିତରେ ତାର ଦୈର୍ଘ୍ୟ ସାମାନ୍ୟ ପଚିଶ ଗଜକୁ କମିଆସିଥାଏ । ନିର୍ମଳ ଜଳଭରା ସରୁ ଝରଣାଟିଏ ଉପତ୍ୟକା ମଝିଦେଇ ବହିଆସିଥାଏ ତଳକୁ ।

ବାଘ ପୂର୍ବରାତିରେ ମଇଁଷିଟିଏ ମାରି ଶିକାର ସହିତ ଉପତ୍ୟକା ମଝିର ଜଙ୍ଗଲରେ ପଶିଥିଲା । ଉପର ପାଖରୁ ଉପତ୍ୟକାକୁ ପଶିଆସିଥିବା ଏକ ପର୍ବତ ଶାଖାର ଯେଉଁ ଗଛଟିରେ ମଞ୍ଚା ବନ୍ଧା ହୋଇଥିଲା, ତା'ଉପରୁ ଦୁଇ ପାହାଡ଼ର ଗଡ଼ାଣି ଉପରେ ନଜର ରଖିବା ସହଜ । ପର୍ବତ ଶାଖାକୁ ଅତିକ୍ରମ କଲା ପରେ ଝରଣାଟି ଉପତ୍ୟକାର ବାଁ'କୁ ମୋଡ଼ ବୁଲିଥିଲା । ଆଗକୁ ଝରଣା ଆରକୂଳରେ ପରସ୍ପରଠାରୁ ପ୍ରାୟ ତିରିଶ ଗଜ ଛଡ଼ାରେ ଆଉ ଦୁଇଟି ମଞ୍ଚା ମଧ୍ୟ ବନ୍ଧାହୋଇଥିଲା ।

ମହାରାଜାଙ୍କ ପ୍ରଧାନ ବାଣୁଆ ଓ ପାରିଧି ଦାୟିତ୍ୱରେ ଥିବା ବେବର୍ତ୍ତା ଜଣେ ସଡ଼କରେ ଅପେକ୍ଷା କରିଥିଲେ । ମୋଟରରୁ ଓହ୍ଲାଇଲା ପରେ ଦୁହେଁ ବାଟ କଢ଼ାଇ ଆମକୁ ଉପତ୍ୟକା ଉପର ଆଡ଼କୁ ନେଇଗଲେ । ଜଙ୍ଗଲ ଧାରେ ଧାରେ ବୁଲି ପର୍ବତଶାଖାର ମଞ୍ଚା ପାଖରେ ପହଞ୍ଚିଲୁ । ମହାରାଜା ଓ ତାଙ୍କ ବନ୍ଧୁକବୁହାଳି ସେଥିରେ ବସିବା ପରେ ମହିଳା ଚାରିଜଣ ଓ ମୁଁ ଝରଣା ପାରହୋଇ ଆରକୂଳରେ ଥିବା ମଞ୍ଚା ଦୁଇଟିରେ ବାଣ୍ଟି ହୋଇ ବସିଲୁ । ମଞ୍ଚାରେ ସମସ୍ତଙ୍କୁ ସୁବିଧାରେ ବସାଇସାରି ବେବର୍ତ୍ତା ଘଉଡ଼ା ଆରମ୍ଭ କରିବାକୁ ନିର୍ଦ୍ଦେଶ ଦେବାପାଇଁ ବାଣୁଆ ସହିତ ସଡ଼କ ପାଖକୁ ବାହୁଡ଼ିଲେ ।

ରାଜକୁମାରୀ ଦୁହିଁଙ୍କ ସହିତ ଯେଉଁ ମଞ୍ଚାରେ ମୁଁ ବସିଲି, ତାହା ଅତି ଶକ୍ତଭାବେ ବନ୍ଧା ହୋଇଥିଲା ଓ ବସିବା ପାଇଁ ସେଥିରେ ମୋଟ ଗାଲିଚା ବିଛାହୋଇ ଆଉଜିବାପାଇଁ ରେଶମର

Digitized by srujanika@gmail.com

ଉଳଆମାନ ପଡ଼ୁଥିଲା । କଠିନ ଗଛଡାଲରେ ଘଢ ଘଢ ଉକାଗର ହୋଇ ବସିବାରେ ମୋ ଜୀବନର ଅଧିକାଂଶ କଟିଯାଇଛି । ରାଜାରାଜୁଡ଼ାଙ୍କ ସହିତ ଏଡ଼େ ଅସୁବରେ ମଞ୍ଚାରେ ବସିବା ମୋ ଭାଗ୍ୟରେ କେବେ ଜୁଟି ନଥିଲା । ରାତରୁ ଉଠି ଦୂର ବାଟ ଚାଲି ଚାଲି ଆସିବା ପରେ ରାଜପରିବାରଙ୍କ ସହିତ ପେଟପୂରା ଜଳଖିଆ ଖାଇଥିଲି । ତେଣୁ ନରମ ଗଦି ଗାଲିଚାରେ ବସି ମୋତେ କେତେବେଳେ ନିଦ ଲାଗିଗଲା ଖିଆଲ କରିପାରିଲି ନାହିଁ । ଘଉଡ଼ା ଆରମ୍ଭ କରିବା ପାଇଁ ସଙ୍କେତ ଦେଇ ତୂରୀଭେରୀ ବାଜିଉଠିବାରେ ମୋ ନିଦ ଭାଙ୍ଗିଲା । ଘଉଡ଼ାର ଯାହା ଆୟୋଜନ ଦେଖିଲି, ତାହା ଏକ ଜାକଜମକଭରା ଅତି ଅଡ଼ମ୍ବରପୂର୍ଣ୍ଣ ବ୍ୟାପାର । ବେବର୍ତ୍ତା-ମାନଙ୍କ ଉପସ୍ଥିତି ଏବଂ ମହାରାଜାଙ୍କ ପ୍ରଧାନ ବାଉଁଶ ଓ ତାଙ୍କ ସହକାରୀଙ୍କ ତତ୍ତ୍ୱାବଧାନରେ ଉଆସର ବହୁ ପରିଚାରକ ଘଉଡ଼ାରେ ଭାଗ ନେଇଥାଆନ୍ତି । ଏସବୁ ବେତନଭୋଗୀ କର୍ମଚାରୀଙ୍କ ଛଡ଼ା ଆଖପାଖ ଗାଁଗଣ୍ଡାରୁ ସମୁଦାୟ ଦୁଇଶହ ଲୋକ ମଧ୍ୟ ଡାକରା ପାଇ ଆସିଥାଆନ୍ତି । ମହାରାଜାଙ୍କର ଦଶଟି ହାତୀ ମଧ୍ୟ ଆସିଥାନ୍ତି । ବେବର୍ତ୍ତା ଓ ଅନ୍ୟାନ୍ୟ କର୍ମଚାରୀବର୍ଗ ହାତୀରେ ବସି ଉପତ୍ୟକା ମଝିରେ ଗହଳ ଜଙ୍ଗଲରେ ଘଉଡ଼ା ଚଳାଇଥାଆନ୍ତି । ଘଉଡ଼ାଳଙ୍କ ଘେର ଭାଙ୍ଗି ବାଘ କାଳେ ପଳାଇଯିବ—ସେଥିପାଇଁ ଆଉ ଧାଡ଼ିଏ ଲୋକ ବାଟ କଢ଼ାଇଲା ପରି ଘଉଡ଼ାଳଙ୍କ ଆଗେ ଆଗେ ଚାଲିଥାଆନ୍ତି ।

ଘଉଡ଼ାର ପ୍ରତ୍ୟେକ ଅଂଶ ଓ ପର୍ଯ୍ୟାୟ ମୁଁ ଗଭୀର କୌତୂହଳ ଓ ଆଗ୍ରହ ସହିତ ଲକ୍ଷ୍ୟ କରୁଥିଲି । ନିଜେ ଏଭଳି ବହୁ ଅଭିଯାନର ଆୟୋଜନ କରିଥିବାରୁ ଅସମ୍ପୃକ୍ତ ଦର୍ଶକଭାବେ ତାହା ଦୂରରୁ ନିରୀକ୍ଷଣ କରିବା ଥିଲା ମୋ ପକ୍ଷରେ ଏକ ସମ୍ପୂର୍ଣ୍ଣ ନୂତନ ଅନୁଭୂତି । ଆୟୋଜନରେ କୌଣସି ସାଂଗଠନିକ ଦୋଷତ୍ରୁଟି ନ ଥିଲା । ଆମେ ସମ୍ପୂର୍ଣ୍ଣ ନିରାପତ୍ତା ରକ୍ଷାକରି ମଞ୍ଚାପାଖକୁ ଯାଇଥିଲୁ । ଘଉଡ଼ା ଠିକ୍ ସମୟରେ ଆରମ୍ଭ ହୋଇଥିଲା; ପଲ ପଲ ପାହାଡ଼ିଆ କୁକୁଡ଼ା, ମୟୁର ଓ ବଣକୁକୁଡ଼ା ଜଙ୍ଗଲରୁ ହୁରୁଡ଼ି ବାହାରି ଆସୁଥିବା ଘଉଡ଼ାଳ-ମାନଙ୍କ ଯତ୍ନ ଓ କଷ୍ଟର ମଧ୍ୟ ପ୍ରମାଣ ଦେଉଥିଲା । ଘଉଡ଼ା ଦେଖିବା ଯେ କେତେ ଉତ୍ତେଜକ, ଦେଖିଥିବା ଲୋକେ ଅବଶ୍ୟ ତାହା ଅନୁଭବ କରିଥିବେ । ଘଉଡ଼ାଳଙ୍କ ପାଟିତୁଣ୍ଡ ଶୁଣିବା ପରଠାରୁ ବାଘ ସ୍ଥାନ ତ୍ୟାଗକରିବାକୁ ତତ୍ପର ହୋଇ ଉଠିଥିବ ଏବଂ ବଣବୁଦା ବୁହାଡ଼ରୁ ସେ ହଠାତ୍ କେଉଁଠାରୁ ବାହାରିପଡ଼ିବ—ଏହି ଅନିଶ୍ଚିତ ପ୍ରତ୍ୟାଶା ମଧ୍ୟ ଦର୍ଶକଙ୍କୁ ଉତ୍କଣ୍ଠିତ ଓ ଅତୀବ ଚଞ୍ଚଳ କରିପକାଏ ।

ମହାରାଜା ନିଜେ ସମ୍ପୂର୍ଣ୍ଣ ବଧିର ହୋଇଥିଲେ ମଧ୍ୟ ତାଙ୍କ ବନ୍ଧୁକଚାଳନା ଶିକାର ବିଷୟରେ ଅତି ଧୁରନ୍ଧର । ମୁଁ ଅନାଇଥିବା ଦିଗରେ ଲୋକଟି ଉପତ୍ୟକାର ଡାହାଣ ପାଖକୁ ଅଙ୍ଗୁଳି ଦେଖାଇଲା । ମହାରାଜା ସେଆଡ଼େ ଅନାଇ ଦେଖିନା ପରେ ମୁଣ୍ଡ ହଲାଇଲେ; ଟିକିଏ ପରେ ପୁରୁଷ ସମ୍ବରଟିଏ ସେଠାରେ ଝରଣା ପାରହୋଇ ଆଗେଇ ଆସିଲା ଓ ମହାରାଜାଙ୍କ ମଞ୍ଚାରୁ ମଣିଷର ଗନ୍ଧ ପାଇ ବାଟଭାଙ୍ଗି ଦୂରକୁ ଛୁଟି ପଳାଇଗଲା ।

Digitized by srujanika@gmail.com

ଉପତ୍ୟକା ବା ପାଙ୍ଗ ପାହାଡ଼ରେ ଘଉଡ଼ାଳମାନେ କ୍ରମେ ନଜରକୁ ଆସିଗଲେ । ଧାଡ଼ିକଯାକ ଲୋକ ପାଚିଲ୍ଲି କରି ତାଳମାରି ଆଗେଇଥାନ୍ତି । ବାଘ ଏତିକବେଳକୁ ବାହାରି ଆସିବା କଥା । ମହାରାଜା ରାଇଫଲ୍ ସଜ କରି ଗୁଳି ଚଳେଇବାକୁ ତିଆରି ହୋଇ ରହିଲେଣି । ଆମ ମଞ୍ଚାରେ ରାଜକେମା ଦୁହେଁ ପ୍ରବଳ ଉଦ୍‌ବେଗରେ ଅସ୍ଥିର, କିନ୍ତୁ ଯେ ପର୍ଯ୍ୟନ୍ତ କୌଣସି ପଶୁ ବା ପକ୍ଷୀର ଅତଙ୍କଧ୍ୱନି ବାଘର ଉପସ୍ଥିତି ସୂଚାଇ ନ ଥିବାରୁ ମୋ ମନକୁ କାହିଁକି ପାପ ଛୁଉଁଥାଏ । ଘଉଡ଼ାଳମାନେ ଯେତିକି ପାଖେଇଲେ, ବାଘର ଭେଟ ମିଳିବାର ସମ୍ଭାବନା ସେତିକ କମି କମି ଆସିଲା । ଶେଷ ସୁଦ୍ଧା ବାଘର ଦର୍ଶନ ନ ମିଳିବାରୁ ସମସ୍ତଙ୍କର ହେଜ ହେଲା ଘଉଡ଼ା ଚାଲିଥିବାବେଳେ ବାଘ ଉପତ୍ୟକା ଭିତରେ ନଥିଲା । ତେଣୁ ଯେତେ ଯତ୍ନସହକାରେ ଘଉଡ଼ା ଚଳେଇଲେ ମଧ୍ୟ ତାର ଦେଖାମିଳିବ କିପରି ?

କଶୁଣିଟିଏ ଅଣାଯାଇ ମଞ୍ଚାକୁ ଡେରାଗଲା । ମହାରାଜା ଓ ତାଙ୍କ ପରିବାରର ସମସ୍ତେ ଅତି ବିଷଣ୍ଣ ହୋଇ ମଞ୍ଚାରୁ ଓହ୍ଲାଇଲେ । ସମବେତ ରାଜକର୍ମଚାରୀମାନଙ୍କୁ କ୍ଲାନ୍ତ ଅପେକ୍ଷା ନୈରାଶ୍ୟ ବେଶି ଅଧିକ ଅବସନ୍ନ କରିଦେଇଥିଲା । ଘଉଡ଼ା ଚାଲିସିବା ଭିତରେ ସେମାନେ ବାଘର ଚନ୍ଦ୍ରବନ୍ଧି ଦେଖିନଥାନ୍ତି । ଆୟୋଜନରେ କୌଣସି ଦୋଷ ନଥାଇ ସୁଦ୍ଧା ଘଉଡ଼ା କାହିଁକି ବିଫଳ ହେଲା; ତାର କାରଣ କେହି ଅନୁମାନ କରିପାରୁନଥାଆନ୍ତି । ଆମ ମୋଟର ପହଞ୍ଚିବାର ଅଳ୍ପ ସମୟ ପୂର୍ବରୁ ବାଘ ଉପତ୍ୟକା ମଝି ଜଙ୍ଗଲରେ ହିଁ ଗର୍ଜୁଥିଲା । ତା'ପରେ କିନ୍ତୁ ସେ କେତେବେଳେ, କାହିଁକି ଓ କିପରି ଖସି ପଳାଇଗଲା, ତାହା କେହି ଧାରଣା କରିପାରିଲେ ନାହିଁ । ବାଘ ପଳାଇଯିବା ସମ୍ବନ୍ଧରେ ମୋର ଅନୁମାନ ସେଠାରେ ପ୍ରକାଶ କଲିନାହିଁ । ସାଂପ୍ରତିକ ପରିସ୍ଥିତିରେ ମୋ ଭଳି ଜଣେ ଦର୍ଶକଠାରୁ ସେଭଳି ମନ୍ତବ୍ୟ ଆୟୋଜକମାନଙ୍କୁ ସମାଲୋଚନା କଲାପରି ହୋଇଥାନ୍ତା । ତେଣୁ ମନକଥା ମନରେ ରଖି ମଧ୍ୟାହ୍ନ ଭୋଜନରେ ଯୋଗଦେଲି । ଜଙ୍ଗଲରେ ମଧ୍ୟାହ୍ନ-ଭୋଜନ ବନଭୋଜି ଢାଞ୍ଚାରେ ଆୟୋଜିତ ହୋଇଥିଲା । ଭୋଜନ ପରେ ସମସ୍ତେ ଫେରିଆସିଲୁ ; ଅନ୍ୟମାନେ ଡେରାରେ ବିଶ୍ରାମ କଲାବେଳେ ମୁଁ ନଦୀରୁ ମାଛ ମାରିବାରେ ମନଦେଲି । ଅପ୍ରେଲ ମାସର ଶେଷଭାଗ ସେସବୁ ଅଞ୍ଚଳରେ ମାଛ ମାରିବା ପାଇଁ ଅତି ଉତ୍କୃଷ୍ଟ ସମୟ । କିନ୍ତୁ କୋଶୀ ନଦୀର ଜଳଧାରାରେ ମାଛ ହାଉଜାଉ ହେଉଥାଆନ୍ତି । ଖରାବେଳ ସାରା ମନ ଦୁରାଇ ମାଛ ମାରି ସନ୍ଧ୍ୟାକୁ ଡେରାକୁ ବାହୁଡ଼ିଲି ।

ରାତ୍ରି-ଭୋଜନର ସମାବେଶରେ ପଦସ୍ଥ କର୍ମଚାରୀମାନେ ସମସ୍ତେ ଉପସ୍ଥିତ ଥିଲେ । ସେଦିନର ଓ ସେଥିପୂର୍ବରୁ ସମୁଦାୟ ପାଞ୍ଚ ଥର ଘଉଡ଼ା ବିଫଳ ହୋଇଥିବାର କାରଣ ସମ୍ବନ୍ଧରେ ସେମାନେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିବାକୁ ଲାଗିଲେ । ପ୍ରଥମ ଥର ଏହି ଉପତ୍ୟକାରେ ହିଁ ଘଉଡ଼ାର ଆୟୋଜନ ହୋଇଥିଲା । ସେଥର ବାଘ କୁଆଡ଼େ ମଞ୍ଚା ଡାହାଣପଟେ ଆସି ହାଜର ହୋଇଗଲା; ମହାରାଜା ସେ ପଟକୁ ବୁଲି ଅଧାଜରେ ଗୁଳି

Digitized by srujanika@gmail.com

ଚଳାଇ ଲକ୍ଷ୍ୟଭ୍ରଷ୍ଟ ହେଲେ । ପରବର୍ତ୍ତୀ ତନିବର୍ଷ ଭିତରେ ବାଘ ଉପତ୍ୟକା ଭିତରେ ହିଁ ଅଛି ବୋଲି ନିର୍ଭରଯୋଗ୍ୟଭାବେ ଜାଣିପାରି କେତେ ଥର ଘଉଡ଼ା ଚଳାଯାଇଥିଲେ ସୁଦ୍ଧା ବାଘର ଭେଟ ମିଳିନଥିଲି; ଉପସ୍ଥିତ ଭଦ୍ରବ୍ୟକ୍ତିମାନେ ନିଜ ନିଜ ଭିତରେ କଥାବାର୍ତ୍ତା ହୋଇ ମନ୍ତବ୍ୟମାନ ଲଜ୍ଜିତାକାରରେ ମହାରାଜାଙ୍କୁ ଜଣାଉଥାନ୍ତି । ଶିକାର ପ୍ରତି ମହାରାଜାଙ୍କ ଅନୁରାଗ ମୋତେ ଅଜଣା ନଥିଲା । ସେ ହିସାବରେ ତାଙ୍କୁ ସାଧ୍ୟମତେ ସାହାଯ୍ୟ କରିବା ଥିଲା ମୋର କର୍ତ୍ତବ୍ୟ । ତେଣୁ ପୂର୍ବବର୍ଣ୍ଣିତ ତଥ୍ୟଗୁଡ଼ିକ ସହିତ ସେଦିନର ଘଟଣାବଳୀକୁ ମିଶାଇ ସେଥିରୁ ସମାଧାନର ସୂତ୍ର ଖୋଜିଲି ।

ଉପତ୍ୟକା ମଝିର ଜଙ୍ଗଲ ପାଖଦେଇ ମଞ୍ଚା ନିକଟକୁ ଯିବା ଉଚିତ ହେଉନାହିଁ ବୋଲି ଏକ ଧାରଣା ମୋ ମନକୁ ସେତେବେଳେ ମଧ୍ୟ ସ୍ପର୍ଶ କରିଥିଲା । ତେବେ ସବୁଆଡ଼ୁ ବିଚାରିବା ପରେ ସ୍ଥିରକଲି ଯେ ବାଘ ଆମକୁ ଦେଖି ଡରେନାହିଁ—ଅସଲରେ ଆମେ ଜଳପାଖରୁ ଉପତ୍ୟକାରେ ପ୍ରବେଶ କଲାବେଳକୁ ବାଘ ହିଁ ଉପରପଟୁ ସେଠାରୁ ବାହାରିଯାଇଛି । ଠିକ୍ ସେତିକିବେଳକୁ ପାହାଡ଼ କଡ଼ରେ କୁକୁଡ଼ାଟିଏ ଆତଙ୍କଧ୍ୱନି କରିଉଠିବା ମୁଁ ଲକ୍ଷ୍ୟ କରିଥିଲି; ସମ୍ଭବତଃ ବାଘ ବାହାରି ଯାଉ ଯାଉ କୁକୁଡ଼ାଟି ତାକୁ ଦେଖିଦେଇଥିଲା । ବାଘ ଘଉଡ଼ା ପୂର୍ବରୁ ହିଁ ଖସି ପଳାଇଛି ବୋଲି ନିଶ୍ଚିତ ଧାରଣା ହେବା ପରେ ସମସ୍ତଙ୍କ ଅଲକ୍ଷ୍ୟରେ ଚାରିଆଡ଼କୁ ଆଖି ବୁଲାଇ ଉପତ୍ୟକାରୁ ବାହାରିଯିବା ଭଳି ଗୁପ୍ତ ପଥଟିଏ ଖୋଜିଲି । ପାହାଡ଼ କଡ଼ରୁ ଜାଗାଏ ଅତଡ଼ା ଖସି ମାଟିଗଦାଏ ଜମାହୋଇଥିଲା । କୁକୁଡ଼ା ସେଇ ଅତଡ଼ା ଉପରୁ କେଉଁଠୁ ବୋବାଇଥିବା ପରି ମନେହେଲା । ମାଟିଗଦା ଉପରଦେଇ ଉପତ୍ୟକାରୁ ବାହାରି ଯିବାପାଇଁ ସହଜ ବାଟ ଥାଏ, ଘଉଡ଼ାଇ ସୁରାକ୍ ପାଇବାମାତ୍ରେ ବାଘ ପ୍ରତିଥର ସେଇ ବାଟେ ହିଁ ଖସି ପଳାଇଯାଉଥିବା ଖୁବ୍ ସମ୍ଭବ ।

ଅନ୍ୟମାନେ କଥାବାର୍ତ୍ତାରେ ବ୍ୟସ୍ତ ଥିବା ଭିତରେ ମୋ ମନରେ ନିର୍ଦ୍ଦିଷ୍ଟ ଗୋଟିଏ ଯୋଜନା ଆକାର ନେଲା । ମହାରାଜାଙ୍କୁ ଅତଡ଼ା ଉପରମୁଣ୍ଡରେ ଜଗାଇଦେଇ ଉପତ୍ୟକାରେ ଘଉଡ଼ା ଚଳାଇଲେ ବାଘ ପୂର୍ବପରି ମାଟିଗଦା ଉପରଦେଇ ପଳାଇବାକୁ ପ୍ରୟାସ କରିବ ଏବଂ ସେହିଠାରେ ହିଁ ମହାରାଜାଙ୍କ ହାବୁଡ଼ରେ ପଡ଼ିଯିବ । ଏ ହିସାବରେ ମୁଁ ସୂଚନା ଦେବାମାତ୍ରେ ଲଗ ଲଗ ଦୁଇଦିନ ଶିକାର ଚଳାଇବା ବିରୁଦ୍ଧରେ ସମସ୍ତେ ତୀବ୍ର ପ୍ରତିବାଦ କଲେ ।

ବାଘ ବାଘି ମଢ଼ ପାଖକୁ ଫେରିବାର ଆଦୌ ସମ୍ଭାବନା ନାହିଁ ବୋଲି ପ୍ରକାଶ କରି ସେମାନେ ଏକସ୍ୱରରେ କହିଲେ ଯେ ବାଘ ଅଉ ଥରେ ଶିକାର ମାରିବାଯାଏ ଆମକୁ ଅପେକ୍ଷା କରିବାକୁ ପଡ଼ିବ । ତେବେ ପରଦିନ ପାଇଁ ନିର୍ଦ୍ଦିଷ୍ଟ କୌଣସି କାର୍ଯ୍ୟକ୍ରମ ନିର୍ଦ୍ଧାରିତ ହୋଇ ନ ଥିବା ଦୃଷ୍ଟିରୁ ଯୋଜନାଟିକୁ କାର୍ଯ୍ୟକାରୀ କରିବା ହିସାବରେ ଅନ୍ତତଃ ଥରଟିଏ ଚେଷ୍ଟା କରିବାରେ କିଛି କ୍ଷତି ଦେଖିଲି ନାହିଁ । ବେବର୍ତ୍ତାଙ୍କଠାରୁ ଚିଠା ଖଣ୍ଡିଏ ନେଇ ମହାରାଜାଙ୍କୁ ଲେଖିକରି ଜଣାଇଲି, "କାଲି ଭୋର୍ ପାଞ୍ଚଟା ସୁଦ୍ଧା ଆପଣ ସହିଦ ବାହାରିବାକୁ ପ୍ରସ୍ତୁତ

Digitized by srujanika@gmail.com

ହୋଇପାରିବେ, ତେବେ ମୁଁ ଏକା ଘଉଡ଼ା ଚଳାଇ ଆଉ ଥରେ ଉଦ୍ୟମ କରିବ ।" ମହାରାଜା ଚିଠିଟିକୁ ପଢ଼ି ବେବର୍ଣ୍ଣୀଙ୍କୁ ବଢ଼ାଇଦେଲେ; ହାତରୁ ହାତ ହୋଇ କାଗଜଖଣ୍ଡିକ ଘରସାରା ବୁଲିଗଲା । କର୍ମଚାରୀମାନେ ସେଥିରେ ବାଧାଦେବେ ବୋଲି ଆଶଙ୍କା କରୁଥିଲେ । ମହାରାଜା କିନ୍ତୁ ପ୍ରସ୍ତାବଟିକୁ ଗ୍ରହଣ କରିନେଇ ସବୁ ବାଧା ବିରୋଧରେ ପୂର୍ଣ୍ଣଚ୍ଛେଦ ପକାଇ ଦେଲେ ଓ ରାଜକୀୟ ମର୍ଯ୍ୟାଦାକୁ ଜଳାଞ୍ଜଳି ଦେଇ ମାତ୍ର ଦୁଇଜଣ ବନ୍ଧୁକବୁହାଳୀଙ୍କ ସହିତ ଶିକାରକୁ ଯିବେ ବୋଲି କହିଲେ । ସେମାନଙ୍କର ଘୋର ଅନିଚ୍ଛା ସତ୍ତ୍ୱେ କର୍ମଚାରୀମାନଙ୍କୁ ସେଥିପାଇଁ ଆୟୋଜନ କରିବାକୁ ପଡ଼ିଲା ।

ପରଦିନ ଠିକ୍ ସକାଳ ପାଞ୍ଚଟାବେଳେ ମହାରାଜା, ବନ୍ଧୁକବୁହାଳି ଦୁଇଜଣ ଓ ମୁଁ ଡେରାରୁ ବାହାରିଲୁ ଏବଂ ମୋଟରଯୋଗେ ତିନିମାଇଲ୍ ଗଲାପରେ ମଞ୍ଚା ପାଇଁ ଦଳିମ ବୋହିନେଉଥିବା ହାତୀଟିକୁ ବାଟରେ ଭେଟିଲୁ । ମହାରାଜା ଓ ବନ୍ଧୁକବୁହାଳି ଦୁହେଁ ମୋଟରରୁ ଓହ୍ଲାଇ ହାତୀରେ ବସିଲେ । ମୁଁ ବାଟ କଢ଼ାଇ ଆଗେ ଆଗେ ଚାଲିଲି । ସେଠାକାର ଜଙ୍ଗଲ ସହିତ ସମ୍ପୂର୍ଣ୍ଣ ଅପରିଚିତ ହୋଇଥିଲେ ମଧ୍ୟ ଦିଗଭେଦ କରିବାରେ ଜୀବନବ୍ୟାପୀ ଅଭ୍ୟାସ ମୋତେ ସାହାଯ୍ୟ କଲା । ବାଟବଣା ନ ହୋଇ ଅନ୍ଧାରରେ କେତେ ମାଇଲ୍ ଅତିକ୍ରମ କଲି ଓ ଠିକ୍ ସୂର୍ଯ୍ୟୋଦୟ ହେଲାବେଳକୁ ଅଟଡ଼ା ଉପରେ ପହଞ୍ଚି ଦେଖିଲି ଯେ ସତକୁ ସତ ମାଙ୍କିଗଦା ଉପରଦେଇ ଉପତ୍ୟକାରୁ ପାହାଡ଼କଡ଼କୁ ସରୁ ଶିକାର-ସରଣିଟିଏ ପଡ଼ିଛି । କେବଳ ଅନୁମାନ ଉପରେ ହିଁ ନିର୍ଭର କରି ମହାରାଜାଙ୍କୁ ଏତେଦୂର ନେଇ ଆସିଥିଲି; ସେ ଅନୁମାନ ଠିକ୍ ବୋଲି ପ୍ରମାଣ ପାଇବାଦ୍ୱାରା ଆନନ୍ଦ ଓ ଆଶ୍ୱସ୍ତିରେ ମନ ଭରିଗଲା । ଶିକାରସରି ପାଖରେ ସୁବିଧା ହେବାଭଳି ଗଛଟିଏ ବାଛି ମଞ୍ଚା ବାନ୍ଧିଲୁ; ମହାରାଜା ଜଣେ ବନ୍ଧୁକବୁହାଳି ସହିତ ସେଥିରେ ବସିବା ପରେ ମୁଁ ହାତୀ ବାହୁଡ଼ାଇ ଦେଲି । ମଞ୍ଚାଠାରୁ ଅଳ୍ପ ଦୂରରେ ପାହାଡ଼ କଡ଼ର ଆଉ ଗୋଟିଏ ଗଛରେ ଆର ବନ୍ଧୁକବୁହାଳିକୁ ଚଢ଼ାଇସାରି ଘଉଡ଼ା ଚଳାଇବାକୁ ଏକାକୀ ଉପତ୍ୟକାକୁ ଗଡ଼ିଲି ।

ପାହାଡ଼ ଗଡ଼ାଣି ସେଠାରେ ଅତି ତୀକ୍ଷ୍ଣ ଓ ବନ୍ଧୁର । ତେବେ ହାତରେ ରାଇଫଲ୍ ନ ଥିବାରୁ ଓହ୍ଲାଇବାକୁ ବିଶେଷ ଅସୁବିଧା ହେଲନାହିଁ । ପୂର୍ବଦିନର ମଞ୍ଚାଗୁଡ଼ିକୁ ନିଃଶବ୍ଦରେ ଅତିକ୍ରମ କରି ଜଙ୍ଗଲଟିକୁ ପାରହୋଇ ଦୁଇଶହ ଗଜ ଆଗକୁ ଚାଲିଗଲି ଓ ସେଠାରୁ ଉଜାଣି ବାହୁଡ଼ି ଆସି ଅନୁଚ୍ଚସ୍ୱରରେ ଗୁଣୁ ଗୁଣୁ ହୋଇ କଥା କହି କହି ଜଙ୍ଗଲଆଡ଼କୁ ଆଗେଇଲି । ବାଘ ମଲା ମଇଁଷିକୁ ଜଙ୍ଗଲର ଯେଉଁଠାରେ ଲୁଚାଇଥିଲା, ସେଠାରୁ ଅଳ୍ପ ଛଡ଼ାରେ ଉପୁଡ଼ି ପଡ଼ିଥିବା ବଡ଼ ଗଛଟିଏ ପାଣି ପବନରେ ଖଡ଼ରି ଯାଇ ସେଥିରେ କୋରଡ଼ ଗୁଡ଼ାଏ ହୋଇଥିଲା । ସିଗାରେଟ୍ ଖଣ୍ଡିଏ ଲଗାଇ ଗଛଟିରେ ବସି ବାଘର ଉପସ୍ଥିତି ସମ୍ବନ୍ଧରେ ଜଙ୍ଗଲରୁ ଶବ୍ଦ ସଙ୍କେତ କିଛି ପାଇବାକୁ ଅପେକ୍ଷା କଲି । ଜଙ୍ଗଲ ନୀରବ ରହିବା ଦେଖି ପ୍ରଥମେ ଖଣ୍ଡିକାଶ ମାରିଲି ଓ ପୋଲା ଗଛଟିରେ ଗୋଇଠି ବାଡ଼େଇ ଶବ୍ଦ ସୃଷ୍ଟି କଲି । କିଛି ସମୟ ଏହିପରି କରିବା ପରେ ସିଗାରେଟ୍ ଲିଭାଇ ମଢ଼କୁ ଠାବ କରିବାକୁ

Digitized by srujanika@gmail.com

ଜଙ୍ଗଲରେ ପଶିଲି । ମଡ଼ା ଚକେଡ଼ାଏ ଗହଳ ବୁଦା ଉହାଡ଼ରେ ଲୁଚିହୋଇଥିଲି । ବାଘ ମାତ୍ର କେଇମିନିଟ୍ ପୂର୍ବରୁ ସେଥିରୁ ବକତେ ମାଂସ ଖାଇଛି ଓ ସେ ଶୋଇଥିବା ସ୍ଥାନଟିରୁ ସେପର୍ଯ୍ୟନ୍ତ ଉଷୁମ ଛାଡ଼ିନାହିଁ ଦେଖି ଉତ୍ଫୁଲ୍ଲ ହୋଇଉଠିଲି । କ୍ଷିପ୍ରବେଗରେ ଧାଇଁଯାଇ ପଥର ଖଣ୍ଡିକରେ ପୋଲା ଗଛଟିକୁ ଠକ୍ ଠକ୍ ବାଡ଼େଇବା ସଙ୍ଗେ ଉଚ୍ଚସ୍ୱରରେ ଡାକଦେଇ ବାଘ ଏଆଡ଼େ ଯାଉଥିବା କଥା ମହାରାଜାଙ୍କ ବନ୍ଧୁକବୁହାଳକୁ ଚେତାଇ ଦେଲି । ମିନିଟିଏ ଦୁଇମିନିଟ୍ ପରେ ରାଇଫଲ୍ ଆବାଜ ଶୁଣାଗଲା । ପାହାଡ଼ ଉପରେ ପହଞ୍ଚି ଦେଖିଲି ଯେ ମହାରାଜା ମଞ୍ଚାରୁ ଓହ୍ଲାଇ ଶିକାରସାରି ପାଖରେ ଛିଡ଼ା ହୋଇଛନ୍ତି ଓ ମସ୍ତବଡ଼ ମହାବଳ ବାଘଟିଏ ତାଙ୍କ ଗୋଡ଼ପାଖରେ ପଡ଼ିଛି ।

ମହାରାଜା ପରଲୋକ ଗଲେଣି । ଯୁବରାଜ ଅଭିଷେକ ପରେ ନଅରରେ ଏବେ ଅବସ୍ଥାନ କରୁଛନ୍ତି । ସେ ବାଘର ଚମ ଏପର୍ଯ୍ୟନ୍ତ ତାଙ୍କ ଉଆସରେ ଖୁବ୍ ହେପାଜତରେ ରଖାଯାଇଛି; ପାଖରେ ଲଗିଥିବା ନାମପଟ୍ଟରେ ଲେଖା ହୋଇଛି 'ଜମ୍‌ର ବାଘ' । ସ୍ୱର୍ଗତ ମହାରାଜା ତାଙ୍କ ଶିକାର ଖାତାରେ ମଧ୍ୟ ସ୍ଥାନକାଳ ଉଲ୍ଲେଖ କରି ଘଟଣାଟିକୁ ବିସ୍ତୃତ ଭାବେ ବର୍ଣ୍ଣନା କରିଛନ୍ତି ।

## ତୃତୀୟ ଅଭିଯାନ

ସେଦିନ ଥିଲା ଏକ ବିଶେଷଧରଣର ଅଭିଯାନର ଶେଷ ଦିବସ । ଅଭିଯାନରେ ଅଂଶ ଗ୍ରହଣ କରିଥିବା ଆମ ପରି ସାଧାରଣ ଲୋକଙ୍କ ପାଇଁ ଯେ ଦିନଟି କେବଳ ସ୍ମରଣୀୟ ଥିଲା, ତାହା ନୁହେଁ—ସମଗ୍ର ଭାରତବର୍ଷର ସରକାରୀ ଶାସକଗୋଷ୍ଠୀ ପାଇଁ ମଧ୍ୟ ତାହା ଥିଲା ଅତି ତାତ୍ପର୍ଯ୍ୟପୂର୍ଣ୍ଣ । ସେ ଅଭିଯାନରେ ଚିରାଚରିତ ପଦ୍ଧତି ଓ ପରମ୍ପରାକୁ ଜଳାଞ୍ଜଳି ଦେଇ ସ୍ୱୟଂ ଭାରତର ବଡ଼ଲାଟ ଶିକାର କରିବା ପାଇଁ କାଲାଢୁଙ୍ଗୀ ଆଗମନ କରିଥିଲେ ।

ଭାରତର ବଡ଼ଲାଟଙ୍କ ଦୈନିକ କାର୍ଯ୍ୟସୂଚୀ ଯେପରି ନିୟମିତ ପଦ୍ଧତିରେ ନିର୍ଦ୍ଧାରଣ କରାଯାଏ, ସଂସାରରେ ବୋଧହୁଏ ଆଉ କାହାରି ଦୈନନ୍ଦିନ ଜୀବନ ଉପରେ ସେତେ କାଇଦା କଟକଣା ନଥିବ । ତାଙ୍କ କାର୍ଯ୍ୟନିର୍ଘଣ୍ଟରେ କୌଣସି ବ୍ୟତିକ୍ରମ ଘଟିବା କଳ୍ପନା ମଧ୍ୟ କରାଯାଏ ନାହିଁ; ତେଣୁ କଦବା କ୍ୱଚିତ ବ୍ୟତିକ୍ରମ ଘଟିଗଲେ ପ୍ରତିବିଧାନ କଣ କରାଯିବ, ସେଥିପାଇଁ ପୂର୍ବରୁ କୌଣସି ବ୍ୟବସ୍ଥା ନଥାଏ । ଏହି ପରିପ୍ରେକ୍ଷୀରେ ପୂର୍ବାଧିକାରୀମାନଙ୍କ ପଦାଙ୍କ ଅନୁସରଣ ନକରି ବଡ଼ଲାଟ ଲର୍ଡ଼ ଲିନ୍‌ଲିଥଗୋ ନିଜ ପାଇଁ ସ୍ୱତନ୍ତ୍ର କାର୍ଯ୍ୟପନ୍ଥା ଗ୍ରହଣ କରିବାକୁ ନିଷ୍ପତ୍ତି କରିବାଦ୍ୱାରା ଦେଶର ଚାରିଆଡ଼େ ଚହଳ ଖେଳିଗଲା । ଗ୍ରୀଷ୍ମଋତୁରେ ଦକ୍ଷିଣସ୍ଥିତ

Digitized by srujanika@gmail.com

ଶାସନ ଦପ୍ତର ବନ୍ଦହେବା ଓ ସିମଲାରେ ଗ୍ରୀଷ୍ମକାଳୀନ ଦପ୍ତର ଖୋଲିବା ମଧ୍ୟରେ ଯେଉଁ ଦଶ ଦିନର ବ୍ୟବଧାନ ଥାଏ, ବଡ଼ଲାଟ ସେତେବେଳେ ଦାକ୍ଷିଣାତ୍ୟ ଗସ୍ତକରିବା କଥା । ଲର୍ଡ଼ ଲିନ୍‌ଲିଥ୍‌ଗୋ ଏହି ଚିରାଚରିତ ପ୍ରଥାରେ ପରିବର୍ତ୍ତନ ହେବାକୁ ସମ୍ମତ ନ ହେବା ଫଳରେ ସରକାରୀ ଦପ୍ତରଗୁଡ଼ିକରେ ଯେପରି ବିଶୃଙ୍ଖଳା ଦେଖାଗଲା, ତାହା ଅନେକେ ଏପର୍ଯ୍ୟନ୍ତ ଭୁଲି ନଥିବେ ।

ମୁଁ ଜଣେ ସାଧାରଣ ନାଗରିକ; ସରକାରଙ୍କ ସହିତ ମୋର ଅନ୍ୟ କୌଣସି ସମ୍ପର୍କ ନାହିଁ । ସରକାରୀ ଶାସନର କଳକବ୍‌ଜା କିପରି ଚାଲେ—ସେ ସମ୍ବନ୍ଧରେ ମୁଁ ସମ୍ପୂର୍ଣ୍ଣ ଅଜ୍ଞ । ତେଣୁ ବଡ଼ଲାଟଙ୍କ କାଲାଢୁଙ୍ଗୀ ଆଗମନ ବିଷୟରେ ମୁଁ ଅତି ଆକସ୍ମିକ ଭାବେ ଜାଣିବାକୁ ପାଇଲି । ସେତେବେଳେ ଆମେ କାଲାଢୁଙ୍ଗୀରେ ଥିଲୁ । ସେଦିନ ମାଛ ମାରିବାକୁ ଘରୁ ବାହାରିଛି, ଏତିକିବେଳେ ରାମସିଂ ଧାଇଁ ଧାଇଁ ଆସି ମୋ ହାତକୁ ଟେଲିଗ୍ରାମଟିଏ ବଢ଼ାଇଦେଲା । ଦୁଇମାଇଲ୍ ଦୂର ଗାଁ ପୋଷ୍ଟଅଫିସରୁ ପ୍ରତିଦିନ ଚିଠିପତ୍ର ଆଣିବା ରାମସିଂର କାମ । ଟେଲିଗ୍ରାମ୍‌ଟି ବଢ଼ାଇଦେଇ ସେ କହିଲା ଯେ ସେ'ଟି ବହୁତ ଜରୁରୀ ବୋଲି ମୋତେ ଜଣାଇଦେବାକୁ ପୋଷ୍ଟମାଷ୍ଟର ତାକୁ ବାରମ୍ବାର ତାଗିଦ୍ କରିଛନ୍ତି । ଟେଲିଗ୍ରାମ୍‌ଟି ନୈନିତାଲ୍ ତାର ଅଫିସରେ ଗୃହୀତ ହେବା ପରେ ସାଧାରଣ ଡାକ ଯୋଗେ ଆମ ଗାଁ ପୋଷ୍ଟଅଫିସ୍‌କୁ ପଠାଯାଇଥିଲା । ଟେଲିଗ୍ରାମଟି ଖୋଲି ଦେଖିଲି ଯେ ପ୍ରେରକ ହେଉଛନ୍ତି ବଡ଼ଲାଟଙ୍କର ସାମରିକ ସଚିବ ହିଉ ଷ୍ଟେବଲ୍ । ଲାଟସାହେବଙ୍କ ଦାକ୍ଷିଣାତ୍ୟ ଗସ୍ତ ବାତିଲ ହୋଇଥିବା ବିଷୟ ଜଣାଇ ସିମ୍‌ଲା ଯିବାପୂର୍ବରୁ ଦଶଟିଦିନ ବଡ଼ଲାଟଙ୍କ ଅବସରବିନୋଦନ ଓ କିଛି ଶିକାର ପାଇଁ ସୁବିଧା ହେବାଭଳି ଜାଗାଟିଏ ବାଛିଦେବାକୁ ସେ ଅନୁରୋଧ କରିଥାନ୍ତି ଏବଂ ସମୟର ସ୍ୱଳ୍ପତା ଓ ବିଷୟବସ୍ତୁର ଗୁରୁତ୍ୱ ଦୃଷ୍ଟିରୁ ଅତିଶୀଘ୍ର ଉତ୍ତରଦେବାକୁ ନିବେଦନ ଜଣାଇ ଥାଆନ୍ତି ।

ରାମସିଂ ଆମ ଘରେ ତିରିଶବର୍ଷ ଚାକିରି କଲାଣି; କହି ନ ପାରିଲେ ମଧ୍ୟ ଇଂରାଜୀ ସେ ବେଶ୍ ଭଲଭାବେ ବୁଝିପାରେ । ତାରବାର୍ତ୍ତାର ବିଷୟବସ୍ତୁ ଜାଣିବା ପାଇଁ ତାହାର କୌତୂହଳ ସେ ଚପାଇ ପାରୁନଥାଏ । ତେଣୁ ବାର୍ତ୍ତାଟି ମୁଁ ମ୍ୟାଗିକୁ ପଢ଼ି ଶୁଣାଇବାଯାଏ ନାନାପ୍ରକାର କାମ ଆଳରେ ସେ ସେଠି ଘରଭିତରେ ନାକେଇଲା ଓ ତାହା ଶୁଣିଦେବା ମାତ୍ରେ ଧଡ଼ପଡ଼ ହୋଇ କହିଉଠିଲା ଯେ ଚଞ୍ଚକରି ଖାଇଦେଇ ନିଜେ ହିଁ ଉତ୍ତରନେଇ ସେ ହଲଦ୍ୱାନୀ ବାହାରିଯିବ । ନିକଟତମ ହଲଦ୍ୱାନୀ ତାର-ଅଫିସ ଆମ ଗାଁରୁ ଚଉଦମାଇଲ୍ ଦୂର । ତାକ ହରକରାକୁ ଅପେକ୍ଷା ନ କରି ଉତ୍ତରଟି ରାମସିଂ ହାତରେ ହଲଦ୍ୱାନୀ ପଠାଇଦେଲେ ଅନ୍ତତଃ ଚବିଶଘଣ୍ଟା ସମୟ ରକ୍ଷାହେବ ।

ଅତି ବିଷମ ପରିସ୍ଥିତିରୁ ତାଙ୍କୁ ଉଦ୍ଧାର କରିବା ପାଇଁ ହିଉ ଷ୍ଟେବଲ୍ ଯେ ପରୋକ୍ଷଭାବେ ନିବେଦନ କରିଛନ୍ତି, ତାଙ୍କ ବାର୍ତ୍ତାରୁ ତାହା ସ୍ପଷ୍ଟ ଜଣାପଡ଼ୁଥାଏ । ତାଙ୍କୁ କିପରି

Digitized by srujanika@gmail.com

ସାହାଯ୍ୟ କର୍‌ଯାଇପାରେ, ତାହା ଅତଶୀଘ୍ର ମୋତେ ସ୍ଥିର କରିବାକୁ ପଡ଼ିବ । ଏଣେ ବ୍ୟାଧି ରୋଗୀର ପାଇଁ ମାଛ ଶୀଘ୍ର ନ ଆଣିଲେ ନ ଚଲେ । ଗୁରୁତ୍ୱପୂର୍ଣ୍ଣ ବିଷୟମାନ ମାଛମାରିବା-ବେଳେ ହିଁ ଧୀରସ୍ଥିର ଭାବେ ଚିନ୍ତାକରିବାକୁ ସୁବିଧା ହୁଏ । ତେଣୁ ବନଶୀଖଡ଼ା ଧରି ବାହାରିବା ପୂର୍ବରୁ ଷ୍ଟେବଲ୍‌ଙ୍କ ପାଖକୁ ଟେଲିଗ୍ରାମ୍‌ଟିଏ ଲେଖି ରାମସିଂ ହାତରେ ହଲଦ୍ୱାନୀ ପଠାଇଦେଲି । "ବାର୍ତ୍ତାଟିରେ ଲେଖିଥିଲି କାଲି ଦିନ ଏଗାରଟାବେଳେ ହଲଦ୍ୱାନୀ ଅଫିସ୍‌କୁ ଟେଲିଫୋନ କରି ମୋ ସହିତ କଥାବାର୍ତ୍ତା କରିବେ ।"

ସେଦିନ ବୋଅର ନଦୀ ଗଣ୍ଡରେ ରହୁଥିବା ପ୍ରାୟ ଦେଢ଼ କେଜି ଓଜନର ନିର୍ଦ୍ଦିଷ୍ଟ ଗୋଟିଏ ଖେଳୁଆ ମାଛକୁ ଧରିବା ମୋର ଉଦ୍ଦେଶ୍ୟ ଥିଲା । ଗାଁପାଖ ଜଙ୍ଗଲର 'ଫାର୍ମୟାର୍ଡ଼' ନାମକ ଏକ ଅଂଶରେ ପିଲାଦିନେ ଚିତାବାଘଟିଏ ମାରିଥିବା କଥା ପୂର୍ବରୁ ଉଲ୍ଲେଖ କରିଛି । ସେଦିନ କୋଟା ସଡ଼କରେ ଦୁଇମାଇଲ୍ ଗଲା ପରେ 'ଫାର୍ମୟାର୍ଡ଼'ର ତଳେ ତଳେ ବୁଲି ବୋଅର୍ ନଦୀର ଗଣ୍ଡପାଖରେ ପହଞ୍ଚିଲି । ଗଣ୍ଡଟି ଉପରପାଖରେ ବେଶି ଗଭୀର ଓ ସେଠାରେ ପାଣିର ଡୋଡ଼ ମଧ୍ୟ ସେଇ ଅନୁପାତରେ ବେଶି । ସେଠାରେ ବୁଡ଼ି ରହିଥିବା ବଡ଼ ବଡ଼ ପଥର ଢନୋଟିର ଉପରଭାଗ ପାଣିରୁ ଫୁଟେ ଉପରକୁ ଉଠିଥାଏ; ପାଣିସ୍ରୋତରେ ବରାବର ଓଦା ରହି ପଥର ଢନୋଟିରେ ଶିଉଳି ପ୍ରସ୍ତେ ବହଳରେ ବସିଥାଏ । ସେଭଳି ଚିକ୍‌କଣ ଖସଡ଼ାପଥର ଉପରେ କେବଳ ଚିତାବାଘ ଗୋଡ଼ ଜମାଇ ରହିପାରେ । ପଥର ଢନୋଟିରେ ଡେଇଁ ଡେଇଁ ଚିତାବାଘ ବରାବର ନଈ ପାରି ହେଉଥିବା ମୋତେ ଜଣାଥାଏ ।

ମହାବଳ ବାଘଟିଏ ଥରେ ଚିତାବାଘକୁ ଅନୁକରଣ କରିବାକୁ ଚେଷ୍ଟାକରି ବଡ଼ ଦୁର୍ଦ୍ଦଶା ଭୋଗକରିଥିଲା । ସେ ବାଘକୁ ମୁଁ ସେଦିନ ଅନୁସରଣ କରି ପ୍ରାୟ ମାଇଲିଏ ଆସିଲା ପରେ ଏଠାରେ ପହଞ୍ଚିଲି । ମୁଁ ପଛରେ ଥିବା କଥା ବାଘକୁ ଜଣା ନଥିଲା । ସେ ଭିତରେ ଦୁଇଥର ଗୁଳି ଚଳାଇବାକୁ ଉଦ୍ୟତ ହୋଇଥିଲି; କିନ୍ତୁ ଗୋଟେ ଗୁଳିରେ ବାଘକୁ କାବୁ କରିଦେବି ବୋଲି ଭରସା ନ ହେବାରୁ ବନ୍ଧୁକ ପୁଣି ନୁଆଁଇ ଦେଇଥିଲି । ବାଘ ନଈ ପାରିହେଲାବେଳେ ବେଶି ସୁବିଧା ମିଳିବ ଭାବି ଦ୍ରୁତବେଗରେ ଆଗରୁଯାଇ ନଈକୂଳକୁ ଚାଲିଗଲି । ବାଘ ପାଣିରେ ନ ପଶି ପଥର ଉପରେ ହିଁ ଡେଇଁ ଡେଇଁ ଯିବାକୁ ବାଛିନେଲା । ତାର ସେପରି କରିବା ମୋତେ ବି ବେଶ୍ ସୁହାଇଲା । ପଥର ପାଖକୁ ଯିବାପାଇଁ ସେ ବଣ୍ଡ-ଡାଳକୁ ଗଡ଼ାଇମାନେ କୋଡ଼ିଏ ଫୁଟ ଉଚ୍ଚ ବନ୍ଧ ଉପରେ ମୁଁ ଲେପଟାଇ ପଡ଼ି ରାଇଫଲ୍ ସଜକରି ଧରିଲି ।

ପଥର ଢନୋଟି କ୍ରମବର୍ଦ୍ଧମାନ ବ୍ୟବଧାନରେ ପରସ୍ପରଠାରୁ ସେତିକ ଦୂରତାରେ ଥିଲେ, ଅଲିମ୍ପିକ୍ ପ୍ରତିଯୋଗିତାର କୌଣସି ଶ୍ରେଷ୍ଠ ଖେଳାଳି ସେଥିରେ ପାହୁଣ୍ଡ ପକାଇ 'ହପ୍, ସ୍କିପ୍ ଆଣ୍ଡ ଜମ୍ପ୍' କରି ପାରିଥାଆନ୍ତେ । ଚିତାବାଘ ଅତି ଲାଳିତଠାଣିରେ

Digitized by srujanika@gmail.com

ପଥରଗୁଡ଼ିକୁ ତିନି ଡେଇଁରେ ପାରହୋଇଯିବା ମୁଁ ଦେଖିଛି । ବନ୍ଧ ଉପରକୁ ମୁଣ୍ଡ ଟେକି ମୁଁ ଅନାଇଥିବା ଭିତରେ ବାଘ କୁଦାକେ ପ୍ରଥମ ପଥରଟି ଉପରେ ଯାଇ ପହଞ୍ଚିଗଲା । ତା'ପର ଡେଇଁରେ କିନ୍ତୁ ପଥରରୁ ଗୋଡ଼ ଖସି ବାଘ ଝୁପ କରି ପାଣିରେ ପଡ଼ିଲା । ପୂର୍ବରୁ ଠିକ୍ ସେହି ପଥର ଉପରୁ ଗୋଡ଼ ଖସି ମୁଁ କିଳେ ଥରେ ପାଣିରେ ପଡ଼ିଥିଲି; ପୂରା ଜୁଡ଼ୁବୁଡ଼ୁ ହୋଇ ଉଠିଲା ପରେ ପଥରଟିକୁ ଖୁବ୍ ତିରସ୍କାର ମଧ୍ୟ କରିଥିଲି । ସେଦିନ ବାଘ ବି ଯଦି ବିଗିଡ଼ି କରି ପଥରଟିକୁ ଗାଳିଗୁଲଜ ଦେଇଥିବ, ସମ୍ଭବତଃ ପାଣିରେ ସେ ଚବର ଚବର ହେଉଥିବା ଯୋଗୁଁ ମୁଁ ତାହା ଶୁଣିପାରି ନ ଥିବି । ସେ ଯାହାହେଉ, ବାଘ ସେଇଠାରୁ ପାଣିରେ ପଶି ଲସରପସର ହୋଇ ଆର କୂଳକୁ ଉଠିଲା ଓ ଝାଡ଼ିହୁଡ଼ି ହେବା ପରେ ତାଡ଼ିଲା ବାଲିରେ ଗଡ଼ାମାରି ଦେହରୁ ପାଣି ଶୁଖାଇଲା । ଶୀତଋତୁ ଆରମ୍ଭ ହେଉଥାଏ; ବାଘର ଚମ ଖରାରେ ଅତି ଉଜ୍ଜ୍ୱଳ ଓ ଚକ୍‌ଚକ ଦେଖାଯାଉଥାଏ । ଦେହ ଶୁଖିଯିବାପରେ ବାଘ ଝାଡ଼ିହୋଇ ଦେହରୁ ବାଲିତକ ଛଡ଼ାଇଲା ଓ ତା'ପରେ ନିଜ ଗନ୍ତବ୍ୟପଥରେ ଚାଲିଗଲା । ଜଙ୍ଗଲରେ କୌତୁକ ସୃଷ୍ଟି କରୁଥିବା ଜନ୍ତୁଙ୍କ ଶିକାରୀମାନେ ମାରନ୍ତି ନାହିଁ । ତେଣୁ ବର୍ଷାରକ୍ଷା କରି ବାଘକୁ ସେଦିନ ଅନାହୃତ ଅବସ୍ଥାରେ ଚାଲିଯିବାକୁ ଛାଡ଼ିଦେଲି ।

ଖେଜୁରା ମାଛ ସନ୍ଧାନରେ ସେ ଦିନ ଗଣ୍ଡ ପାଖକୁ ଯାଉ ଯାଉ ବାଲିରେ ମହାବଳ ବାଘର ପାହୁଲଦାଗ ପଡ଼ିଥିବା ଲକ୍ଷ୍ୟକଲି । ଚିହ୍ନଗୁଡ଼ିକ ଶୁଖିଲା ଥିଲା; ପରୀକ୍ଷାଦ୍ୱାରା ଚିହ୍ନଟ କଲା ପରେ ଜାଣିପାରିଲି ଯେ ମୋର ସେହି ପୂର୍ବପରିଚିତ ମହାବଳ ବାଘ ସେଠାରେ ନଈ ପାରିହୋଇଛି ଏବଂ ଏହି ଥରକ ଅନ୍ତତଃ ପଥରରେ ଡେଇଁ ଡେଇଁ ନଈ ପାର ହେବାରେ ସଫଳ ହୋଇପାରିଛି । ସେଠାରୁ ସଲଙ୍ଗରେ ନଈ ଆରବନ୍ଧରୁ ନୁଆଁଣିଆ ବଡ଼ ପଥରଟିଏ ପାଣିକୁ ପଶିଆସି ସ୍ଥିର ଜଳର ଶ୍ରେଷ୍ଠ ଚବକାଟି ସୃଷ୍ଟି କରିଥିଲା । ସେହି ଚବକାଟି ଥିଲା ମୋର ପୁରାତନ ବନ୍ଧୁ ସେହି ଖେଜୁରା ମାଛର ଶିକାର କ୍ଷେତ୍ର ଓ କ୍ରୀଡ଼ାଭୂମି । ପଥରର ଗୋଟିଏ ଅଂଶ ପାଣି ତଳେ ବୁଡ଼ିଥିଲା; ପୂର୍ବରୁ ଦୁଇଥର ସେହି ବୁଡ଼ିଲା ଅଂଶ ଉପରେ ଥୋପ ପକାଇ ଲକ୍ଷ୍ୟ କରିଥିଲି ଯେ ଥୋପ ଧୀରେ ଧୀରେ ଟାଣିନେଲାବେଳକୁ ମାଛ ପ୍ରବଳ ବେଗରେ ଥୋପ ଆଡ଼କୁ ଛୁଟିଆସୁଛି । ପାଣି ତଳ ପଥର ଉପରେ ଥୋପ ପକାଇବା କିନ୍ତୁ ସେତେ ସହଜ ନଥିଲା । ଗଛଡ଼ାଳଟିଏ ଚବକା ଉପରକୁ ଲମ୍ବିଥିବାରୁ ଥୋପ ପକାଇବା ପାଇଁ ସେଥିରେ ଜାକିଜୁକି ହୋଇ ବସିବାକୁ ପଡ଼େ । ତା'ପରେ ଖେଜୁରା ମାଛ ଅତି ଡରକା; ଜଳ, ସ୍ଥଳ ଓ ଆକାଶରେ ତାର ଅନେକ ଶତ୍ରୁ ଥିବା ଯୋଗୁ ଶବ୍ଦ ହେଲେ ସେ ସହଜରେ ପଦାକୁ ବାହାରେ ନାହିଁ । ଏସବୁ କାରଣରୁ ମାଛଟିକୁ ଅଣ୍ଟାଆରକୁ ଅଣିବା ପାଇଁ ମୋତେ ବିଶେଷ ଧରଣର ଆୟୋଜନ କରିବାକୁ ପଡ଼ିଲା ।

ପ୍ରଥମେ ବନଶୀ ସୂତାକୁ ଲମ୍ବେଇ ଛୁଇଁ ପାଣିରେ ଭିଜାଇ ଦେଇ ବସି ସିଗାରେଟ୍ ଟାଣିଲି । ସିଗାରେଟ୍ ସରିଲା ପରେ ଭିଜା ସୂତାତକ ମୁଣ୍ଡଳା କରି ଗୁଡ଼ାଇ ଅତି ଧୀରେ

Digitized by srujanika@gmail.com

ପାଣି ତଳ ପଥରର ଗଡ଼ାଣିକୁ ପକାଇଦେଲି । ଥୋପଟି ପଥର ଉପରେ ଠିକ୍ ଜାଗାରେ ପଡ଼ିଲା, ଭିଜା ସୂତା ପାଣିରେ ଭାସିଲାନାହିଁ । ସୀସାର ଓଜନରେ ସୂତାର ମୋଡ଼ ଫିଟି ଥୋପ ଗହ୍ୱର ପାଣିକୁ ଏତେ ଧୀରେ ଖସିଗଲା ଯେ ପାଣି ଟିକିଏ ବି ଚହଲିଲା ନାହିଁ । ଥୋପ ବୁଡ଼ିଯିବାମାତ୍ରେ ମାଛ ପଦାକୁ ଛୁଟିଆସି ତାକୁ ଟପ୍ କରି ଗିଳିଦେଲା ।

ବନ୍ଶୀକଣ୍ଟା ତଣ୍ଟିରେ ବାଜିବା ମାତ୍ରେ ଖେଳୁଆ ମାଛ ଅସମ୍ଭାଳ ହୋଇଉଠେ ଓ କଳେବଳେକୌଶଳେ ପଥରଖୋଲରେ ପଶିବାକୁ ପ୍ରାଣମୂର୍ଚ୍ଛା ଚେଷ୍ଟା ଚଳାଏ । ହାଲୁକା ବନ୍ଶୀଖଡ଼ାରେ ତାକୁ ସେତେବେଳେ ସମ୍ଭାଳି ରଖିବା କଷ୍ଟକର । ସେଠାରୁ ତିରିଶ ଗଜ ଦୂରରେ ଗୋଟିଏ ବଡ଼ ଗଛର ଶିଅ ପାଣି ତଳେ ତଳେ ମାଡ଼ିଥିଲା । ଏଥିପୂର୍ବରୁ ଦୁଇ ଥର ଏହି ମାଛଟି ସେ ଶିଅତଳେ ପଶିଯାଇ ଅଟକି ରହିବାଯୋଗୁ ତା ପାଖରେ ମୋତେ ହାରି ମାନିବାକୁ ପଡ଼ିଥିଲା । ଏଥରକ ମୁଁ ଆଗରୁ ହୁସିଆର ହୋଇ ସୂତାକୁ ଟାଣେଇ ଧରି ତାକୁ ସେ ଯାଏ ଯିବାକୁ ଦେଲିନାହିଁ । ଚବକା ଭିତରେ ହିଁ ଖେଳାଇ ଖେଳାଇ ତାକୁ ହାଲିଆ କରିଦେବା ପରେ କୂଳକୁ ଆଉଜାଇ ଆଣି ହାତରେ ଟେକିଧରିଲି । ତଉଲରେ ମାଛଟି ଦୁଇ କେଜି ପାଖାପାଖି ହେଲା; ଆମ ଚାହିଦା ମେଣ୍ଟାଇବା ଛଡ଼ା ମ୍ୟାଗିର ହେପାଜତରେ ଥିବା ଗାଁର ଗୋଟିଏ ବେମାରିଆ ପିଲା ପାଇଁ ମଧ୍ୟ ମାଛ କିଛି ଯୋଗାଇଦେଇ ପାରିଲୁ । ପିଲାଟି ତା ପଥ୍ୟ ଭିତରୁ ମାଛ ଟିକିଏ ଖାଇବାକୁ ସବୁଠାରୁ ବେଶି ଲୋଭ କରୁଥିଲା ।

ନିଷ୍ପତ୍ତି ଗ୍ରହଣ କରିବା ପୂର୍ବରୁ ଧୀରସ୍ଥିର ଭାବେ ବିଚାର କରିବାରେ ଯେତିକି ସମୟ ଅତିବାହିତ ହୁଏ, ଉଦ୍ଦେଶ୍ୟସାଧନକୁ ତାହା ବିଳମ୍ବିତ ନ କରି ବରଂ ତ୍ୱରାନ୍ୱିତ କରାଏ । ପିଲାଦିନେ ରାଇଫଲ୍ ମଇଦାନରେ ଲର୍ଡ ରବର୍ଟଙ୍କଠାରୁ ଏହି ଶିକ୍ଷା ପାଇଥିଲି । ନିର୍ଦ୍ଦିଷ୍ଟ କୌଣସି ପ୍ରସ୍ତାବ ବା ପ୍ରତିଶ୍ରୁତି ନ ଦେଇ ହିଉ ଷ୍ଟେବଲ୍ଙ୍କ ଟେଲିଗ୍ରାମ୍ର ଉତ୍ତର ଲେଖିଲା-ବେଳେ ଚିନ୍ତାକରିବା ପାଇଁ କିଛି ସମୟ ନେବା ହିଁ ମୋର ଉଦ୍ଦେଶ୍ୟ ଥିଲା । ଶେଷ ସିଦ୍ଧାନ୍ତ ଗ୍ରହଣ କରିବା ପାଇଁ ଦିନଟିଏ ସମୟ ପାଇଲି । ସେ ସିଦ୍ଧାନ୍ତ ମୂଳରେ ବାଲିରେ ସେଦିନ ମହାବଳ ବାଘର ପାହୁଲଦାଗ ଦେଖିବା ଓ ଖେଳୁଆ ମାଛଟିକୁ ମାରିବାରେ ସଫଳ ହେବାର କେତେ ଅବଦାନ ଥିଲା—କହିପାରୁନାହିଁ । ସେ ଯାହାହେଉ, ମାଛ ନେଇ ଘରେ ପହଞ୍ଚିବା ବେଳକୁ ନିଶ୍ଚିତଭାବେ ସ୍ଥିର କରିସାରିଥିଲି ଯେ ବଡ଼ଲାଟ ଛୁଟି କଟାଇବାକୁ କାଳାଢୁଙ୍ଗୀ ଆସନ୍ତୁ ବୋଲି ହିଉ ଷ୍ଟେବଲ୍ଙ୍କୁ ପ୍ରସ୍ତାବ ଦେବି ।

ମ୍ୟାଗି ଚାହା ପାଇଁ ସରଞ୍ଜାମ ସବୁ ସଜାଳି କରି ବାରଣ୍ଡାରେ ମୋତେ ଅପେକ୍ଷା କରି ବସିଥିଲା । ଆମର ଚାହା ଖାଇବା ଓ ବଡ଼ଲାଟଙ୍କ ଗସ୍ତ ବିଷୟରେ କଥାବାର୍ତ୍ତା ହେବା ଭିତରେ ବାହାଦୂର୍ ଆସି ହାଜର ହୋଇଗଲା । ବାହାଦୂର୍ ବେଳକାଳ ଡିଣ୍ଡି ଜଗିରଖି କଥା କହେ; ନିଜେ ଚୁପ ରହି ଅନ୍ୟମାନଙ୍କୁ କହିବାକୁ ଦେବା କେତେବେଳେ ବେଶି

Digitized by srujanika@gmail.com

ସୁବିଧାଜନକ ତାହା ସେ ଖୁବ୍ ଭଲଭାବେ ବୁଝିପାରେ । ଦିଲ୍ଲୀରୁ ଆସିଥିବା ଟେଲିଗ୍ରାମ୍ ଓ ମୋ ଉତ୍ତର ବିଷୟ କହିବା ପରେ ଗଭୀର ଆନନ୍ଦର ଆବେଗରେ ବାହାଦୂର୍‌ର ମୁହଁ ଉଜ୍ଜ୍ୱଳ ହୋଇଉଠିଲା । ଖୁସିହୋଇ ସେ କହିବସିଲା ଯେ ଖୋଦ୍ ବଡ଼ଲାଟ୍ ଯେ ଏଠାକୁ ଦିନେ ବିଜେକରିବେ—ଏକଥା ଏ ମୁଲକଯାକରେ କେହି ସ୍ୱପ୍ନରେ ସୁଦ୍ଧା ଭାବି ନଥିବେ । ଦେଖିପାରିଁ 'ବସ୍ତିର ବଡ଼ ବନ୍ଦୋବସ୍ତଟାଏ' କରିବାକୁ ହେବ । ଲୋକଙ୍କୁ ଫସଲ ଅମଳ ସରିଲାଣି । ବଡ଼ଲାଟ୍‌ଙ୍କ ପାରିଧି ପାଇଁ ଲୋକବାକ ଅଭାବ ହେବେ ନାହିଁ । ବଡ଼ଲାଟ୍‌ଙ୍କ ଆସିବା ଖବର ଚାରିଆଡ଼େ ଚହଟିଯିବା ପରେ ବାହାଦୂର୍ ପରି ଆମ ଏ ଅଞ୍ଚଳର ପ୍ରତ୍ୟେକେ ଯେପରି ଗଭୀର ଆନନ୍ଦରେ ଅଭିଭୂତ ହୋଇପଡ଼ିଲେ—ତା ମୂଳରେ ବ୍ୟକ୍ତିଗତ ସ୍ୱାର୍ଥ ବା ପ୍ରତିଷ୍ଠାଲାଭର କୌଣସି ଉଦ୍ଦେଶ୍ୟ ନ ଥିଲା । ମହାମାନ୍ୟ ବଡ଼ଲାଟ୍ ତାଙ୍କର ଅତିଥ୍ୟ ଗ୍ରହଣ କରି ସେମାନଙ୍କୁ ସମ୍ମାନିତ କରିଛନ୍ତି । ସମ୍ମାନାସ୍ପଦ ଅତିଥିଙ୍କ ସ୍ୱାଗତ ଓ ସତ୍କାରରେ ଯେପରି ତ୍ରୁଟି ନହୁଏ, ସେଥିପାଇଁ ପ୍ରତ୍ୟେକେ ସାଧ୍ୟମତେ ସଚେଷ୍ଟ ହୋଇପଡ଼ିଲେ ।

ଆମ ଗାଁରୁ ହଲଦ୍ୱାନୀକୁ ଚଉଦ ମାଇଲ ବାଟ । ଜଙ୍ଗଲ ବିଭାଗର ଜେଫ୍ ହପ୍‌କିନ୍‌ସ୍‌ଙ୍କ ସହିତ ପରାମର୍ଶ କରିବା ପାଇଁ ପୁଣି ବାଟଭିତରେ ତାଙ୍କ ଫତେପୁର୍ କେମ୍ପବାଟେ ମୋତେ ଯିବାକୁ ପଡ଼ିବ । ପରଦିନ ରାତି ନପାହୁଣୁ ଘରୁ ବାହାରିପଡ଼ିଲି । ସଡ଼କର ପ୍ରଥମ ସାତମାଇଲ୍ ଗହଳ ଜଙ୍ଗଲ ଭିତରେ ଯିବାକୁ ପଡ଼େ । ରାତିର ଶେଷ ପ୍ରହର—ଅଳ୍ପ କେତୋଟି ପଶୁଜନ୍ତୁ ଚଳପ୍ରଚଳ ହୋଇ ଜଙ୍ଗଲର ଗଭୀର ନିସ୍ତବ୍ଧତା ଭଙ୍ଗ କରୁଥାଆନ୍ତି । କାଲାଦୁଙ୍ଗୀ ବଜାର ପାର ହୋଇ ମାଇଲେ ଯିବାପରେ ଚାରିଆଡ଼ କ୍ରମେ ଫର୍ଚ୍ଚା ହୋଇଆସିଲା । ଭୋରବେଳାର ଫିକା ଆଲୁଅରେ ଗୋଟିଏ ପୁରୁଷ ଚିତାବାଘର ତାଜା ପାଦଚିହ୍ନ ଦାଗ ରାସ୍ତାଧୂଳିରେ ସ୍ପଷ୍ଟହୋଇ ପଡ଼ିଥିବା ଲକ୍ଷ୍ୟକଲି । ଆଗକୁ ସଡ଼କର ମୋଡ଼ ବୁଲିବାମାତ୍ରେ ଦେଖିଲି ଯେ ଚିତାବାଘ ମୋଠାରୁ ସାମାନ୍ୟ ଦୁଇଶହ ଗଜ ଆଗରେ ସଡ଼କରେ ହିଁ ଚାଲିଛି । ଚିତାବାଘ ଠିକ୍ ସେତିକବେଳକୁ ଅବଚେତନ ମନରୁ କୌଣସି ଆଭାସ ପାଇଲା ପରି ମୁଁ ପଛରେ ଥିବା କଥା ଜାଣିଯାଇ ମୋ ଆଡ଼େ ମୁହଁ ଫେରାଇ ଥରେ ଅନାଇଦେଲା । ତା'ପରେ ସେତିକି ବ୍ୟବଧାନରେ ଦୁହେଁ ଆଗପଛ ହୋଇ ଚାଲିଲୁ । ଚିତାବାଘ ମଝିରେ ମଝିରେ ପଛକୁ ଅନାଉଥାଏ । ଚିତାବାଘ ବଡ଼ ହୁସିଆର ଜନ୍ତୁ । ମୁଁ ବେଗରେ ପାହୁଣ୍ଡ ପକାଇ ତା'ଠାରୁ ପଚାଶ ଗଜକୁ ପାଖେଇ ଆସିବାମାତ୍ରେ ସେ ସଡ଼କତଳକୁ ଗଡ଼ପଡ଼ ପତଳା ଘାସବଣରେ ପଶିଗଲା । ମୁଁ ନଜାଣିଲା ପରି ଆଗେଇ ଚାଲିଲି—ଘାସବଣଟିକୁ ପାରହେବାବେଳେ କଣେଇ କରି ଦେଖିଲି ଯେ ଚିତାବାଘ ସଡ଼କ କଡ଼ରୁ କେଇ ଫୁଟ ଛଡ଼ାରେ ଘାସଗହଳରେ ଲେପଟାଇ ପଡ଼ି ମୁଁ ଆଗେଇଯିବାକୁ ଅପେକ୍ଷା କରିଛି । ମୁଁ ଶହେ ଗଜ ଆଗକୁ ଗଲାପରେ ସେ ସଡ଼କକୁ ପୁଣି ବାହୁଡ଼ି ଆସି ମୋ ପଛେ ପଛେ ଚାଲିବାକୁ ଲାଗିଲା । ଚିତାବାଘ ଦୃଷ୍ଟିରେ ମୁଁ ଥିଲି ତାର ସହଯାତ୍ରୀ ଜଣେ ସାଧାରଣ ବାଟୋଇ; ସହଯାତ୍ରୀକୁ ବାଟ ଛାଡ଼ିଦେବାରେ ସେ ଅଯଥା ବାଦବିବାଦ କରିବ କାହିଁକି ?

Digitized by srujanika@gmail.com

ବ୍ୟବଧାନ ସମାନ ରଖି ମୋ ପଛେ ପଛେ କେଇ ଶହ ଗଜ ଗ୍ଭଲିବାପରେ ଚିତାବାଘ ବାଟଭାଙ୍ଗି ଗୋଟିଏ ଗଭୀର ଖୋଲରେ ପଶିଗଲା । ମାଇଲଏ ପରେ ବଲଆକୁକୁର ପାଞ୍ଚୋଟି ସଡ଼କ ଡାହାଣପାଖ ଜଙ୍ଗଲରୁ ବାହାରିଆସିଲେ । ବଲଆ କୁକୁର କୌଣସି ଜନ୍ତୁଙ୍କୁ ଡରନ୍ତି ନାହିଁ; ଜଙ୍ଗଲରେ ନିର୍ଭୟରେ ବୁଲି ସେମାନେ ସବୁଠାରୁ ଉତ୍କୃଷ୍ଟ ଶିକାରମାନ ମାରି ଖାଆନ୍ତି । ମୋ ଜାଣିବାରେ ଭାରତୀୟ ବଣଜଙ୍ଗଲର ଅନ୍ୟ ଜନ୍ତୁଙ୍କ ତୁଳନାରେ ବଲଆକୁକୁର ସବୁଠାରୁ ଆରାମ ଓ ଅସୁବିଧାରେ ଚଳନ୍ତି ।

ଫତେପୁର ଜଙ୍ଗଲ ବଙ୍ଗଲାରେ ପହଞ୍ଚିଲାବେଳକୁ ଜେଫ୍ ଓ ତାଙ୍କ ପତ୍ନୀ ଜଳଖିଆ ବସି ଜଳଖିଆ କରୁଥିଲେ । ମୋର ହଲଦ୍ୱାନୀ ଯାତ୍ରାର ଉଦ୍ଦେଶ୍ୟ ଜାଣିବା ପରେ ଦୁହେଁ ଭାରି ଖୁସି ହୋଇଗଲେ । ଜେଫ୍ ତରାଇ—ଭାବର୍ ଅଞ୍ଚଳର ଜଙ୍ଗଲ ବିଭାଗର ସ୍ୱତନ୍ତ୍ର ଅଧିକାରୀ; ତାଙ୍କ ସାହାଯ୍ୟ ଓ ସହାନୁଭୂତି ବିନା ବଡ଼ଲାଟଙ୍କୁ କାଲାଦୁଙ୍ଗୀ ଆଣିବା ବିଷୟରେ କୌଣସି ପ୍ରସ୍ତାବ ଦେଇପାରି ନ ଥାଆନ୍ତି । ବଡ଼ଲାଟଙ୍କ ଶିକାର ପାଇଁ ଯେଉଁ ଦୁଇଟି ଜଙ୍ଗଲ ବ୍ଲକ ମୁଁ ନେବାକୁ ଗ୍ଭହୁଁଥିଲି, ଯୋଗକୁ ଠିକ୍ ସେତିକିବେଳକୁ ତାହା ଖାଲି ଥିଲା । ସେ ଦୁଇଟି ମୋ ପାଇଁ ସଂରକ୍ଷଣ କରିବା ଛଡ଼ା ତୀରୌଣି ବ୍ଲକଟିକୁ ମଧ୍ୟ ଛାଡ଼ିଦେବା ପାଇଁ ଜେଫ୍ ନିଜ ଆଡ଼ୁ ପ୍ରସ୍ତାବ ଦେଲେ । ପୂର୍ବଦିନ ବାଘର ପାଦଚିହ୍ନ ଦେଖିବା ଓ ମାଛ ମାରିବାଠାରୁ ଆରମ୍ଭକରି ଜେଫଙ୍କ ସମ୍ମତି ଓ ସହାନୁଭୂତିର ପ୍ରତିଶ୍ରୁତି ପାଇବା ପର୍ଯ୍ୟନ୍ତ ପ୍ରତ୍ୟେକ ପର୍ଯ୍ୟାୟରେ ଯେତିକି ସଫଳତା ଲାଭକରିଥିଲି, ସେଥିରୁ ମୋର ଉଦ୍ୟମ ଶୁଭଲଗ୍ନରେ ଆରମ୍ଭ ହୋଇଛି ବୋଲି ମନେ ହେଲା । ମନଖୁସିରେ ଡେରାରୁ ବାହାରିଲି; ହଲଦ୍ୱାନୀକୁ ଯିବାବେଳେ ଆନନ୍ଦରେ ମୋ ଗୋଡ଼ ତଳେ ପଡ଼ୁନଥାଏ ।

ଠିକ୍ ଏଗାରଟାବେଳେ ହ୍ୟୁ ଷ୍ଟେବଲ୍ ଟେଲିଫୋନ୍ କଲେ ଓ ଘଣ୍ଟାଏକାଳ ମୋ ସହିତ କଥାବାର୍ତ୍ତା ହେଲେ । ସେହି ଘଣ୍ଟାକ ଭିତରେ ଦୁହେଁ ଦୁହିଁଙ୍କଠାରୁ ଅଜଣା କେତେ ନୂତନ ତଥ୍ୟ ଶିକ୍ଷାକଲୁ । ହ୍ୟୁ ମୋଠାରୁ ଜାଣିବାକୁ ପାଇଲେ ଯେ ଦିଲ୍ଲୀ ସହରଠାରୁ ମାତ୍ର ତିନିଶହ ମାଇଲ ଦୂରରେ ହିମାଳୟର ପାଦପର୍ବତର ବେଷ୍ଟନୀ ଭିତରେ ଲୁଚିରହିଛି କାଲାଦୁଙ୍ଗୀ ନାମକ ଶ୍ରେଷ୍ଠ ଗୋଟିଏ ଜଙ୍ଗଲଘେରା ଗାଁ । ଭୂଗୋଳ ପୋଥିପତ୍ରରେ ନାମ ନଥିଲେ ମଧ୍ୟ ସେଭଳି ସ୍ଥାନ ସଂସାରରେ ବିରଳ । ଗାଁ ଚାରିପାଖ ଜଙ୍ଗଲରେ ବହୁରକମ ପଶୁପକ୍ଷୀ ମିଳନ୍ତି । ଅବସରବିନୋଦନ ସହିତ ଶିକାର କରିବାର ଅଭିଳାଷ ଥିଲେ ଶ୍ରେଷ୍ଠ ସେହି ଗାଆଁଟି-ଠାରୁ ଉତ୍କୃଷ୍ଟତର ସ୍ଥାନ ସମଗ୍ର ଭାରତବର୍ଷରେ ଅନ୍ୟତ୍ର ମିଳିବ ନାହିଁ । ସେତିକି ତଥ୍ୟ ବିନିମୟରେ ବଡ଼ଲାଟଙ୍କ ଗହଣରେ ଆସୁଥିବା ପାରିଷଦ ଓ ପରିଜନମାନଙ୍କ ବିଷୟରେ ହ୍ୟୁ ଅତି ସଂକ୍ଷେପରେ ଯେତିକି ବିବରଣୀ ଦେଲେ, ତାହା ଥିଲା ମୋ ପାଇଁ ଅତି ବିରାଟ ବ୍ୟାପାର । ଲାଟଦମ୍ପତିଙ୍କ ସହିତ ତାଙ୍କର ତିନିକନ୍ୟା—ଲେଡ଼ି ଆନ୍ନି, ଲେଡ଼ି ଜୋଆନ୍ ଓ ଲେଡ଼ି ଡୋରିନ୍ (ଡାକନାମ ବଣ୍ଟି) ହୋପ୍ ମଧ୍ୟ ଆସିବେ । ଲାଟ ସାହେବ ଛୁଟିରେ ମଧ୍ୟ ନିୟମିତ ଶାସନକାର୍ଯ୍ୟ ଚଳାଉଥିବାରୁ ତାଙ୍କ ବ୍ୟକ୍ତିଗତ ଦପ୍ତରର ସବୁ କର୍ମଗ୍ଭରୀ ତାଙ୍କ

Digitized by srujanika@gmail.com

ସଙ୍ଗରେ ଆସିବେ । ଲାଟଦମ୍ପତି ସପରିବାରେ ଓ ସଦଳବଳେ ମାତ୍ର ପନ୍ଦରଦିନ ପରେ କାଳାଦୁଙ୍ଗୀରେ ପହଞ୍ଚିବେ । ସେତିକି ସମୟ ଭିତରେ ଶିକାର ପାଇଁ ମୋତେ ସବୁ ଆୟୋଜନ ଶେଷ କରିବାକୁ ହେବ ।

ପରଦିନ ବଡ଼ଲାଟ-ଭବନର ମୁଖ୍ୟ ପରିଚାଳକ ମାଉଣ୍ଟ୍ ମାକ୍‌ସ୍‌ୱେଲ୍ ମୋଟରଯୋଗେ ଦିଲ୍ଲୀରୁ ଆସି କାଳାଦୁଙ୍ଗୀରେ ପହଞ୍ଚିଗଲେ । ତାଙ୍କ ପରେ ପରେ ମୁଖ୍ୟ ବେସାମରିକ ଶାସନକର୍ତ୍ତା ଏବଂ ପୋଲିସ ବିଭାଗ, ସି. ଆଇ. ଡ଼ି. ବିଭାଗ, ଜଙ୍ଗଲ ବିଭାଗ ଓ ତଦ୍ଭିନ୍ନ ଭିନ୍ନ ଭିନ୍ନ ଅଞ୍ଚଳର ଅନେକ ବିଭାଗର ମୁଖ୍ୟମାନେ କାଳାଦୁଙ୍ଗୀକୁ ଧାଇଁଆସି ଲାଗିଲେ । ସର୍ବୋପରି କଳପତ୍ର ବାହିନୀର ଅଧିନାୟକ ଗୋଟିଏ କମ୍ପାନୀ ସ୍ୱତନ୍ତ୍ର ଦେହରକ୍ଷୀଙ୍କୁ କାଳାଦୁଙ୍ଗୀରେ ମୁତୟନ କରିବେ ବୋଲି ଶୁଣାଇଦେଇ ମୋତେ ସବୁଠାରୁ ବେଶି ଭୟଭୀତ କରିଦେଲେ ।

ବଡ଼ଲାଟଙ୍କ ଆଗମନ ପାଇଁ 'ବହୁତ ବଡ଼ ବନ୍ଦୋବସ୍ତ କରାଏ' କରିବାକୁ ପଡ଼ିବ ବୋଲି ବାହାଦୂର କିଛି ଭୁଲ୍ କହିନଥିଲା । ସେ 'ବହୁତ ବନ୍ଦୋବସ୍ତ' କିନ୍ତୁ ଏତେ ବ୍ୟାପକ ଓ ବିସ୍ତୃତ ଆକାର ଧାରଣ କରିବ, ତାହା ସ୍ୱପ୍ନରେ ମୁଁ ଭାବିନଥିଲି । ସେ ଯାହାହେଉ, ସମସ୍ତଙ୍କ ସମ୍ମିଳିତ ଓ ସୁସଂହତ ଉଦ୍ୟମଯୋଗୁଁ କେଉଁଠାରେ ବିଶୃଙ୍ଖଳା ବା ବିଭ୍ରାଟ ନ ଘଟି ଆୟୋଜନ ଅବିଚ୍ଛିନ୍ନ ଭାବେ ଆଗେଇ ଚାଲିଲା । ବଡ଼ଲାଟଙ୍କ ରହଣି ଭିତରେ ସମୁଦାୟ ଚାରିଥର ଘଉଡ଼ାର ଆୟୋଜନ କରାଯାଇ ଚାରୋଟି ବାଘ ମରାହେଲେ । ଘଉଡ଼ାରେ ଏତେଦୂର ସଫଳତା ହାସଲ କରିବା ଯେ କେତେ ଦୁରୂହ ବ୍ୟାପାର, ସେ ଦିଗରେ ଅଭିଜ୍ଞତା ଥିବା ଲୋକମାନେ ହିଁ ତାହା ଉପଲବ୍ଧି କରିପାରିବେ । ବାଘ ମାରିବା ତ ଦୂରର କଥା, ସେଦିନଯାଏ ଲାଟ ସାହେବ ବା ତାଙ୍କ ପରିବାରର କେହି ଜଙ୍ଗଲରେ ବାଘଟିଏ କେବେ ଦେଖି ନ ଥିଲେ । ସମ୍ପୂର୍ଣ୍ଣ ଅଭିଜ୍ଞ ହୋଇ ମଧ୍ୟ ଅଯଥା ବା ଅତ୍ୟଧିକ ଚାଲଚଳନା ନ କରି ଲାଟଦମ୍ପତି ଓ ତାଙ୍କର ବଡ଼ ଝିଅ ଦୁଇଜଣ ଯେ ପ୍ରତ୍ୟେକେ ଗୋଟିଏ କରି ବାଘ ମାରିପାରିଲେ—ତାହା କମ୍ କଥା ନୁହେଁ । ଶେଷକୁ ରହିଗଲେ ବଡ଼ଲାଟଙ୍କ କନିଷ୍ଠା କନ୍ୟା ଲେଡ଼ି ଜୋଆନ୍ (ବଣ୍ଟି) ହୋପ୍ । ଶିକାରର ଦେହ ଶେଷ ଦିନଟିରେ ଖାସ୍-କରି ତାଙ୍କର ପାଇଁ ଘଉଡ଼ାର ଆୟୋଜନ ହୋଇଥିଲା ।

ସେ ଦିନର ଘଉଡ଼ା ପାଇଁ ବଚ୍ଛାଯାଇଥିବା ଜଙ୍ଗଲ ଏକଦା ବୋଆର୍ ନଦୀଶଯ୍ୟାର ଏକ ଅଂଶ ଥିଲା । ପଙ୍କମାଟିରେ ନଈ ପୂରିଗଲାପରେ ସେଥିରେ ବଡ଼ ବଡ଼ ଗଛ ଉଠି ଓ ଝାଟି ମାଡ଼ିଯାଇ ଗହଳ ଜଙ୍ଗଲ ସୃଷ୍ଟି ହୋଇଥାଏ । ଜଙ୍ଗଲ ମଝି ମଝିରେ ଚକଡ଼ା ଚକଡ଼ା ନଳବଣ ଓ ଦାରୁକମଳାର ଛୋଟ ଛୋଟ ଡୋଟାଗୁଡ଼ିଏ । ପୂର୍ବେ ନଈବନ୍ଧ ଯେଉଁଠାରେ ଥିଲା, ଶିକାରୀ ଓ ସାହାଯ୍ୟକାରୀଙ୍କ ପାଇଁ ସେଠାରେ ସମୁଦାୟ ପାଞ୍ଚୋଟି ମଞ୍ଚା ଆମେ ବାନ୍ଧିଥିଲୁ ଓ ନଦୀଶଯ୍ୟାରେ ଥିବା ଅନୁଚ ଜଙ୍ଗଲରୁ ଜନ୍ତୁଙ୍କୁ ମଞ୍ଚା ଆଡ଼କୁ ଘଉଡ଼ାଇ ଆଣିବାର ଆୟୋଜନ କରିଥିଲୁ ।

Digitized by srujanika@gmail.com

ଜଙ୍ଗଲରେ ବାଘର ବେଶି ପାଖଦେଇ ଚଲାପ୍ରଚଲ ହେଲେ ସେ ତରକି କରି ସେଠାରୁ ପଳାଇଯାଏ । ସାମାନ୍ୟ ସେତିକି ଅସାବଧାନତା ହେତୁ ଶିକାର ଉଦ୍ୟମ ବିଫଳ ହେବାର ବହୁ ଦୃଷ୍ଟାନ୍ତ ମୁଁ ଦେଖିଛୁ । ତେଣୁ ଶିକାରୀ ଓ ସାହାଯ୍ୟକାରୀମାନଙ୍କୁ ଜଙ୍ଗଲଠାରୁ ଦୂର ଏକ ବୁଲଣି ବାଟରେ ନେଇ ବିପରୀତ ଦିଗରୁ ମଞ୍ଚା ପାଖରେ ପହଞ୍ଚାଇଲି । ପଳାଇଯିବାର ବାଟଗୁଡ଼ିକୁ ଆଗୁଳି ମଞ୍ଚାଆଡ଼କୁ ବାଘକୁ ବାଟେଇଦେବା ପାଇଁ ଘାଟୀଜାଗାମାନଙ୍କରେ ଗଛଗୁଡ଼ିଏ ବାଛି ସେଥିରେ ଜଗୁଆଳି ମୁତୟେନ କରିବାକୁ ବ୍ୟବସ୍ଥା ହୋଇଥାଏ । ମଞ୍ଚା ପାଖରୁ ଜଗୁଆଳିମାନେ ବାଣ୍ଟିହୋଇ ନିଜ ନିଜ ଗଛଆଡ଼କୁ ଚାଲିଗଲେ । ଲାଟସାହେବଙ୍କ ବ୍ୟକ୍ତିଗତ ସହକାରୀ ପିଟର୍ ବୋର୍ ଉଇନ୍, ବାହାଦୂର ଓ ମୁଁ ବନ୍ଧୁକଦାରମାନଙ୍କୁ ମଞ୍ଚାରେ ବସାଇଲୁ । ପ୍ରଥମ ଓ ଦ୍ୱିତୀୟ ମଞ୍ଚାରେ ଯଥାକ୍ରମେ ଲେଡ଼ି ଆନ୍ ଓ ବଡ଼ଲାଟ ବସିଲେ । ତୃତୀୟ ମଞ୍ଚାଟି ଗୋଟିଏ ଅଳ୍ପ ଉଚ୍ଚ ରୁଗୁଡ଼ିଆ କୋଳି-ଗଛରେ ବନ୍ଧା ହୋଇଥିଲା । ପୂର୍ବ ପରିକଳ୍ପନା ଅନୁସାରେ କଥା ଥିଲା ଯେ ବାହାଦୂର ସେଥିରେ ବସିବ ଓ ବାଘକୁ ଆଗୁଳି ଚତୁର୍ଥ ମଞ୍ଚାଆଡ଼କୁ ବାଟେଇ ଦେବ । ବାଘ ମାରିବାର ପୂର୍ଣ୍ଣ ସୁଯୋଗ ଦେବାପାଇଁ ବର୍ଣ୍ଣିଙ୍କୁ ଚତୁର୍ଥ ମଞ୍ଚାରେ ହିଁ ବସାଇବାକୁ ପୂର୍ବରୁ ସ୍ଥିର କରିଥିଲି ।

ବାଘ ଜଙ୍ଗଲର ଯେଉଁଠାରେ ଅଛି ବୋଲି ଅନୁମାନ କରିଥିଲି, ଶିକାର-ପରିଟିଏ ସେଠାରୁ ସଳଖରେ ତୃତୀୟ ମଞ୍ଚାମୂଳକୁ ପଡ଼ିଥାଏ । ବାଘ ସେହି ବାଟେ ହିଁ ଆସିବ ବୋଲି ଆଶା ଥିଲା । ମଞ୍ଚାଟି ଠିକ୍ ମୋ ମୁଣ୍ଡ ଉପରେ ଥାଏ; ଡାଳୁ ହାତ ବଢ଼ାଇ ମୁଁ ତାକୁ ସହଜରେ ଛୁଇଁପାରୁଥାଏ । ଭୂଇଁରୁ ମୋଟେ ଛଅଫୁଟ ଉଚ୍ଚରେ ମହାବଳ ବାଘର ଠିକ୍ ସାମନାରେ ବସିବା ବନ୍ଧୁକଦାର ପାଇଁ ଆଦୌ ନିରାପଦ ନୁହେଁ । କିନ୍ତୁ ଦକ୍ଷ ଶିକାରୀ ଜଣେ ଜଗୁଆଳିଭାବେ ସେଥିରେ ବସିବାରେ କୌଣସି ବିପଦ ନ ଥିବାରୁ ବାହାଦୂରକୁ ହିଁ ସେହି ମଞ୍ଚାରେ ବସାଇବି ବୋଲି ପୂର୍ବରୁ ସ୍ଥିର କରିଥିଲି । କିନ୍ତୁ ବାହାଦୂର ଠିକ୍ ମଞ୍ଚାରେ ଚଢ଼ିବାବେଳକୁ ମୁଁ ହଠାତ୍ କାହିଁକି ପୂର୍ବ ନିଷ୍ପତ୍ତିରେ ଏକ ଅଚାନକ ପରିବର୍ତ୍ତନ କରି ପିଟର୍ ଓ ବର୍ଣ୍ଣିକୁ ସେଥିରେ ବସିବାକୁ କହିଲି । ଏତେ ଅଳ୍ପ ଉଚ୍ଚରେ ବସିବାର ବିପଦ ବିଷୟରେ ବୁଝାଇ କହିବା ପରେ ମଧ୍ୟ ବର୍ଣ୍ଣି ବିନା ଶୋଚନାରେ ମୋ ପ୍ରସ୍ତାବରେ ରାଜି ହୋଇଗଲେ । ଶିକାରପରିର ନିର୍ଦ୍ଦିଷ୍ଟ ଗୋଟିଏ ସ୍ଥାନ ତାଙ୍କୁ ଦେଖାଇଦେଇ କହିଲି ଯେ ସେହିଠାରେ ମୁଁ ଚିହ୍ନଟାଏ ଦେବି ଓ ବାଘ ଠିକ୍ ଚିହ୍ନ ଉପରେ ପହଞ୍ଚିବାମାତ୍ରେ ସେ ଖୁବ୍ ସାବଧାନରେ ତା ବେକମୂଳକୁ ଗୁଳି କରିବେ । ବର୍ଣ୍ଣି ନିର୍ଦ୍ଦେଶ ମାନି କାର୍ଯ୍ୟ କରିବେ ବୋଲି କଥା ଦେଲେ । ପିଟର୍‌ଙ୍କ ସହିତ ଧରାଧରି କରି ତାଙ୍କୁ ମଞ୍ଚାରେ ବସାଇଲା ପରେ ପିଟର୍‌ଙ୍କୁ ସେଥିରେ ଚଢ଼ିବାକୁ ସାହାଯ୍ୟ କଲି । ପିଟର୍ ମୋ ସହିତ ଘଉଡ଼ାରେ ଯୋଗଦେବେ ବୋଲି ପୂର୍ବରୁ କଥା ଥିଲା । ତେଣୁ ସଙ୍ଗରେ ସେ ବନ୍ଧୁକ ଆଣି ନ ଥିବାରୁ ମୋର ୪୫୦।୪୦୦ ଡ. ବ. ରାଇଫଲ୍‌ଟି ସେ ନେଲେ । ବର୍ଣ୍ଣି ମଧ୍ୟ ଠିକ୍ ସେହିପରି ରାଇଫଲ୍‌ଟିଏ

Digitized by srujanika@gmail.com

ଧରିଥାଆନ୍ତି । ମଞ୍ଚାରେ ଦୁହେଁ ଠକାଠ ହୋଇ ସୁବିଧାରେ ବସିବା ପରେ ବନ୍ଧୁକୁ ଶିକାରୀଙ୍କୁ ଗଛଡ଼ାଳ ଓ ଶୁଖିଲା କାଠ ଖଣ୍ଡିଏ ଦେଇରେ ଥୋଇ ବର୍ଣ୍ଣିକୁ ଅନାଇ ଚଣ୍ଡ ରହିଲ ବୋଲି ଜଣାଇଲି । ବର୍ଣ୍ଣି କାଠିଟିକୁ ଦେଖିଛନ୍ତି ଓ ତାର ଉଦ୍ଦେଶ୍ୟ ବୁଝିଛନ୍ତି ବୋଲି ମୁଣ୍ଡ ହଲାଇ ମୋତେ ଜଣାଇ ଦେଲେ ।

ଲେଡ଼ ଜୋଆନ୍‌ଙ୍କୁ ସଙ୍ଗରେ ନେଇ ବାହାଦୂର ଓ ମୁଁ ଚତୁର୍ଥ ମଞ୍ଚା ନିକଟକୁ ଗଲୁ । ଭୂଇଁରୁ କୋଡ଼ିଏ ଫୁଟ ଉଚ୍ଚରେ ବନ୍ଧା ହୋଇଥିବା ସେ ମଞ୍ଚାରୁ ତୃତୀୟ ମଞ୍ଚାଟି ସ୍ପଷ୍ଟ ଦେଖାଯାଉଥାଏ । ଦୁଇ ମଞ୍ଚା ଓ ଜଙ୍ଗଲଧାର ମଝିରେ ଥିବା ଷାଠିଏ ଗଜ ଓସାର ଖୋଲା ପଡ଼ିଆଟିରେ କାଁ-ଭାଁ ଗଛ କେତୋଟି ଛଡ଼ା ଦୃଷ୍ଟିପଥରେ ଅନ୍ତରାୟ ସୃଷ୍ଟି କରିବା ଭଳି ପ୍ରତିବନ୍ଧକ କିଛି ନ ଥିଲା । ବାଘ ଜଙ୍ଗଲରୁ ବାହାରିବା ମାତ୍ରେ ମଞ୍ଚା ଦୁଇଟିରୁ ସ୍ପଷ୍ଟ ଦେଖାଯିବ । ଖୋଲା ମେଳରେ ଷାଠିଏ ଗଜ ପାରହେବା ଭିତରେ ବର୍ଣ୍ଣି ତାକୁ ସହଜରେ ଶେଷ କରିପାରିବେ ବୋଲି ନିଶ୍ଚିତ ଆଶା ଥିଲେ ମଧ୍ୟ ତାଙ୍କ ମଞ୍ଚାଟି ନୂଆଁଣିଆ ହୋଇଥିବା ଯୋଗୁ ମୋ ମନକୁ ପାପ ଛୁଉଁଥାଏ । ତେଣୁ ଚତୁର୍ଥ ମଞ୍ଚାରେ ତାଙ୍କୁ ବସାଇବା ବେଳେ ଲେଡ଼ ଜୋଆନଙ୍କୁ ଅନୁରୋଧ କଲି ଯେ ବର୍ଣ୍ଣିଙ୍କ ପ୍ରଥମ ଗୁଳିରେ ବାଘ ତଳେ ପଡ଼ି ନଗଲେ ସେ ବିଳମ୍ବ ନକରି ତତ୍‌କ୍ଷଣାତ୍ ଗୁଳି ଚଳାଇବେ ଓ କୌଣସିମତେ ବାଘକୁ ବର୍ଣ୍ଣିଙ୍କ ମଞ୍ଚାର ପାଖ ପଶିବାକୁ ଦେବେ ନାହିଁ । ଲେଡ଼ ଜୋଆନ୍ ସେ ଦିଗରେ ଆଶଙ୍କା ନ ରଖିବାକୁ ମୋତେ ଆଶ୍ୱାସନା ଦେଇ କହିଲେ ଯେ ବାଘକୁ ଅଟକାଇ ଦେବାକୁ ସେ ଯଥାସାଧ୍ୟ ଚେଷ୍ଟା କରିବେ ।

ବନ୍ଧୁକଦାର୍‌ମାନଙ୍କୁ ମଞ୍ଚାରେ ବସାଇ ସାରି ପଞ୍ଚମ ଓ ଶେଷ ମଞ୍ଚାଟିରେ ବାହାଦୂର୍‌କୁ ରଖାଇଲି ଓ ଦରକାର ପଡ଼ିଲେ ବାଘକୁ ତିନି ନମ୍ବର ମଞ୍ଚା ଆଡ଼କୁ ବାହୁଡ଼ାଇ ଦେବାକୁ ତାକୁ ନିର୍ଦ୍ଦେଶ ଦେଲି । ତା'ପରେ ଜଙ୍ଗଲ ବାହାରେ ବାହାରେ ବୁଲି ବୋଅର୍ ନଦୀକୂଳରେ ଯାଇ ପହଞ୍ଚିଲି । ଯେଉଁ ଗଛରେ ମୁଁ ଖେଳୁଥି ମାଛ ମାରିଥିଲି—ତା'ର ପାଖରେ ମୋହନର ତତ୍ତ୍ୱାବଧାନରେ ଷୋହଳଟି ହାତୀ ଘଉଡ଼ାରେ ଲଗିବା ପାଇଁ ଅପେକ୍ଷା କରି ନଈବାଲିରେ ଛିଡ଼ା ହୋଇଥାଆନ୍ତି । ମୋହନ ଗତ ତିରିଶ ବର୍ଷ ଧରି ଉଇଣ୍ଡହାମ୍‌ଙ୍କ ମୁଖ୍ୟ ବାଣୁଆଙ୍କ ଭାବେ କାର୍ଯ୍ୟ କରିଥାଏ । ମହାବଳ ବାଘ ବିଷୟରେ ସମଗ୍ର ଭାରତବର୍ଷରେ ତାହାଠାରୁ ବେଶି କେହି ଜାଣି ନ ଥିବେ । ମୋହନ ମୋର ଅପେକ୍ଷାରେ ଥିଲା; ପ୍ରାୟ ତିନିଶ ମାଇଲ ଦୂରରୁ ମୁଁ ଟୋପି ହଲାଇ ଡାକଦେବାମାତ୍ରେ ହାତୀଙ୍କୁ ସେ ମୋ ଆଡ଼କୁ ଚଳାଇଆଣିଲା । ପଥରଭରା ନଦୀସ୍ରୋତରେ ହାତୀଙ୍କୁ ତିନିଶ ମାଇଲ ଚଳାଇ ଆଣିବାକୁ ତାକୁ ଯେତିକି ସମୟ ଲାଗିଲା, ସେ ଭିତରେ ସିଗାରେଟ୍ ଖଣ୍ଡିଏ ଲଗାଇ ଆୟୋଜନର ବିଭିନ୍ନ ବ୍ୟବସ୍ଥାଗୁଡ଼ିକୁ ମନେ ମନେ ଗଡ଼ାଇବାକୁ ଲାଗିଲି ।

ତୃତୀୟ ମଞ୍ଚାଟି ବିଷୟରେ ଯେତିକି ବେଶି ଭାବିଲି, ମନକୁ କାହିଁକି ସେତିକି ବେଶି ପାପ ଛୁଇଁଲା ଓ ଜୀବନରେ ପ୍ରଥମ ଥର ପାଇଁ ଦୁଇଟି ଜୀବନକୁ ମୁଁ ବିପନ୍ନ କରୁଛି ବୋଲି

Digitized by srujanika@gmail.com

ଏକ ତୀବ୍ର ଆଶଙ୍କା ମନରେ ବାରମ୍ବାର ଉଦ୍ରେକ ହେବାକୁ ଲଗିଲା । କାଲାଢୁଙ୍ଗୀ ଆସିବା ପୂର୍ବରୁ ତାଙ୍କ ଶରଣରେ ଆସିଥିବା ବ୍ୟକ୍ତିମାନଙ୍କ କାର୍ଯ୍ୟକଲାପ ଓ ଆଚରଣବିଧି ପାଇଁ ନିର୍ଦ୍ଦିଷ୍ଟ ନିୟମମାନ ପ୍ରସ୍ତୁତ କରିଦେବାକୁ ବଡ଼ଲାଟ୍ ନିଜେ ମୋତେ ଅନୁରୋଧ କରିଥିଲେ ଏବଂ ବୟସ ଓ ପଦମର୍ଯ୍ୟାଦା ନିର୍ବିଶେଷରେ ବଡ଼ଲାଟଙ୍କ ସମେତ ସମସ୍ତେ ସେହି ନିୟମାବଳୀ ଅକ୍ଷରେ ଅକ୍ଷରେ ପାଳନ କରି ଚାଲିଥିଲେ । ତାହା ଫଳରେ ଘନବନାବୃତ ଏକ ବିସ୍ତୃତ ପର୍ବତମୟ ଅଞ୍ଚଳରେ ଶିକାର କରିବା ଏବଂ ଗଭୀର ନଦୀମାନଙ୍କରେ ମାଛ ମାରିବା ଭିତରେ କୌଣସି ଦୁର୍ଯୋଗ ଘଟିବା ଦୂରେ ଥାଉ, ସମୁଦାୟ ଚଉଶହ ଆଗନ୍ତୁକଙ୍କ ଭିତରୁ କାହା ପ୍ରତି ଟିକିଏ ଆଞ୍ଚ ବି ଆସି ନ ଥିଲା । ଆଜି ଅଭିଯାନର ଶେଷ ଦିନ । ହଠାତ୍ ଗୋଟିଏ ବଦ୍‌ଖିଆଲର ବଶବର୍ତ୍ତୀ ହୋଇ ଅବ୍ୟବସ୍ଥା ଘଟାଇବା ଛଡ଼ା ବିଷମ ବିପଦ ମଧ୍ୟ ବରଣ କରି ଆଣିଲି । ପ୍ରତିଶ୍ରୁତି ଦାୟିତ୍ୱର ଖିଲାପ କରିଥିବାର ଏକ ଅତି ଅସ୍ୱସ୍ତିକର ମନସ୍ତାପ କ୍ରମେ ତୀବ୍ରତର ହୋଇ ମୋତେ ବିବ୍ରତ କରିବାକୁ ଲାଗିଲା । ମହାବଳ ବାଘକୁ ସାମନାରୁ ଗୁଳି କରିବା ଅତୀବ ବିପଜ୍ଜନକ । ଏବେ ଷୋହଳ ବର୍ଷ ବୟସର ଜଣେ ତରୁଣୀ ଏବଂ ଅର୍ବାଚୀନ ଜଣେ ଯୁବକକୁ ଆହତ ମହାବଳ ବାଘର ସମ୍ମୁଖୀନ ହେବାକୁ ଛାଡ଼ିଦେବାଦ୍ୱାରା ସେମାନଙ୍କ ପ୍ରତି ଯେପରି ଘୋର ବିପଦ ଟେକି ଦେଇ ଆସିଲି, ଜୀବନକାଳ ଭିତରେ ତ କାହାରିକୁ ମୁଁ ସେଭଳି ବିପଦରେ ପକାଇନାହିଁ !!

ପିଟର ଓ ବର୍ଣ୍ଣିଙ୍କର ସାହସର ଅଭାବ ନଥିଲା; ଅଳ୍ପ ଉଚ୍ଚ ମଞ୍ଚାଟିରେ ବସିବାର ବିପଦ ସମ୍ବନ୍ଧରେ ମୁଁ ବୁଝାଇ କହିଲି ପରେ ମଧ୍ୟ ଦୁହେଁ ବିନା ଶୋଚନାରେ ସେଥିରେ ବସିବାକୁ ରାଜି ହୋଇଥିଲେ । ତେବେ ଯେଉଁଭଳି ପରିସ୍ଥିତି ଉପୁଜିବ ବୋଲି ମୁଁ ଆଶଙ୍କା କରୁଥିଲି, ସେଥିରୁ ନିସ୍ତୃତି ପାଇବା ପାଇଁ ସାହସ ଅପେକ୍ଷା ରାଇଫଲ ଚାଳନାରେ ଦକ୍ଷତା ବେଶି ଦରକାର । ସେ ଦିଗରେ ସେ ଦୁହିଁଙ୍କର ସାମର୍ଥ୍ୟ କେତେ—ତାହା ସମ୍ବନ୍ଧରେ ମୋର କୌଣସି ଧାରଣା ନଥିଲା । ମୋହନ ହାତୀ ନେଇ ପାଖରେ ପହଞ୍ଚିଲା ବେଳକୁ ଆଶଙ୍କା ଓ ଅନୁଶୋଚନା କ୍ରମେ ମର୍ମଦହନରେ ପରିଣତ ହୋଇ ମୋତେ ଏତେ ଦୁର୍ବଳ ଓ ବିଚଳିତ କରିଦେଇଥିଲା ଯେ ଘଉଡ଼ା ଚଲାଇବି ନା ସବୁ ଆୟୋଜନ ବାତିଲ କରିଦେବି—ମନଧ୍ୟାନ ଦେଇ ମୁଁ ତାହା ହିଁ ବିଚାର କରୁଥିଲି । ମୋହନକୁ ମନକଥା ଖୋଲି କହିଲି । ଅଳ୍ପକିଛି ସମୟ ଭାବିବା ପରେ ସେ ଦୃଢ଼ସ୍ୱରରେ ମତ ଦେଲା, "ବ୍ୟସ୍ତ ହୁଅନ୍ତୁ ନାହିଁ ସାହେବ ! ସବୁ ଠିକ୍ ହୋଇଯିବ ।"

ମାହୁନ୍ତମାନଙ୍କ ପାଖକୁ ଡାକି ବୁଝାଇ କହିଲି ଯେ ବାଘ ଯେପରି ତରକି ନ ଯାଏ —ତାହା ଆମକୁ ଦେଖିବାକୁ ପଡ଼ିବ । ନାଳିବନ୍ଧରେ ସେମାନେ ମୋ ଦୁଇ ପାଖେ ଛାଡ଼ ଛାଡ଼ ହୋଇ ଧାଡ଼ି ବାନ୍ଧିବେ । ମୁଁ ଟୋପି ହଲାଇ ସଙ୍କେତ ଦେବାମାତ୍ରେ ସମସ୍ତେ ଏକ ସଙ୍ଗରେ ଥରେ କୁହାଟ ମାରି ତାଳି ବଜାଇବାକୁ ଲାଗିବେ । କୁହାଟ ଦ୍ୱାରା ବାଘକୁ ନିଦରୁ ଉଠାଇଦେବା

Digitized by srujanika@gmail.com

ଦେବା ସଙ୍ଗେ ବନ୍ଧୁକଦାରମାନଙ୍କୁ ଆମେ ସତର୍କ କରାଇଦେବୁ । ମୁଁ ଟୋପିଟିକୁ ମୁଣ୍ଡରେ ଦେବା ପରେ ଯାଇ ତାଳମରା ବନ୍ଦ ହେବ । ଅଳ୍ପ ବ୍ୟବଧାନରେ କେତେଥର ଏହିପରି କରିବା ଭିତରେ ବାଘ ଯଦି ହଟିବାକୁ ଆରମ୍ଭ ନ କରେ, ତେବେ ମୁଁ ଅଗ୍ରସର ହେବାକୁ ସଙ୍କେତ ଦେବି ଓ ସମ୍ପୂର୍ଣ୍ଣ ନୀରବତା ରକ୍ଷାକରି ମୋ ସହିତ ସେମାନେ ଧୀରେ ଧୀରେ ଆଗେଇବାକୁ ଲାଗିବେ ।

ଧାଡ଼ି ମଝିରେ ଅଜ୍‌ମତ୍‌ର ହାତୀରେ ମୁଁ ବସିଲି; ଅନ୍ୟ ହାତୀଗୁଡ଼ିକ ଦୁଇପାଖରେ ଧାଡ଼ି ବାନ୍ଧି ଛିଡ଼ାହେବା ପରେ ମୁଣ୍ଡରୁ ଟୋପି କାଢ଼ି ହଲାଇଦେଲି । ମାହୁନ୍ତମାନେ ଉଚ୍ଚସ୍ୱରରେ କୁହାଟ ଦେଇ ତାଳି ମାରିବାକୁ ଲାଗିଲେ । ତିନିଚାରି ମିନିଟ୍ କାଳ ତାଳି ବାଜିବା ପରେ ଟୋପି ମୁଁ ମୁଣ୍ଡରେ ଦେଲି । ଘଉଡ଼ା ପାଇଁ ବଛାହୋଇଥିବା ଜଙ୍ଗଲଟି ପ୍ରାୟ ପାଖଶହ ଗଜ ଲମ୍ବ ଓ ତିନିଶହ ଗଜ ଓସାର । ସେଥିରେ ସମ୍ବର, ହରିଣ, କୁଟ୍ରା, ମୟୂର ଓ ବଣକୁକୁଡ଼ା ଆଦି ନାନା ପଶୁପକ୍ଷୀ ବହୁ ସଂଖ୍ୟାରେ ବାସ କରୁଥିବା ମୋତେ ଜଣାଥାଏ । ଗମ୍ଭୀର ଉତ୍କଣ୍ଠାର ସହ ଅପେକ୍ଷା କରିବା ଭିତରେ ବାଘର ଉପସ୍ଥିତି ବା ଗତିବିଧି ସମ୍ବନ୍ଧରେ କୌଣସି ପଶୁପକ୍ଷୀଙ୍କଠାରୁ ସଙ୍କେତ କିଛି ପାଇଲି ନାହିଁ । ପାଖମିନିଟ୍ ପରେ ପୁଣି ଥରେ ଟୋପି ହଲାଇ ସଙ୍କେତ ଦେଲି । ତାଳି ବାଜିବାର ମିନିଟିଏ ବା ଦୁଇ ମିନିଟ୍ ପରେ ଦୂରରୁ ରାଇଫଲର ଆବାଜ ଭାସିଆସିଲା । ତାହା ଶୁଣିବାମାତ୍ରେ ମୁଁ ସଙ୍ଗେ ସଙ୍ଗେ ସେକେଣ୍ଡ ଗଣିବାକୁ ଆରମ୍ଭ କରିଦେଲି । ଗୁଳିଗୁଳିନା ଭିତରେ ସମୟର ବ୍ୟବଧାନଦ୍ୱାରା ପରିସ୍ଥିତି ସମ୍ବନ୍ଧରେ ଅନେକ କିଛି ଧାରଣା କରିହୁଏ । ଏକ, ଦୁଇ, ତିନି କରି ପାଖ ସେକେଣ୍ଡ ପର୍ଯ୍ୟନ୍ତ ଗଣିବା ଭିତରେ ଆଉ ବନ୍ଧୁକ ଆବାଜ ନ ହେବାରୁ ଆଶ୍ୱସ୍ତିର ଦୀର୍ଘଶ୍ୱାସ ଛାଡ଼ୁଛି, ଏତିକବେଳେ ଲଗ୍ ଲଗ୍ ପୁଣି ଦୁଇଗୋଟି ଗୁଳି ଫୁଟିବାର ଶବ୍ଦ ଶୁଣି ଆଶଙ୍କାରେ ମନ ଭରିଗଲା । ପୁଣି ଥରେ ସେକେଣ୍ଡ ଗଣି ଗଣି ଚାରିରେ ପହଞ୍ଚିଛି, ଏତିକବେଳେ ଚତୁର୍ଥ ଥର ଗୁଳି ଫୁଟିବାର ଶବ୍ଦ ହୋଇ ମୋତେ ସମ୍ପୂର୍ଣ୍ଣ ଆତଙ୍କିତ କରିଦେଲା । ପ୍ରଥମ ଓ ଶେଷ ଗୁଳି ଦୁଇଟି ଫାଏର୍ ହେବାବେଳେ ବନ୍ଧୁକ ମୋ ଆଡ଼କୁ ମୁହାଁଇଥିଲା । ଅନ୍ୟ ଦୁଇଗୋଟି ଗୁଳି ମୋଠାରୁ ବିପରୀତ ଦିଗକୁ ମୁହାଁଇଥିବା ବନ୍ଧୁକରୁ ଫାଏର୍ ହୋଇଥିବାରୁ ଲେଡ଼ି ଜୋଆନ୍ ହିଁ ତାହାକୁ ଫାଏର୍ କରିଥିବେ । ବନ୍ଧିଙ୍କ ମଞ୍ଚା ନିକଟରେ ନିଶ୍ଚୟ କୌଣସି ଅନର୍ଥ ଘଟିଛି ଏବଂ ଲେଡ଼ି ଜୋଆନ୍‌ଙ୍କୁ ଦୁଇ ଥର ଗୁଳି ଚଳାଇବାକୁ ପଡ଼ିଛି ଜାଣି ଆତଙ୍କରେ ଅବଶ ହୋଇ ପଡ଼ିଲି ।

ଭୟରେ ଛାତି ଦପ୍‌ଦପ୍ ହେଉଥାଏ; ତୁଣ୍ଡରୁ କଥାପଦେ ବି ବାହାରୁ ନ ଥାଏ । ହାତୀଗୁଡ଼ିକୁ ମୋହନ୍ କମା ଛାଡ଼ିଦେଇ ଅଜ୍‌ମତ୍‌କୁ ମଞ୍ଚା ନିକଟକୁ ହାତୀ ଦଉଡ଼ାଇବାକୁ ଆଦେଶ ଦେଲି । ଅଜ୍‌ମତ୍ ଓ ତାର ହାତୀ ବାଘ ଶିକାର ପାଇଁ ବ୍ରୋଡ୍ ଉଇଣ୍ଡହାମ୍‌ଙ୍କଠାରୁ

Digitized by srujanika@gmail.com

ତାଲିମ୍ ପାଇଥାନ୍ତି । ବାଘ ପ୍ରତି ତାଙ୍କର ଡର ହେଲେ ଡରଭୟ ନ ଥାଏ । ହାତୀ ଖାଲ ଢିପ, ପାଣି ପଥର ନ ମାନି ଅମଡ଼ାମଡ଼ାରେ ପଶି ଧାଇଁବାବେଳେ ମୋ ମନ ତା'ଠାରୁ ଆହୁରି ବେଗରେ ମଞ୍ଚା ନିକଟରେ ପହଞ୍ଚି ଯାଇ କଳ୍ପନାଚକ୍ଷୁରେ ସେଠାରେ ନାନା ଭୟାବହ ଦୃଶ୍ୟ ସୃଷ୍ଟିକରିବାକୁ ଲାଗିଲା । ଆଗକୁ ଟିକିଏ ନଳବଣ; ସେ ଭିତରେ ପଶିବା ପୂର୍ବରୁ ହାତୀ ସାମାନ୍ୟ ଇତସ୍ତତଃ ହେବା ଦେଖି ଅଜମତ୍ ଖୁସାଗଲାରେ ମୋ କାନରେ କହିଲା, "ହାତୀ ବାଘର ଗନ୍ଧ ପାଉଛି । ଆପଣ ବନ୍ଧୁକ ଆଣିନାହାନ୍ତି । ହାଉଦାକୁ ଶକ୍ତଭାବେ ଆଶ୍ରା କରି ଧରନ୍ତୁ ।"

ବନ୍ଧୁକଦାରମାନଙ୍କୁ ମଞ୍ଚାରେ ବସାଇବାବେଳେ ପ୍ରତ୍ୟେକଙ୍କୁ ଗୋଟିଏ କରି ରେଲବାଇ ସୁସୁରି ଦେଇ କହିଥିଲି ଯେ ସାହାଯ୍ୟ ଦରକାର ପଡ଼ିଲେ ସେମାନେ ସୁସୁରି ବଜାଇ ମୋତେ ସଙ୍କେତ ଦେବେ । ମଞ୍ଚାଠାରୁ ଶହେ ଗଜକୁ ପାଖେଇ ଆସିବା ଭିତରେ ଥରେ ହେଲେ ସୁସୁରି ଶବ୍ଦ ଶୁଣି ନଥିଲେ ମଧ୍ୟ ତା' ଉପରେ ବିଶେଷ ଗୁରୁତ୍ୱ ଦେଇନାହିଁ । ଭୟତ୍ରସ୍ତ ହୋଇପଡ଼ିଥିବା ଲୋକଙ୍କ ପକ୍ଷରେ ସୁସୁରିଟିକୁ ମଞ୍ଚାରୁ ଗଳାଇପକାଇବା ବା ସଙ୍କେତ ଦେବାକୁ ଭୁଲିଯିବା ଆଦୌ ଅସମ୍ଭବ ନୁହେଁ । ତା'ପରେ ଗଛଫାଙ୍କରୁ ଲେଡ଼ି ଜୋଆନଙ୍କୁ ଦେଖିଦେଲି; ଆଣ୍ଠୁ ଉପରେ ରାଇଫଲ ଥୋଇ ସେ ନିଶ୍ଚିନ୍ତ ହୋଇ ବସିଛନ୍ତି ଦେଖି ଆନନ୍ଦ ଓ ଆଶ୍ୱସ୍ତିରେ ଯେପରି ବିଭୋର ହୋଇପଡ଼ିଲି ତାହା ବର୍ଣ୍ଣନା କରିବାକୁ ମୋର ଭାଷା ନାହିଁ । ମୋତେ ଦେଖି ଲେଡ଼ି ଜୋଆନ ଦୁଇହାତ ପ୍ରସାରି କରି ଓ ଅଙ୍ଗୁଳି ଦେଖାଇ ବର୍ଣ୍ଣିଙ୍କ ମଞ୍ଚା ତଳେ ମସ୍ତବଡ଼ ବାଘଟାଏ ମରିପଡ଼ିଥିବା କଥା ଇଙ୍ଗିତଦ୍ୱାରା ସୂଚାଇ ଦେଲେ ।

ସେଦିନ ଶିକାରରେ ଯାହା ଯାହା ଘଟିଗଲା, ଦୀର୍ଘ ପନ୍ଦର ବର୍ଷ ପରେ ତାହା ଆଜି ବର୍ଣ୍ଣନା କଲାବେଳେ ହୃଦଯନ୍ତ୍ରର ସ୍ପନ୍ଦନ ଅଟିଗଲା ପରି ଲାଗୁଛି । ଜଣେ ଯୁବକ ଓ ଦୁଇଟି ତରୁଣୀ ସେ ଦିନ ଅସୀମ ସାହସ ଓ ବନ୍ଧୁକଚାଳନାରେ ଅସାଧାରଣ ନିପୁଣତା ପ୍ରଦର୍ଶନ କରି ନଥିଲେ, ବଡ଼ଲାଟଙ୍କ ଶିକାର ଅଭିଯାନର ଅତି ବିଷାଦମୟ ପରିସମାପ୍ତି ଘଟିଥାଆନ୍ତା ।

ମାହୁନ୍ତମାନଙ୍କ କୁହାଟ ଓ ତାଳିଶବ୍ଦ ବନ୍ଧୁକଦାରମାନେ ଶୁଣିପାରିଥିଲେ । ଆମେ ନୀରବ ହୋଇ ରହିଥିବା ଭିତରେ ବାଘ ଷାଠିଏ ଫୁଟ ଦୂର ବଣଧାରରୁ ବାହାରିପଡ଼ି ଶିକାରୀ-ସରରେ ଧୀରେ ଧୀରେ ଡୁଣ୍ଡାସ୍ ମଞ୍ଚା ଆଡ଼କୁ ଆଗେଇ ଆସିଥିଲା । ଠିକ୍ ନିଭିବନ୍ଧ ତଳେ ସେ ପହଞ୍ଚିଲାବେଳକୁ ଆମେ ପୁଣି ଥରେ କୁହାଟ ମାରିବାକୁ ଆରମ୍ଭ କଲୁ । ବାଘ ଦୁଇମିନିଟ୍ କାଳ ସେଇଠାରେ ଅଟକିଯାଇ ମୁହଁ ଫେରାଇ ଶବ୍ଦକୁ କାନ ଡେରି ଶୁଣିଲା ଏବଂ ସେଆଡ଼ୁ ବିପଦର ବିଶେଷ ଆଶଙ୍କା ନାହିଁ ବୋଲି ଧାରଣା ହେବା ପରେ ପୂର୍ବପରି ମନ୍ଥର ଗତିରେ ବନ୍ଧ ଉପରକୁ ଚଢ଼ିଲା । ଶିକାରୀସରର ଚିହ୍ନିତ ସ୍ଥାନଟିରେ ପହଞ୍ଚିଲାବେଳକୁ ବାଘ ମୁଣ୍ଡ ନୁଆଁଇ ଚାଲୁଥିଲା; ବର୍ଣ୍ଣି ତା ବେକ ଦେଖି ନ ପାରି ତ୍ରୁଟିତଟେ ଗୁଳିଟିଏ ବସାଇଦେଲେ । ବର୍ଣ୍ଣି ବା ପିଟରଙ୍କୁ ଆଉ ଗୋଟିଏ ହେଲେ ଗୁଳି ମାରିବାକୁ ଅବସର ନ ଦେଇ ବାଘ

Digitized by srujanika@gmail.com

ଗର୍ଜନ କରି ତାଙ୍କ ମଞ୍ଚାକୁ ଆକ୍ରମଣ କଲା । ଅଳ୍ପ ଉଚ୍ଚ ଗଛ ଉପରେ ଦୁର୍ବଳ ମଞ୍ଚାଟି ଦୋହଲିବାକୁ ଲଗିଥାଏ; ପିଣ୍ଟର ଓ ବଣ୍ଡି ଗୁଳି ଚଳାଇବା ପାଇଁ ମଞ୍ଚା ତଳବାଟେ ରାଇଫଲ୍ ଚଳାଇବାକୁ ପ୍ରାଣପଣେ ଚେଷ୍ଟା କରୁଥାଆନ୍ତି । ଇତ୍ୟବସରରେ ଜୋଥନ୍ ଧଣଶଳ ଦୂରରୁ ଗୁଳି ଚଳାଇ ବାଘକୁ ତଳେ ପକାଇଦେଲେ ଓ ଭୂଇଁରୁ ସେ ନ ଉଠୁଣୁ ଆଉ ଗୋଟିଏ ଗୁଳି ତା ଦେହରେ ବସାଇ ଦେଇପାରିଲେ । ବାଘ ନଇବନ୍ଧରୁ ତଳକୁ ଗଡ଼ି ଜଙ୍ଗଲ ଆଡ଼େ ଛୁଟି ପଳାଇ ଯାଉ ଯାଉ ବଣ୍ଡି ତା ମୁଣ୍ଡ ପଛରେ ଗୁଳିଗୋଟେ ବସାଇ ତାକୁ ଶେଷ କରିଦେଲେ ।

ଏହି ଅଭିଯାନ ଥିଲା ବଡ଼ଲାଟଙ୍କର କାଲାଡୁଙ୍ଗୀକୁ ପ୍ରଥମ ଆଗମନ । ତାହା ପରଠାରୁ ତାଙ୍କ ପଦାର୍ପଣରେ ଶ୍ରେଷ୍ଠ ଆମ ଗାଁଟି ବହୁବାର ଧନ୍ୟାନ୍ୱିତ ହୋଇଛି ଓ ପରବର୍ତ୍ତୀ ବହୁ ଶିକାର ଅଭିଯାନରେ ଆୟୋଜନର ଦାୟିତ୍ୱ ମୁଁ ତୁଲାଇଛି । କିନ୍ତୁ କୌଣସି ଅଭିଯାନରେ ପ୍ରଥମ ଥର ପରି ମୁଁ ଦୁଃସାହସ ଆଉ କରିନାହିଁ ଏବଂ ଲାଟସାହେବ କିମ୍ବା ଅନ୍ୟ ଅତିଥିଙ୍କମାନଙ୍କ ଜୀବନ ବିପନ୍ନ କରି ମୋତେ ମର୍ମଯାତନା ଭୋଗିକରିବାକୁ ପଡ଼ିନାହିଁ ।

## ଏଗାର

ନଭେମ୍ବରରୁ ମାର୍ଚ୍ଚ ମାସ ଭିତରେ ହିମାଳୟର ପାଦପାର୍ବତୀୟ ଅଞ୍ଚଳମାନ ଯେପରି ଜୀବନ୍ତ ହୋଇଉଠେ, ଅନ୍ୟତ୍ର ତାହା ଦେଖିବାକୁ ମିଳେ ନାହିଁ । ବିଶେଷକରି ଫେବୃୟାରୀ ମାସରେ ସେଠାକାର ଜଙ୍ଗଲ ପାହାଡ଼ ନୂତନ ପ୍ରାଣର ପୁଲକରେ ଭରିଯାଏ । ଆହାର ଓ ଉଷ୍ଣତାର ସନ୍ଧାନରେ ଶୀତଋତୁରେ ତଳ ପାର୍ବତ୍ୟ ସମତଳ ଅଞ୍ଚଳକୁ ଉଡ଼ିଆସିଥିବା ଅସଂଖ୍ୟ ଯାଯାବର ପକ୍ଷୀ ସେ ପର୍ଯ୍ୟନ୍ତ ଉଚ୍ଚ ପର୍ବତସ୍ଥିତ ସେମାନଙ୍କ ବାସସ୍ଥାନକୁ ଫେରି ନ ଥାନ୍ତି । ଶରତ୍ ଓ ଶୀତ ଋତୁରେ ପର୍ଣ୍ଣମୋଚ ବୃକ୍ଷଗୁଡ଼ିକର ନଗ୍ନ ଶାଖାପ୍ରଶାଖାରେ ନୂତନ ପୁଷ୍ପ ଓ ପଲ୍ଲବ ସଞ୍ଚାର ହୋଇ ପ୍ରକୃତିରାଣୀକୁ ସବୁଜ ଓ ଗୋଲାପୀ ରଙ୍ଗର ବାସନ୍ତୀବାସ ପିନ୍ଧାଇଦିଏ । ବୃକ୍ଷଲତା ଓ ପଶୁପକ୍ଷୀଙ୍କ ମର୍ମେ ମର୍ମେ ଏପରିକ ଉତଳା ପବନର ତାଳେ ତାଳେ ଯେଉଁ ଅପୂର୍ବ ମାଦକତା ଭରିଯାଏ, ମନେହୁଏ ସତେ ଅବା ଋତୁରାଜ ବସନ୍ତର ମଧୁର ସ୍ପର୍ଶରେ ପ୍ରକୃତ ବିହ୍ୱଳ ଓ ବିଭୋର ହୋଇଉଠିଛି ।

ଏସବୁ ଅଞ୍ଚଳରେ ଋତୁ ପରିବର୍ତ୍ତନ ହଠାତ ଭିତରେ ହିଁ ଘଟିଯାଏ । ଉତ୍ତରଦିଗର ବିସ୍ତୀର୍ଣ୍ଣ ପର୍ବତମାଳା, ଦକ୍ଷିଣର ଦିଗନ୍ତବ୍ୟାପୀ ସମତଳଭୂମି ଓ ତାର ମଧ୍ୟସ୍ଥିତ ଆମର ଏହି

Digitized by srujanika@gmail.com

ଖାଦପର୍ବତୀୟ ଅଞ୍ଚଳରେ ଶିଶିରର ଶେଷରାତର ଅବସାନ ଘଟେ ବସନ୍ତର ପ୍ରଥମ ପ୍ରଭାତରେ । ଋତୁ ଦୁଇଟି ମଧ୍ୟରେ ସନ୍ଧିକାଳ ବାର ହୁଏନାହିଁ । ଶିଶିର ରାତରେ ନିଦ୍ରାଗମ ସମୟରେ ଋତୁସମାପ୍ତିର ପୂର୍ବସୂଚନା ନ ଥାଏ; ପରଦିନ ଜାଗରଣ ପରେ କନ୍ତୁ ଦେଖାଯାଏ ଯେ ରାତ ଭିତରେ ହିଁ ଶିଶିରର ଅବସାନ ଘଟିଛି ଏବଂ ବସନ୍ତ ଧରାପୃଷ୍ଠକୁ ଅବତରଣ କରି ଚତୁର୍ଦ୍ଦିଗରେ ପ୍ରାଣଭରା ଆନନ୍ଦର ପ୍ରବାହ ଖେଳାଇ ଦେଇଛି ।

ବସନ୍ତ ହିଁ ଅଧିକାଂଶ ପଶୁପକ୍ଷୀଙ୍କର ସହବାସ ଋତୁ । ନୂତନ ସାଥୀର ସନ୍ଧାନ, ନୂତନ ଜୀବନର ସଞ୍ଚାର, ଆହାରର ପ୍ରାଚୁର୍ଯ୍ୟରେ ପରିତୃପ୍ତି ଏବଂ ଋତୁର ସ୍ନିଗ୍ଧ କୋମଳ ଉଷ୍ଣତା ପଶୁପକ୍ଷୀଙ୍କୁ ଅଧୀର କରିଦିଏ । ଯାଯାବର ପକ୍ଷୀଙ୍କର ଅସଂଖ୍ୟ ଶ୍ରେଣୀ ଶ୍ରେଣୀ ସଜ ଏକତ୍ରିତ ହୋଇ ପ୍ରକାଣ୍ଡ ବିହଙ୍ଗଦଳମାନ ଗଠନ କରନ୍ତି । ଦଳପତିଦ୍ୱାରା ସୂଚିତ ନିର୍ଦ୍ଦିଷ୍ଟ ଦିନ କାଳରେ ପାରି, ଶୁଆ, କସ୍ତୁରୀ ଆଦି ଫଳଭୋଜୀ ପକ୍ଷୀ ପର୍ବତ ତଳ ଉପତ୍ୟକା ମଧ୍ୟଦେଇ ଦଳ ଦଳ ହୋଇ ତାଙ୍କ ବସନ୍ତକାଳୀନ ବାସସ୍ଥଳୀକୁ ଫେରିଯାଆନ୍ତି । ପତଙ୍ଗଭୋଜୀ ପକ୍ଷୀଗୁଡ଼ିକ ଦେହ ଦିଗରେ ଅଧୀର ହେଉଥିଲେ ମଧ୍ୟ ଗଛରୁ ଗଛକୁ ଖଣ୍ଡିଉଡ଼ା ଦେଇ ସେମାନେ ପ୍ରତିଦିନ ଅଳ୍ପ କେଇ ମାଇଲ ବାଟ ଅତିକ୍ରମ କରନ୍ତି । ଏସବୁ ଯାଯାବର ପକ୍ଷୀ ପ୍ରସ୍ଥାନର ପ୍ରସ୍ତୁତ କରୁଥିବାବେଳେ ଏଠାରେ ସ୍ଥାୟୀଭାବେ ବସବାସ କରୁଥିବା ପକ୍ଷୀଗୁଡ଼ିକ ସାଥୀ ବାଛିବା ଓ ବସା ବାନ୍ଧିବା ପାଇଁ ସ୍ଥାନ ନିରୂପଣ କରିବାରେ ଲାଗିଥାଆନ୍ତି । ନାନା ରକମର ପକ୍ଷୀ ବହୁସଂଖ୍ୟାରେ ଏକତ୍ରିତ ହୋଇ ପରସ୍ପର ସହିତ ପ୍ରତିଯୋଗିତା କରି ଯେଉଁ ଶବ୍ଦ ଓ ସଙ୍ଗୀତର ଯେଉଁ ଅପୂର୍ବ ମୂର୍ଚ୍ଛନା ସୃଷ୍ଟି କରନ୍ତି, ତାହା ପ୍ରତ୍ୟୁଷରୁ ପ୍ରଦୋଷ ପର୍ଯ୍ୟନ୍ତ ଅନବଚ୍ଛିନ୍ନଭାବେ ଲାଗିରହେ । ଶିକାରୀ ପକ୍ଷୀଗୁଡ଼ିକ ମଧ୍ୟ ସେହି ପ୍ରତିଯୋଗିତାରୁ ବାଦ୍ ଯାଆନ୍ତି ନାହିଁ । ତାଙ୍କ ଭିତରୁ ସବୁଠାରୁ ନିନାଦପ୍ରିୟ ସାପଖିଆ ଇଗଲ୍ ବହୁ ଉଚ୍ଚରେ ଚକ୍କର ମାରୁଥିବାବେଳେ ମଧ୍ୟ ତୀକ୍ଷ୍ଣ ସ୍ୱରରେ ରାବିବାରେ ଲାଗିଥାଏ । ଇଗଲ୍‌ଟି ନିଜେ ନୀଳ ଆକାଶର ପୃଷ୍ଠଭୂମିରେ ଛୋଟ ଗୋଟିଏ ଦାଗ ଭଳି ଦେଖାଯାଉଥିଲେ ସୁଦ୍ଧା ଅତି ଉଚ୍ଚ ଓ ତୀବ୍ର ତାର ରାବ ଭୂପୃଷ୍ଠକୁ ସ୍ପଷ୍ଟ ଶୁଣାଯାଏ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ମିତ୍ରପକ୍ଷର ସମରଶିକ୍ଷାର୍ଥୀମାନଙ୍କୁ ଜଙ୍ଗଲ ଯୁଦ୍ଧ-କୌଶଳରେ ତାଲିମ୍ ଦେବା ଦାୟିତ୍ୱରେ ମୁଁ ଥିଲି * । ମଧ୍ୟପ୍ରଦେଶର ଛିନ୍ଦୱାରା ଜଙ୍ଗଲରେ ସେତେବେଳେ ତାଲିମ୍ କାର୍ଯ୍ୟକ୍ରମ ଚାଲିଥିଲା । ସେ ଥରର ସମରଶିକ୍ଷାର୍ଥୀମାନେ ଥିଲେ ଯୁକ୍ତରାଜ୍ୟର ଅଧିବାସୀ; ବ୍ରହ୍ମଦେଶର ବନାବୃତ ରଣାଙ୍ଗନରେ ଅବତୀର୍ଣ୍ଣ ହେବା ପାଇଁ ସେମାନଙ୍କୁ ତାଲିମ୍ ଦିଆଯାଉଥାଏ । ସେ ଭିତରୁ କେତେଜଣଙ୍କର ପକ୍ଷିବିଜ୍ଞାନ ବିଷୟରେ ଆଗ୍ରହ ଥିଲେ ମଧ୍ୟ ପୂର୍ବରୁ କେହି ସାପଖିଆ ଇଗଲ୍‌ଟିଏ ଦେଖି ନ ଥାନ୍ତି । ଯୋଗକୁ ଠିକ୍ ସେତିକବେଳକୁ ସାପଖିଆ ଇଗଲ୍‌ଟିଏ ଆମଠାରୁ ବହୁଉଚ୍ଚରେ ଚକ୍କର ମାରି ଅନବରତ

* 'ମୋର ଭାରତ' ବହିଟି ଦ୍ରଷ୍ଟବ୍ୟ—ଅନୁବାଦକ ।

Digitized by srujanika@gmail.com

ଘୁରିବାକୁ ଲଗିଥାଏ । ଶିକ୍ଷାର୍ଥୀମାନଙ୍କୁ ଜଙ୍ଗଲର ଗୋଟିଏ ଖୋଲାପଡ଼ିଆକୁ ନେଇ ଆକାଶରେ ଦାଗ ପରି ଦେଖାଯାଉଥିବା ଈଗଲଟି ପ୍ରତି ସେମାନଙ୍କ ଦୃଷ୍ଟି ଆକର୍ଷଣ କଲି । ଦୂରବୀଣ ଦ୍ୱାରା ସମସ୍ତେ ଈଗଲଟିକୁ ଅନାଇଲେ, କିନ୍ତୁ ଦୂରତା ଯୋଗୁଁ ତାକୁ ସ୍ପଷ୍ଟଭାବେ ଦେଖି ଚିହ୍ନଟ କରି ପାରିଲେ ନାହିଁ । ସମବେତ ସମସ୍ତଙ୍କୁ ନିଶ୍ଚଳଭାବେ ଠିଆହେବାକୁ କହି ହାତତିଆରି ସାଧାରଣ ସୁସୁରିଟିଏ ପକେଟରୁ ବାହାର କଲି । ସୁସୁରିଟି ଶରକଣ୍ଡାରୁ ତିଆରି; ତାର ଗୋଟିଏ ମୁଣ୍ଡ ଗଣ୍ଠିଦ୍ୱାରା ବନ୍ଦ ଓ ଆରମୁଣ୍ଡରେ ପବନ ବାହାରିବା ପାଇଁ ଫାଟଟିଏ । ସୁସୁରିଟିଏ ଫୁଙ୍କିଲେ ହରିଣଛୁଆଟିଏ ଅତି କାତର ସ୍ୱରରେ ବୋବାଇଲା ପରି ଶବ୍ଦ ହୁଏ । ଶରକଣ୍ଡା ଜଙ୍ଗଲର ସବୁଆଡ଼େ ମିଳେ । ହରିଣଛୁଆର ବ୍ୟାକୁଳ ଚିତ୍କାର ମଧ୍ୟ ଜଙ୍ଗଲର ଏକ ସ୍ୱାଭାବିକ ଶବ୍ଦ । ତେଣୁ ଜଙ୍ଗଲଯୁଦ୍ଧରେ ଶତ୍ରୁର ଦୃଷ୍ଟି ଏଡ଼ାଇ ପରସ୍ପରକୁ ସଙ୍କେତ ଦେବା ପାଇଁ ଏଭଳି ସୁସୁରି ସହଜରେ ପ୍ରସ୍ତୁତ ଓ ନିରାପଦରେ ବ୍ୟବହାର କରାଯାଇପାରେ ବୋଲି ମୁଁ ସେତେବେଳେ କହିଥିଲି । ଏବେ ତାହାର ଅନ୍ୟ ଏକ ଉପଯୋଗିତା ପ୍ରଦର୍ଶନ କରିବା ପାଇଁ ସୁସୁରିଟିକୁ ଥରଟିଏ ବଜାଇଦେଲି ।

ସାପଖିଆ ଈଗଲ୍ ମୁଖ୍ୟତଃ ସାପମାରି ଖାଉଥିଲେ ସୁଦ୍ଧା ସୁବିଧା ମିଳିଲେ ଅନ୍ୟ ପ୍ରାଣିଙ୍କ ମାଂସ ମଧ୍ୟ ସେ ଖାଇଦିଏ । ସୁସୁରି ବାଜିବା ମାତ୍ରେ ଈଗଲଟି ବୃତ୍ତ ହୋଇଗଲା ଓ ଡେଣା ବନ୍ଦ କରି କେଇ ଶହ ଗଜ ସଳଖରେ ତଳକୁ ଖସିଆସି ପୁଣି ଚକ୍କର ମାରିବାକୁ ଆରମ୍ଭ କଲା । ତା ପରେ ମୁଁ ଯେତେ ଥର ସୁସୁରି ବଜାଇଲି, ଈଗଲ ପ୍ରତିଥର ଆହୁରି ତଳକୁ ଖସି ଆସି ଶେଷରେ ଗଛଉପରେ ହିଁ ଚକ୍କର ଦେବାକୁ ଲାଗିଲା । ପଚିଶ ଜଣଯାକ ଶିକ୍ଷାର୍ଥୀ ତଳୁ ତାକୁ ସ୍ପଷ୍ଟଭାବେ ଦେଖିପାରିଲେ । ସେହି ବନ୍ଧୁମାନଙ୍କ ମଧ୍ୟରୁ ଯେଉଁମାନେ ବ୍ରହ୍ମଦେଶର ଯୁଦ୍ଧଭୂମିରୁ ସକୁଶଳେ ଫେରିଆସିଥିବେ, ଚନ୍ଦବାଲ୍ ଜଙ୍ଗଲରେ ସେଦିନର ଅନୁଭୂତି ସେମାନେ ଭୁଲି ନ ଥିବେ ବୋଲି ମୋର ଆଶା । ବନ୍ଧୁଗଣ ! ଫଟୋ ଉଠାଇବାକୁ ଆପଣମାନେ ଇଚ୍ଛା କରିଥିଲେ ଏବଂ ଈଗଲକୁ ଆଣି ଗଛଡାଳରେ ବସାଇ ଦେବା ପାଇଁ ଯେଉଁ ଅନୁରୋଧ କରିଥିଲେ, ତାହା ରକ୍ଷାକରିବା ଥିଲା ମୋର ସାମର୍ଥ୍ୟର ବାହାରେ । ତାହା ପରିବର୍ତ୍ତେ ଆଜି ବସନ୍ତର ପ୍ରଥମ ପ୍ରଭାତରେ ଆମର ଏହି ଅଞ୍ଚଳଟି ଆପଣଙ୍କୁ ଥରେ ବୁଲାଇ ଦେଖାଇ ଆଣିବାକୁ ମୁଁ ପ୍ରସ୍ତୁତ । ଏଠାରେ ସାପଖିଆ ଈଗଲ ପରି ଆହୁରି ଅନେକ ଚିତ୍ତାକର୍ଷକ ପ୍ରାଣୀଙ୍କ ବିଷୟରେ ଆପଣ ଦେଖିବାକୁ ଓ ଜାଣିବାକୁ ପାଇବେ ବୋଲି ନିର୍ଭର ପ୍ରତିଶ୍ରୁତି ଦେଉଛି ।

ଚନ୍ଦବାଲ୍ ଜଙ୍ଗଲରେ ତାଲିମ ପାଇବା ଦିନରୁ ଆଜି ଭିତରେ ଜଙ୍ଗଲତଥ୍ୟରେ ଆପଣଙ୍କ ଶିକ୍ଷା ବହୁତ ଅଗ୍ରଗତି କରିଥିବ । ଅଭ୍ୟାସଦ୍ୱାରା ମନୁଷ୍ୟ ଅର୍ଦ୍ଧବୃତ୍ତବ୍ୟାପୀ ତାର ଦୃଷ୍ଟିକ୍ଷେତ୍ରର ପ୍ରତ୍ୟେକଟି ବସ୍ତୁ ଉପରେ କିପରି ଦୃଷ୍ଟି ରଖିପାରେ—ପ୍ରତ୍ୟକ୍ଷ ଅନୁଭୂତି ଏବଂ ଆତ୍ମରକ୍ଷାର ଆବଶ୍ୟକତା ପାଇଁ ସେ ଶକ୍ତିର ଯଥାର୍ଥ ଉପଯୋଗ ସମ୍ବନ୍ଧରେ ଆପଣ ବହୁବାର ଶିକ୍ଷା ପାଇଥିବେ । ଶବ୍ଦର ଦିଗ ଓ ସ୍ଥିତି ନିର୍ଣ୍ଣୟ କରିବା ପ୍ରଥମେ ପ୍ରଥମେ କେତେ କଷ୍ଟକର

Digitized by srujanika@gmail.com

ମନେହେଉଥିଲା; ଅଭ୍ୟାସଦ୍ୱାରା ଏବେ ତାହା ଏକ ପ୍ରକୃତିଗତ କାର୍ଯ୍ୟରେ ପରିଣତ ହେଲାଣି । ପିଲାଦିନେ କେବଳ ଗୋଲାପ ଓ ଭାଓଲେଟ୍ ଆଦି ଫୁଲର ମହକ ଭିତରେ ଆପଣ ପାର୍ଥକ୍ୟ ଜାଣିପାରୁଥିଲେ । ଏବେ ବହୁଦୂରରୁ ବିଭିନ୍ନ ଫୁଲର ଗନ୍ଧ ବାରି ଆପଣ ବୃକ୍ଷଲତା ଆଦି ଚିହ୍ନଟ କରିପାରୁଛନ୍ତି । ଜଙ୍ଗଲତଥ୍ୟରେ ଆପଣ ଯଥେଷ୍ଟ ଜ୍ଞାନ ଆହରଣ କରିଛନ୍ତି; ସେଥି-ଯୋଗୁ ଆତ୍ମବିଶ୍ୱାସ ଓ ନିର୍ଭୟରେ ବଢ଼ିବା ସଙ୍କେତ ଜୀବନ ଓ ପରିବେଶ ଆପଣଙ୍କ ନିକଟରେ ଅଧିକ ଉପଭୋଗ୍ୟ ହୋଇଛି । ଏସବୁ ସ୍ୱୀକାର କରିବା ସଙ୍ଗେ ପ୍ରାତଃଭ୍ରମଣ ପାଇଁ ଆଜି ନିମନ୍ତ୍ରଣ କଲାବେଳେ ମୁଁ ବିନୀତଭାବେ ଏତିକି ଆଶା ଜ୍ଞାପନ କରୁଛି ଯେ ଆପଣଙ୍କର ସୁସମୃଦ୍ଧ ଜ୍ଞାନଭଣ୍ଡାରକୁ ଆହୁରି ପରିପୁଷ୍ଟ କରିବା ପାଇଁ ଆଜିର ଯାତ୍ରା କିଛିତ୍ ଉପାଦାନ ନିଶ୍ଚୟ ଯୋଗାଇଦେବ ।

ଆମ ଘରବାଡ଼ି ଚକଡ଼ାର ଉତ୍ତର ସୀମାରେ ଥିବା ନାଳଟିରେ ଆମ ପରିବାରର ଝିଅମାନେ ଗାଧୁଅନ୍ତି ବୋଲି ପୂର୍ବରୁ ଉଲ୍ଲେଖ କରିଛି । ସେ ନାଳ ନିକଟରେ ଆଉ ଗୋଟିଏ ଶୁଖିଲା ନାଳକୁ ଛେଦ କରିଛି । ନାଳର ପାଣିକୁ ଶୁଖିଲା ନାଳକୁ ଡିଆଁଇ ଆରପାଖକୁ ନେବା ପାଇଁ ଯେଉଁ ସୋଠଟି ନିର୍ମାଣ କରାଯାଇଛି, ତାର ସ୍ଥାନୀୟ ନାମ 'ବିଜୁଳି ସୋଠ' । ସାର୍ ହେନେରୀ ରାମ୍‌ସେଙ୍କ ଆମୁକୂଳରେ ସେଠାରୁ ଅଳ୍ପଦୂରରେ ତିଆରି ହୋଇଥିବା ପୁରାତନ ସୋଠଟି ବହୁବର୍ଷ ପୂର୍ବେ ବଜ୍ରାଘାତରେ ନଷ୍ଟ ହୋଇଯାଇଥିଲା । ସ୍ଥାନୀୟ ଲୋକଙ୍କ ବିଶ୍ୱାସ ଯେ, କୌଣସି ଅନିଷ୍ଟକାରୀ ପ୍ରେତାତ୍ମାର ପ୍ରଭାବରେ ହିଁ ବଜ୍ରପାତ ଘଟିଥାଏ ଓ ବଜ୍ରାହତ ସ୍ଥାନଟିରେ ଉକ୍ତ ପ୍ରେତାତ୍ମା ସାଧାରଣତଃ ସାପରୂପରେ ଅବସ୍ଥାନ କରୁଥାଏ । ତେଣୁ ବଜ୍ରପାତ ପରେ ସେଠାରୁ ଅଳ୍ପ ଛଡ଼ାରେ ନୂଆ ଶଙ୍ଗଟିଏ ଗଢ଼ାହୋଇ ତାହାରି ଉପରେ ସୋଠଟିକୁ ନିଆଗଲା । ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ସେ ସୋଠଟି ଅତି ସନ୍ତୋଷଜନକ ଭାବେ କାର୍ଯ୍ୟ କରିଆସୁଛି । ଉତ୍ତରପାଖ ଜଙ୍ଗଲର ପଶୁଜନ୍ତୁ ରାତିରେ ନାଳ ପାରି ହୋଇ ଆମ ଗାଁର ବିଲମାଳରେ ପଡ଼ନ୍ତି । କୁଦାମାରିବା ବା ପାଣିରେ ପଶିବା ଅପେକ୍ଷା ଏସବୁ ଜନ୍ତୁ ଶଙ୍ଗ ତଳେ ଗଲା ଶୁଖିଲାରେ ନାଳ ପାରି ହେବାକୁ ପସନ୍ଦ କରନ୍ତି । ତେଣୁ ସେହି ଶଙ୍ଗ ନିକଟରୁ ଆମର ଆଜିର ଯାତ୍ରା ଆରମ୍ଭ ହେବ ।

ଶଙ୍ଗର ଖିଲାଣ ତଳେ ଠେକୁଆ, କୁଟୁରା, ବାର୍‌ହା, ଝିଙ୍କ, ଗଧିଆବାଘ ଓ ବିଲୁଆ ଆଦି ନାନା ଜନ୍ତୁଙ୍କ ଖୋଜଦାଗ ବାଲିରେ ଛାପିହୋଇ ରହିଛି । ସେଥିରୁ ଝିଙ୍କର ଖୋଜଦାଗକୁ ଧ୍ୟାନଦେଇ ଦେଖିବା । କାଲି ରାତିରେ ପବନର ବେଗ କମିଯିବା ପରେ ଝିଙ୍କ ଏହି ବାଟେ ଯାଇଥିଲା । ତେଣୁ କେବଳ ତାହାରି ଖୋଜଦାଗ ଉପରେ ବାଲି ମାଡ଼ିଯାଇନାହିଁ । ଝିଙ୍କ ଶିକାର ମାରୁ ନ ଥିବାରୁ ଖୋଜ ଉପରେ ଖୋଜ ପକାଇ ଲୁଚି ଛପି ଚାଲିବା ତାର ଦରକାର ପଡ଼େନାହିଁ; ତେଣୁ ପରସ୍ପରଠାରୁ ଅଲଗା ହୋଇ ପଡ଼ିଥିବା ଖୋଜଦାଗଗୁଡ଼ିକରେ ପଞ୍ଝା ଓ ପାଞ୍ଚୋଟିଯାକ ଅଙ୍ଗୁଳିର ଛାପ ସ୍ପଷ୍ଟଭାବେ ବାରିହେଉଛି ଏବଂ ବଡ଼ ବଡ଼ ନଖର ଚିହ୍ନ ମଧ୍ୟ ବାଲିରେ ଖୋଲିହୋଇ ରହିଛି । ଖାଦ୍ୟ ସଂଗ୍ରହ ପାଇଁ ଝିଙ୍କ

Digitized by srujanika@gmail.com

ତାର ଶକ୍ତିଶାଳୀ ନଖ ଉପରେ ହିଁ ନିର୍ଭର କରେ । ଝିଙ୍କର ପଛପଟ୍ଟାର ଗ୍ରୁପଗୁଡ଼ିକୁ ଏବେ ଲକ୍ଷ୍ୟ କରନ୍ତୁ । ଗୋଇଠିଚିହ୍ନ ଯୋଗୁ ତାହା ଅପେକ୍ଷାକୃତ ଲମ୍ବ ଦେଖାଯାଉଛି । ସବୁ ଗୋଇଠିର ଗ୍ରୁପ ପରି ସୁସ୍ପଷ୍ଟ ହୋଇ ନଥିଲେ ମଧ୍ୟ ବନ୍ଧୁ ଜନ୍ତୁଙ୍କ ପାଦଚିହ୍ନଗ୍ରୁପ ମଧ୍ୟରୁ ଝିଙ୍କର ଗତିପଥ ବାରିଦେବା ପାଇଁ ତାହା ଯଥେଷ୍ଟ । ଏସବୁ ସିଦ୍ଧାନ୍ତ ସପକ୍ଷରେ ଆପଣ ଅଧିକ ପ୍ରମାଣ ଚାହାନ୍ତି ? ତେବେ ନୁଆଁଣିଆ ଲମ୍ବ ଲମ୍ବ ଝିଙ୍କକାଠିଗୁଡ଼ିକ ବାଲିରେ ଘୃଷୁଡ଼ିଥିବାଯୋଗୁ ପଞ୍ଝାଗ୍ରୁପ ମଝିରେ ସମାନ୍ତରାଳଭାବେ ଅତି ସୂକ୍ଷ୍ମ ଗାରଗୁଡ଼ିଏ ଟାଣିହୋଇ ଥିବା ଲକ୍ଷ୍ୟ କରନ୍ତୁ ।

ତୀର ପରି ତୀକ୍ଷ୍ଣ ଏହି ଝିଙ୍କକାଠିଗୁଡ଼ିକର ମୁନ ହୁଇପଟେ ଗାଲସିମାନ ଅଛି । କନ୍ତୁ ଆତ୍ମରକ୍ଷା ପାଇଁ ଝିଙ୍କ ତା କାଠିଗୁଡ଼ିକୁ ତୀର ପରି ନିକ୍ଷେପ କରେ ବୋଲି ସାଧାରଣରେ ଯାହା ବିଶ୍ୱାସ କରାଯାଏ, ତାହା ଠିକ୍ ନୁହେଁ । ଆକ୍ରମଣ ପ୍ରତିହତ କରିବା ପାଇଁ ଝିଙ୍କ ତା କାଠିଗୁଡ଼ିକ ଛିଡ଼ାକରି ଆକ୍ରମଣକାରୀ ଆଡ଼କୁ ପଛୁଇ ପଛୁଇ ମାଡ଼ି ଯାଏ । ଝିଙ୍କର ଲଞ୍ଜ ଅଗରେ ଥିବା କାଠିଗୁଡ଼ିକ ପୋଲ;



ଖଡ଼ଖଡ଼ ଶବ୍ଦ କରି ଶତ୍ରୁର ଭୟ ଜାତ କରିବା ଛଡ଼ା ଝିଙ୍କ ଏଗୁଡ଼ିକୁ ଜଳାଧାର ରୂପେ ବ୍ୟବହାର କରେ । ପାଣିରେ ବୁଡ଼ି ପୋଲ କାଠିଗୁଡ଼ିକୁ ଭରିନେବା ପରେ ଝିଙ୍କ ପାଣିତକ ସିଞ୍ଚି ତା ଗାତକୁ ଶୀତଳ ରଖେ ଓ ସେଥିରୁ ଧୂଳି ଉଡ଼ିବାକୁ ଦିଏନାହିଁ ।

ଝିଙ୍କ ଫଳଭୋଜୀ ଜନ୍ତୁ; ଫଳମୂଳ ଓ ଶସ୍ୟାଦି ତାର ଆହାର । ସମ୍ଭବତଃ ତାର ନିୟମିତ ଖାଦ୍ୟରେ କାଲସିୟମ୍ କିମ୍ବା କୌଣସି ଭିଟାମିନ୍‌ର ଅଭାବ ଥିବାରୁ ଝିଙ୍କ ପଶୁଜନ୍ତୁଙ୍କ ଶିଙ୍ଗ ଓ ହାଡ଼ ଖୋଜି ଖୋଜି ଖାଏ । ବିଶେଷ କରି ହରିଣ ଶିଙ୍ଗ ତାର ଅତି ପ୍ରିୟ ଆହାର । ସ୍ୱାଭାବିକ ଭାବେ ମୋଚିତ ହୋଇଥିବା କିମ୍ବା ମୃତ ହରିଣରେ ଦେହାବଶେଷ ଭାବେ ପଡ଼ିରହିଥିବା ଶିଙ୍ଗଗୁଡ଼ିକୁ ଝିଙ୍କ ହିଁ ଖାଇ ଶେଷ କରିଥାଏ । ଆକାରରେ ସାନ ହୋଇଥିଲେ ସୁଦ୍ଧା ଝିଙ୍କ ସାହସରେ କାହାଠାରୁ କମ୍ ନୁହେଁ । କଲ, ବଲ ବା କୌଶଳରେ ପରାକ୍ରମୀ ପ୍ରତିଦ୍ୱନ୍ଦ୍ୱୀର ଆଦୌ ସମକକ୍ଷ ନ ହେଲେ ମଧ୍ୟ ଆତ୍ମରକ୍ଷା ପାଇଁ ସେ ତୁମୁଳ ସଂଗ୍ରାମ କରେ ଓ ଦିହରେ ପ୍ରାଣ ଥିବା ପର୍ଯ୍ୟନ୍ତ ସଂଗ୍ରାମରୁ କେବେ ପୃଷ୍ଠଭଙ୍ଗ ଦିଏନାହିଁ ।

ଶଙ୍ଖ ପାଖରୁ କେଇ ଶହ ଗଜ ପର୍ଯ୍ୟନ୍ତ ଶୁଖିଲା ନାଳର ଶଯ୍ୟାରେ ପଥର ବିଛୁଇ ହୋଇଛି । ପଥରସନ୍ଧିରେ ବୁଲି ବାଙ୍କି ଯାଇଥିବା ସରୁ ଶିକାରସରଣି ଛଡ଼ା ଦୀର୍ଘ ଦୂର ଯାଏ ନାଳଶେଯର ଅନ୍ୟ କେଉଁଠାରେ ଆମେ ଜନ୍ତୁଙ୍କ ଖୋଜ ବା ପାଦଚିହ୍ନଦାଗ ଦେଖିବା ନାହିଁ । ନାଳର ଏହି ପଥୁରିଆ ଅଂଶଟିକୁ ପାରହେବା ପରେ ଚକଡ଼ାଏ ପଟୁମାଟି ପଡ଼ିବ । ବର୍ଷାଦିନେ ପର୍ବତମାନଙ୍କରୁ ଧୋଇଆସିଥିବା ପଟୁମାଟି ଦେଦାରେ ବସିଯାଇ ଦଟିକୁ

Digitized by srujanika@gmail.com

ଘୋଡ଼ାଇ ଦେଇଛୁ । ନରମ ପଟୁମାଟି ଉପରେ ପଶୁଜନ୍ତୁମାନେ ଚାଲ ପାରହେବା ପାଇଁ ବାଟ କରିଛନ୍ତି; ସେମାନଙ୍କ ଖୋଜ ଓ ପାଦୁଲଦାଗ ମାଟିରେ ମୋହର ବସିଲା ପରି ଦବି ଯାଇଛି । ଚାଲ ଦୁଇ ବନ୍ଧର ଗହଳ ଭୂଇଁଆଁଶ ବଣରେ ହରିଣ, ବାର୍ହା, ମୟୂର ଓ ବଣକୁକୁଡ଼ା ଆଦି ନାନା ପଶୁପକ୍ଷୀ ଦିନବେଳେ ଆଶ୍ରୟ ନିଅନ୍ତି । ରାତିରେ କେବଳ ହିଙ୍ଗ, ଚିତା ଓ ମହାବଳ ବାଘ ଖାଦ୍ୟ ଅନ୍ୱେଷଣରେ ଭୂଇଁଆଁଶ କଣ୍ଟାରେ ପ୍ରବେଶ କରିବାକୁ ସାହସ କରନ୍ତି । ଭୂଇଁଆଁଶ ବଣ ଭିତରେ ବଣକୁକୁଡ଼ା ପଲେ ଚରିବାକୁ ଲାଗିଛନ୍ତି; ସେମାନେ ଶୁଖିଲା ପତ୍ର ଖେଳାଉଥିବାରୁ ଖସ୍‌ଖସ୍ ଶବ୍ଦ ଏଠାକୁ ଶୁଣାଯାଉଛି । ତେଣେ ଶହେ ଗଜ ଦୂର ଶିମିଳି ଗଛର ଅଗରେ ମୟୂର ଓ ବଣକୁକୁଡ଼ାଙ୍କର ସବୁଠାରୁ ମାରାତ୍ମକ ଶତ୍ରୁ ଚୂଲିଆ ଇଗଲଟିଏ ଜଗିବସିଛି । ଜଙ୍ଗଲରେ ପରିଣତ ବୟସର ମୟୂର ଓ ବଣକୁକୁଡ଼ା ବହୁ ସଂଖ୍ୟାରେ ମିଳୁ ଥିବାରୁ ଚୂଲିଆ ଇଗଲ୍ ପରି ଶକ୍ତିଶାଳୀ ଶତ୍ରୁର ଆକ୍ରମଣରୁ ନିଜକୁ ରକ୍ଷା କରିବା ପାଇଁ ସେମାନେ ସକ୍ଷମ ବୋଲି ଧରିନିଆଯାଇପାରେ । ପୂର୍ବେ ଚୂଲିଆ ଇଗଲ ଶିକାର ମାରିବା ଦେଖିଲେ ମୁଁ ତାକୁ ବାଧା ଦେଉ ନ ଥିଲି । ପରେ ଗୋଟିଏ ଘଟଣାରୁ ସେ ଦିଗରେ ମୋର ମତ ପରିବର୍ତ୍ତନ ଘଟିଲା । ଚୂଲିଆ ଇଗଲ୍ ଗୋଟିଏ ହରିଣଛୁଆକୁ ଅତି କଲବଲ କରି ମାରୁଥିବା ଥରେ ଦେଖିଲା ପରେ ସେଭଳି ପରିସ୍ଥିତିରେ ମୁଁ ବରାବର ହସ୍ତକ୍ଷେପ କଲି ।

ସେଦିନ ଗ୍ରେଟ ହରିଣଛୁଆଟିର ବ୍ୟାକୁଳ ଆର୍ତ୍ତନାଦ ଶୁଣି ପାଖକୁ ଯାଇ ଦେଖିଲି ଯେ ଚୂଲିଆ ଇଗଲଟିଏ ତାକୁ ନଖରେ ଜାବୁଡ଼ି ଧରି ତା ମୁଣ୍ଡକୁ ପ୍ରବଳ ଜୋର୍‌ରେ ଚ୍ଚୋଟ ହାଣୁଛି । ହରିଣୀଟିଏ ସନ୍ତାନର ପ୍ରାଣ ରକ୍ଷାକରିବା ପାଇଁ ଚାରିପାଖେ ବ୍ୟତିବ୍ୟସ୍ତ ହୋଇ ଧାଁ-ଦଉଡ଼ କରି ପଛ ଗୋଡ଼ରେ ଇଗଲକୁ ନାତ ମାରିବାରେ ଲାଗିଛି । ଇଗଲ୍‌ର ଥଣ୍ଟ ଆଘାତରେ ହରିଣୀ ମୁହଁରୁ ଝର ଝର ରକ୍ତ ବୋହୁଥାଏ । ଅସମାନ ପ୍ରତିଯୋଗିତାରେ ବାରମ୍ବାର ପରାଜିତ ହୋଇ ମଧ୍ୟ ହରିଣୀଟି ତା ଶାବକକୁ ରକ୍ଷା କରିବା ନିମନ୍ତେ ପ୍ରାଣପଣେ ଚେଷ୍ଟା ଚଳାଇ ଥାଏ । ଇଗଲଟିକୁ ଶେଷ କଲି ସତ, କିନ୍ତୁ ହରିଣଛୁଆକୁ ରକ୍ଷାକରିପାରିଲି ନାହିଁ । ଆଖି ଦୁଇଟି ତାର ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଇଥିଲା । ଚିକିତ୍ସାଦ୍ୱାରା ତାର କ୍ଷତଗୁଡ଼ିକ ଭଲକରି ଥିଲେ ମଧ୍ୟ ସେ ତାର ଦୃଷ୍ଟିଶକ୍ତି ଆଉ ଫେରି ନ ଆଆନ୍ତା । ଯନ୍ତ୍ରଣାରୁ ମୁକ୍ତଦେବା ପାଇଁ ଶେଷରେ ତାକୁ ମଧ୍ୟ ମାରିଦେବାକୁ ପଡ଼ିଲା । ସେହି ଦିନୁ ଏ ଭିତରେ ଜଙ୍ଗଲରେ ମୁଁ କେତେଥର ଚୂଲିଆ ଇଗଲ ମାରିଛି । ଶିକାରୀଙ୍କୁ ପାଖେଇବାକୁ ଦେଉ ନ ଥିବାରୁ ଛର୍‌ରା ବନ୍ଧୁକରେ ଏ ପ୍ରକାର ଇଗଲକୁ ମାରିବା ସମ୍ଭବ ହୁଏନାହିଁ । ତେବେ ତାର ବିଶାଳ ଆକାର ଯୋଗୁ ଦୂରରୁ ରାଇଫଲ୍‌ରେ ତାକୁ ସହଜରେ ମାରିହୁଏ । ଶିମିଳି ଗଛରେ ବସିଥିବା ଏହି ଇଗଲଟିକୁ ମାରିବାର ଅଭିପ୍ରାୟ ମୋର ନାହିଁ । ଆଜି ଆମେ ଶିକାର ଉଦ୍ଦେଶ୍ୟରେ ବାହାରିନାହୁଁ; ତା'ପରେ ଇଗଲଟି ହରିଣଛୁଆ ବା ଆଉ କାହାର ପ୍ରତି କୌଣସି ବିପଦ ନ ଘଟାଇ ଗଛଡ଼ାଳରେ ସ୍ଥିରହୋଇ ବସିଛି ।

Digitized by srujanika@gmail.com

ପିଲାଦିନେ ଥରେ ଗୁଲ୍‌ତି ଧରି ଜଙ୍ଗଲରେ ବୁଲି ବୁଲି ବୋଅର ନଦୀ ପୋଲଠାରୁ ଅଳ୍ପଦୂର ଚକଡ଼ାଏ ନଈବାଲିରେ କଟାଶ ସହିତ ଚୂଳିଆ ଈଗଲର ଯେପରି ତୁମୁଳ ସଂଗ୍ରାମ ଦେଖିଲି, ସେଭଳି ପ୍ରାଣମୂର୍ଚ୍ଛା ଯୁଦ୍ଧ ଈଗଲଟିଏ କେଉଁଠାରେ କେବେ କରି ନ ଥିବ । ସମ୍ଭବତଃ କଟାଶକୁ ଦୂରରୁ ଠେକୁଆ ବୋଲି ଭାବି ଈଗଲ୍ ତାକୁ ମାଡ଼ିବସିଥିଲା ଏବଂ କଟାଶ ଦେହରୁ ନଖ ମୁକୁଳାଇ ନ ପାରି କମ୍ପା ତାର ପ୍ରତିଆକ୍ରମଣରେ ଛେପି ଉଠି ଜୀବନ-ମରଣ ସଂଗ୍ରାମରେ ନିଜକୁ ଝାସଦେଲା । ଯୁଯୁତ୍ସା ଓ ଶତ୍ରୁଘ୍ନତାରେ ଦୁଇ ପ୍ରତିଦ୍ୱନ୍ଦ୍ୱୀ କେହି କାହାକୁ କମ୍ ନ ଥିଲେ । ନଖରେ ପରସ୍ପରକୁ କ୍ଷିପ୍ରଭାବେ କ୍ଷତବିକ୍ଷତ କରିବା ଛଡ଼ା କଟାଶ ତାର ସୁତୀକ୍ଷ୍ଣ ଦାନ୍ତ ଓ ଈଗଲ୍ ତାର ବଙ୍କା ଥଣ୍ଟ ସାହାଯ୍ୟରେ ପ୍ରଚଣ୍ଡ ଆକ୍ରମଣ ଚଳାଇଥାଆନ୍ତି । ସେ କାଳରେ ଚଳଚ୍ଚିତ୍ର କ୍ୟାମେରା ନ ଥିଲା; ଷ୍ଟୁଡ଼ିଓ ଛଡ଼ା ପଦାରେ ଫଟୋ ନେବା ମଧ୍ୟ ଜଣା ନ ଥିଲା । ତେଣୁ ଈଗଲ୍ ଓ କଟାଶଙ୍କର ଦୀର୍ଘ ସମୟବ୍ୟାପୀ ତୁମୁଳ ସଂଗ୍ରାମର ସ୍ଥିରଚିତ୍ର ବା ଚଳଚ୍ଚିତ୍ରଟିଏ ଉଠାଇବାର ପ୍ରଶ୍ନ ନ ଥିଲା । କଟାଶ ସହଜରେ ମରେନାହିଁ; ସେଭଳି ବିଡ଼ାଲଜାତୀୟ ଜନ୍ତୁଙ୍କର ସମୁଦାୟ 'ନଅଟି ପ୍ରାଣ' ଅଛି ବୋଲି ଲୋକେ କହନ୍ତି । କଟାଶର ନଅଟି ପ୍ରାଣ ଥିଲେ ଈଗଲର ଦଶଟି ଥିବ ବୋଲି ସେଦିନ ମୋର ଧାରଣା ହେଲା । ଲଢେଇରୁ ଯାହା ମନେହେଲା, ପ୍ରତିଦ୍ୱନ୍ଦ୍ୱୀ ଦୁହେଁ ପ୍ରତ୍ୟେକେ ଗୋଟି ଗୋଟି କରି ନଅଟି ପ୍ରାଣ ହରାଇବା ପରେ ଈଗଲ କେବଳ ତାର ବଳକା ଜୀବନଟିକ ପାଇଁ ବିଜୟ ହାସଲ କରିପାରିଲା । ସେ ଜୀବନଟି ମଧ୍ୟ ତାକୁ ବେଶି କାଳ ଭୋଗ ହେଲାନାହିଁ । ମଲା କଟାଶକୁ ନଈବାଲିରେ ପକାଇଦେଇ ଭଙ୍ଗା ଡେଣାଟିଏ ଘୋଷାରି ଘୋଷାରି ଈଗଲ ପାଣି କୂଳଯାଏ ଗଲା ଏବଂ ଶୋଷ ମେଣ୍ଟାଇବା ପରେ ସୂତା ଖିଅକରେ ଝୁଲୁଥିବା ଦଶମ ପ୍ରାଣଟିକୁ ତାକୁ ସେଇଠାରେ ତ୍ୟାଗ କରିବାକୁ ପଡ଼ିଲା ।

ଭୁଡଅାର ବଣରୁ ଶିକାରଦଳ କେତୋଟି ପଦାକୁ ପଡ଼ୁଛି । ଈଗଲକୁ ଆମେ ଅନାଇ-ଥିବା ଭିତରେ ଅଳ୍ପ ବୟସର ପୁରୁଷ କୁଟୁରାଟିଏ ଭୁଡଅାର ବଣରୁ ବାହାରି ପଚିଶ ଗଜ ଦୂର ଶୁଖିଲା ନାଳଟିକୁ ପାରହେବା ପାଇଁ ଶିକାରଦଳରେ ଆଗେଇଯାଉଛି । ସମ୍ପୂର୍ଣ୍ଣ ନିଶ୍ଚଳ ରହିଲେ କୁଟୁରା ଆମଆଡ଼େ ନଜର ଦେବନାହିଁ । କୁଟୁରାର ଚାଲି ଦେଖିଲେ ମନେହୁଏ ଯେପରି ସେ ଅତି ସନ୍ତର୍ପଣରେ ପାଦ ଚପି ଚପି ଚାଲୁଛି ଏବଂ ଦୃଷ୍ଟି, ଗନ୍ଧ ବା ଶବ୍ଦଦ୍ୱାରା ବିପଦର ସାମାନ୍ୟ ସୂଚନା ପାଇଲେ ତତ୍‌କ୍ଷଣାତ୍ ଛୁଟିପଳାଇବାକୁ ସେ ଉଦ୍ୟତ । ଅନ୍ୟ ଜନ୍ତୁଙ୍କ ତୁଳନାରେ କୁଟୁରା ଅତ୍ୟନ୍ତ ଅନୁଦାର ଓ ଭୀରୁ ଏବଂ ବିପଦର ସଙ୍କେତ ଦେବାପାଇଁ ତା ଉପରେ ଅଦୌ ନିର୍ଭର କରାଯାଇ ନ ପାରେ ବୋଲି ଯେଉଁମାନେ ଆକ୍ଷେପ କରନ୍ତି, ସେମାନଙ୍କ ସହିତ ମୁଁ ଏକମତ ନୁହେଁ । ସମଗ୍ର ପ୍ରାଣୀଜଗତ ମଧ୍ୟରେ ଅନୁଦାର ମନୋଭାବ କେବଳ ମନୁଷ୍ୟଠାରେ ହିଁ ଦେଖାଯାଏ; ପଶୁଜନ୍ତୁଙ୍କଠାରେ ଉଦାରତାର ଅଭାବ ପରିଲକ୍ଷିତ ହୁଏନାହିଁ । ଆଉ ଭୀରୁତାର ଅପବାଦ ବିଷୟରେ ମୁଁ ଏତିକି ପଚାରିବି ଯେ, ପ୍ରବଳ ପରାକ୍ରମୀ ମହାବଳ ବାଘ

Digitized by srujanika@gmail.com

ଜଙ୍ଗଲରେ ବାସ କରୁଥିବା ଦୁର୍ବଳ ଜନ୍ତୁଟିଏ ଶତ୍ରୁଙ୍କଠାରୁ ତାର ଜୀବନର କଠୋର ବାସ୍ତବତା ପ୍ରତି ସଦାସର୍ବଦା ସଚେତ ରହିଥିଲେ ତାକୁ ଶତ୍ରୁ କୁଆଡ଼େ ଯିବ ବା ଚାହିଁବ ? ସଙ୍କେତଦାତା- ଭାବେ କୁଟୁରର ନିର୍ଭରଯୋଗ୍ୟତା ସମ୍ବନ୍ଧରେ ସନ୍ଦେହର ଅବକାଶ ରହି ନ ପାରେ । ବିଶେଷ କରି ମୋ ପରି ପାଦରେ ଚାଲି ବଣଜଙ୍ଗଲରେ ଶିକାର କରୁଥିବା ବ୍ୟକ୍ତିମାନଙ୍କର କୁଟୁରୁ ଅପେକ୍ଷା ଅଧିକ ବିଶ୍ୱାସୀ ସାଥୀ ବା ସହାୟକ କେହି ନାହିଁ ବୋଲି ମୁଁ ଜୋର୍‌ଦେଇ କହୁଛି । କୁଟୁରର ଆକାର ଅତି ସାନ; ତାର ଦୈହିକ ଶକ୍ତି ମଧ୍ୟ ସେହି ଅନୁପାତରେ କମ୍ ଏବଂ ଅନ୍ୟ ଜନ୍ତୁଙ୍କ ଅପେକ୍ଷା ତାର ଶତ୍ରୁଙ୍କ ସଂଖ୍ୟା ଅନେକ ବେଶି । ଫଳରେ ବାଘ ସମ୍ବନ୍ଧରେ ସଙ୍କେତ ପାଇବାକୁ ଆମେ ଅପେକ୍ଷା କରିଥିବାବେଳେ କୁଟୁରୁ ଯଦି ଅଜଗର ସାପ ବା ଚିତାବାଘଟିଏ ଦେଖି ଆତଙ୍କଧ୍ୱନି କରେ, ତାହା ନିର୍ଭର- ଯୋଗ୍ୟତାର ଅଭାବ ଅପେକ୍ଷା ତାର ଦୁଃସ୍ଥ ଓ ଦୟନୀୟ ଅବସ୍ଥାର ହିଁ ପରିଚୟ ଦିଏ । କୁଟୁରୁ ପରି ଶ୍ରେଷ୍ଠ ଓ ଅତି



ନିରୀହ ଜନ୍ତୁ ପକ୍ଷରେ ଅଜଗର ସାପ ଓ ଚିତାବାଘ ଯଥେଷ୍ଟ ବିପଦର କାରଣ ହୋଇପାରନ୍ତି । ନିଜ ପ୍ରତି ବିପଦ ବିଷୟରେ ଜଙ୍ଗଲବାସୀ ଜୀବଜନ୍ତୁଙ୍କୁ ବିଶ୍ୱସ୍ତଭାବେ ଅବଗତ କରାଉଥିବା ଏହି ନିରୀହ ଜନ୍ତୁଟିକୁ ଅତି ସଚେତ ପ୍ରହରୀ କୁହା ନ ଯାଇ ଅବିଶ୍ୱାସୀ କିପରି କୁହାଯିବ, ତାହା ବିଚାର୍ଯ୍ୟ ।

କୁଟୁରର ଶ୍ରେଷ୍ଠ ଶ୍ରେଷ୍ଠ ଶିଙ୍ଗ ଦୁଇଟିର ଅଗ ଭିତରକୁ ବାଙ୍କିଯାଇଥିବାରୁ ଆତ୍ମରକ୍ଷା- ପାଇଁ ତାକୁ ଉପରପାଟିର ଅପେକ୍ଷାକୃତ ଲମ୍ବ ଓ ତୀକ୍ଷ୍ଣ ଦୁଇଟି ଶ୍ୱାନଦନ୍ତ ଉପରେ ନିର୍ଭର କରିବାକୁ ପଡ଼େ । କୁଟୁରୁ ଧାଇଁଲାବେଳେ ସମସ୍ତ ସମୟରେ ଦାସକାଠି ବାଜିଲା ଭଳି ଠକ୍- ଠକ୍ ଶବ୍ଦ ଶୁଣାଯାଏ । ଏହି ଶବ୍ଦର ଉତ୍ପତ୍ତି ଓ କାରଣ ନେଇ କେତେ ବର୍ଷ ତଳେ ଭାରତୀୟ ସମ୍ବାଦପତ୍ରମାନଙ୍କରେ ଆଲୋଚନା ଓ ପତ୍ରାଳାପ ଚାଲିଥିଲା । କୁଟୁରୁ ଧାଇଁଲାବେଳେ ତାର ଗଣ୍ଠି ଫୁଟିବା ବା ଦାନ୍ତ ବାଡ଼େଇହେବା ଯୋଗୁଁ ସେ ଶବ୍ଦ ହୋଇଥାଏ ବୋଲି କେତେକ ମତ ଦେଇଥିଲେ । ଏହାଛଡ଼ା ସେ ସମ୍ବନ୍ଧରେ ଅଦ୍ଭୁତ ଅନେକ ମତାମତ ମଧ୍ୟ ପ୍ରକାଶ ପାଇଥିଲା । ସେ ସବୁ ମନ୍ତବ୍ୟରୁ କୌଣସିଟି ଠିକ୍ ନୁହେଁ ବୋଲି ମୋର ବିଶ୍ୱାସ । କୁଟୁରୁ ଅନ୍ୟାନ୍ୟ ଶବ୍ଦ ପରି ପାଟି ଓ ସ୍ୱରଯନ୍ତ୍ରଦ୍ୱାରା ହିଁ ତାହା ସୃଷ୍ଟି କରିଥାଏ ଏବଂ ନିର୍ଦ୍ଦିଷ୍ଟ କେତୋଟି ପରିସ୍ଥିତିରେ ତାହାଦ୍ୱାରା ଭାବ ପ୍ରକାଶ କରେ । ଦୁଇମାନ କୌଣସି ବସ୍ତୁ ବିଷୟରେ ସନ୍ଦେହ ଜାତ ହେଲେ, ଶିକାରୀ କୁକୁରଙ୍କଠାରୁ ପଳାୟନ କଲାବେଳେ କିମ୍ବା ସାଥୀକୁ ଅନୁଧାବନ କରୁଥିବା ସମୟରେ କୁଟୁରୁ ସେଭଳି ଶବ୍ଦ କରିବା ମୁଁ ଲକ୍ଷ୍ୟ କରିଛି । ବିପଦର ସଙ୍କେତ ଦେଇ କୁଟୁରୁ ଯେଉଁ ଆତଙ୍କଧ୍ୱନି କରେ, ତାହା ମଧ୍ୟମ ଆକାରର କୁକୁରଟିଏ ଭୁକିଲା ପରି ଶୁଣାଯାଏ ।

Digitized by srujanika@gmail.com

କୁହୁଡ଼ି ଶୁଖିଲା ନାଳଟିକୁ ପାରହେବା ଭିତରେ ଅସଂଖ୍ୟ ପତଙ୍ଗଭୋଜୀ ଓ ଫଳଭୋଜୀ ପକ୍ଷୀ ଦଳ ଦଳ ହୋଇ ଆମ ଡାହାଣ ପାଖରୁ ଏଆଡ଼େ ଉଡ଼ିଆସୁଛନ୍ତି । ଏ ଅଞ୍ଚଳର ସ୍ଥାୟୀ ପକ୍ଷୀଙ୍କ ଛଡ଼ା ଦଳରେ ଅନେକ ଯାଯାବର ପକ୍ଷୀ ମଧ୍ୟ ଅଛନ୍ତି । ହଲ୍‌ଚଲ୍ ନ ହୋଇ ଛିଡ଼ା-ହେଲେ ପକ୍ଷୀଗୁଡ଼ିକ ଆମ ଉପରେ ଉପରେ ଉଡ଼ିଯାଇ ନାଳ ଦୁଇପାଖ ଗଛବୁଦାରେ ବସିବେ ଓ ନିକଟରୁ ସେମାନଙ୍କୁ ପରୀକ୍ଷା କରି ଦେଖିବାକୁ ଆପଣ ସୁଯୋଗ ପାଇବେ । ବସିଲା ଚଢ଼େଇଙ୍କୁ କେବଳ ପାଖରୁ ଚିହ୍ନଟ କରିହୁଏ । ଚଢ଼େଇ ସହିତ ପୃଷ୍ଠଭୂମି ରଙ୍ଗର ଭିନ୍ନତା ନଥିଲେ କିମ୍ବା ପଶ୍ଚାଦ୍‌ଭାଗରେ ଆକାଶ ରହିଗଲେ ରଙ୍ଗ ବା ଆକାରଦ୍ୱାରା ବସିଲା ଚଢ଼େଇଙ୍କୁ ଦୂରରୁ ଚିହ୍ନି ହୁଏ ନାହିଁ । କିନ୍ତୁ ଉଡ଼ନ୍ତା ଚଢ଼େଇ ଯେତେ ଦୂରରେ ଥିଲେ ମଧ୍ୟ ଆକାର ଓ ପକ୍ଷଚାଳନାର ବୈଶିଷ୍ଟ୍ୟ ଯୋଗୁ ସହଜରେ ବାରିହୋଇପଡ଼ନ୍ତି । ଦଳବଦ୍ଧ ଭାବେ ଉଡ଼ିଆସୁଥିବା ଅସଂଖ୍ୟ ପକ୍ଷୀଙ୍କର ନିରବଚ୍ଛିନ୍ନ କଳରବ ଭିତରୁ ଗାୟକପକ୍ଷୀଙ୍କ କୂଜନ ଆମକୁ ସ୍ପଷ୍ଟ ଶୁଣାଯାଉଛି । ଏବେ ବଣବୁଦାରେ ବସିଲା ପରେ ସେମାନଙ୍କୁ ଚିହ୍ନଟ କରିବାକୁ ଚେଷ୍ଟା କରାଯାଉ ।

ଦଳ ଭିତରୁ ଲାଲ ସୁନ୍ଦରୀ ଓ ସୁନେଲି ସୁନ୍ଦରୀ ଚଢ଼େଇ ଦୁଇଟିଙ୍କୁ ଲକ୍ଷ୍ୟ କରନ୍ତୁ । ସୁନ୍ଦରୀ ଚଢ଼େଇ ଗଛବୁଦାର ଅଗ ଡାଳରେ ବସନ୍ତି । ଅନ୍ୟ ପକ୍ଷୀଙ୍କ ତାଡ଼ନାରେ ଘାସପତ୍ରରୁ ହୁରୁଡ଼ି ବାହାରି ଆସୁଥିବା ପୋକଜୋକଙ୍କୁ ସେମାନେ ଉପରୁ ଦେଖିପାରି ଝାମ୍ପମାରି ଶୂନ୍ୟେ ଶୂନ୍ୟେ ଧରିନିଅନ୍ତି । ସୁନ୍ଦରୀ ଛଡ଼ା ପକ୍ଷୀଦଳରେ ତୃରି ଛଅ ରକମର ମାଛିମରାଳୀ, ଘମଗାଙ୍ଗ୍ରା, କାଠ-ହଣା, ବୁଲ୍‌ବୁଲ୍ ଓ ଫୁଲ୍‌ଚ ଚଢ଼େଇ ମଧ୍ୟ ଅଛନ୍ତି । ହଳଦୀ-ବସନ୍ତ ଦୁଇଟି ଗଛରୁ ଗଛକୁ



ଉଡ଼ି ପରସ୍ପରକୁ ଗୋଡ଼ାଇ ଖେଳୁଛନ୍ତି । ଅଦୂରରେ ଗଛଡାଳରେ କୁଜି ଭୃଙ୍ଗରାଜଟିଏ ଏକାକୀ ବସିଛି । ତାର ଜ୍ୟେଷ୍ଠ ଭ୍ରାତା ବଡ଼ ଭୃଙ୍ଗରାଜଠାରୁ ଆକାରରେ ସାନ ଓ ତା'ପରି ସେତେ ସଂଗ୍ରାମଶୀଳ ନହେଲେ ମଧ୍ୟ ନିକଟସ୍ଥ ଶିକାରକ୍ଷେତ୍ରଟିକୁ ସେ ସମ୍ପୂର୍ଣ୍ଣ ଅଧିକାର କରିନେଇଛି । ନିଜ ଚେଷ୍ଟାରେ କେତୋଟି ରସାଳିଆ ପୋକ ଧରି ସେ ଖାଇଥିଲା । ଶ୍ରେଷ୍ଠ କାଠହଣାଟି ଶୁଖିଲା କାଠ ଖୁମ୍ପି ଖୁମ୍ପି ଅତିକଷ୍ଟରେ କାଢ଼ିଥିବା ମୋଟ ଅଁଟେଇଟିକୁ ସେ ଏବେ ଏବେ ଛଡ଼ାଇ ନେଇଗଲା । ଦଳକଯାକ ପକ୍ଷୀ ଡେଣା ମେଲାଇ ଆମ ମୁଣ୍ଡ ଉପରଦେଇ ଉଡ଼ିଗଲେ । ଜଙ୍ଗଲର ସ୍ୱାଭାବିକ ନିସ୍ତବ୍ଧତା ଫେରିବା ସଙ୍ଗେ ସଙ୍ଗେ ଲୁଚିଆରି ଜଙ୍ଗଲରେ

Digitized by srujanika@gmail.com

ବଣକୁକୁଡ଼ା ପକ୍ଷ ଝୋଲାଉଥିବାର ଶବ୍ଦ ପୁଣି ଶୁଭିଲଣି । ତେଣେ ଶିମିଳି ଗଛ ଅଗରେ ଚୂଳିଆ ଘୁଗୁଲଟି ପୂର୍ବପରି ନିଶ୍ଚଳ ହୋଇ ବସିରହିଛି । ଶିକାରଟିଏ ହାସଲ କରିବା ଆଶାରେ ଅସୀମ ଧୈର୍ଯ୍ୟର ସହ ସେ ଦୀର୍ଘ ସମୟ ସେହିଠାରେ ଅପେକ୍ଷା କରି ବସିବ ।

ଲୁଢଆରି ବଣ ଆରପାଖେ ବନୋଦ୍ୟାନ ପରି ଦେଖାଯାଉଥିବା ଖୋଲା ଜାଗାଟିରେ ବଡ଼ ବଡ଼ କୋଳିଗଛଗୁଡ଼ିଏ । ହଠାତ୍ ସେଠାରୁ ଲାଲ ମାଙ୍କଡ଼ଟିଏ ଉଚ୍ଚ ସ୍ୱରରେ ଆତଙ୍କଧ୍ୱନି କରିଉଠିଲା । କ୍ରମେ ସାନ ବଡ଼ ମିଶି ଦଳର ପଚିଶରୁ ଅଧିକ ମାଙ୍କଡ଼ ଉଚ୍ଚସ୍ୱରରେ ବୋବାଇବାକୁ ଲାଗିଲେଣି । ସେମାନେ ଚିତାବାଘଟିଏ ଦେଖିଥିବା କଥା ସ୍ପଷ୍ଟଭାବେ ସୂଚାଇ ଦେଉଛନ୍ତି । ଚିତାବାଘ ଦିନବେଳେ ଖୋଲାମେଲାରେ କୋଳିବଣ ଭିତରେ ଦେଇ ଯାଉଥିବାରୁ ଶିକାର ସନ୍ଧାନରେ ସେ ବାହାରି ନାହିଁ ବୋଲି ଜଣାପଡ଼ୁଛି । ପାଦପର୍ବତର ଅନ୍ଧାରିଆ ଗମ୍ଭୀର ଖୋଲମାନଙ୍କରେ, ଚିତାବାଘ ଖରାବେଳେ ଆଶ୍ରୟ ନିଅନ୍ତି । ଚିତାବାଘ ଖରାଗରମରୁ ରକ୍ଷା ପାଇବାପାଇଁ ସମ୍ଭବତଃ ସେହିଠାକୁ ଯାଉଛି ।

କୋଳିବଣ ଭିତରେ ବୁଲିବାଙ୍କି ଯାଇଥିବା ଯେଉଁ ଚାଲି ବାଟଟିରେ ଚିତାବାଘ ଅଗ୍ରସର ହେଉଛି, ଜଙ୍ଗଲର ପଶୁଜନ୍ତୁଙ୍କ ଛଡ଼ା ଏଠାକାର ଲୋକେ ମଧ୍ୟ ସେଥିରେ ନିୟମିତ ଯାତାୟାତ କରନ୍ତି । ଦୁଇଶହ ଗଜ ଆଗକୁ ଚାଲିବାଟଟି ନାଲ ପାରି ହୋଇ ଆର ବନ୍ଧକୁ ଉଠିଛି । ଚିତାବାଘ ବାଟେ ବାଟେ ଯାଇ ସେହିଠାରେ ହିଁ ନାଲ ପାରିହେବ । ଚାଲନ୍ତୁ, ଆମେ ଆଗରୁ ଯାଇ ଖୋଲ ବା ବନ୍ଧରେ ବାଟ ଜଗି ବସିପଡ଼ିବା ।

ନାଲ ସେଠାରେ ପଚିଶ ଗଜ ଓସାର; ବାଁ ବନ୍ଧର ଗଛଗୁଡ଼ିକରେ ଦଳେ ହନୁମାଙ୍କଡ଼ ମଧ୍ୟ ବସା କରିଛନ୍ତି । ଲାଲ ମାଙ୍କଡ଼ଙ୍କ ବିପଦ-ସଙ୍କେତ ଶୁଣିବା ପରଠାରୁ ମାଆମାନେ ଛୁଆଙ୍କୁ ଜାବୁଡ଼ି ଧରିଲେଣି । ପଲକଯାକ ମାଙ୍କଡ଼ ଚିତାବାଘର ଦେଖା ପାଇବା ପାଇଁ ଗମ୍ଭୀର ଆଶଙ୍କା ସହ ନିର୍ନିମେଷ ଦୃଷ୍ଟିରେ ଚାଲିବାଟକୁ ଅନାଇ ରହିଛନ୍ତି । ଆମେ ସେଆଡ଼େ ଅନାଇବା ଦରକାର ନାହିଁ । ବାଟ ଉପରକୁ ଲମ୍ବମାନ ପ୍ରକାଣ୍ଡ ଡାଳଟିର ଅଗରେ ପହରା ଦେଉଥିବା ସାନ ହନୁମାଙ୍କଡ଼ଟି ଚିତାବାଘ ପହଞ୍ଚିବାକଥା ଠିକ୍ ସମୟରେ ଆମକୁ ଜଣାଇଦେବ ।

ଚିତାବାଘର ସାକ୍ଷାତରେ ହନୁ ଓ ଲାଲ୍‌ମାଙ୍କଡ଼ ଭିନ୍ନ ଭିନ୍ନ ପ୍ରତିକ୍ରିୟା ଦେଖାନ୍ତି । ଚିତାବାଘ ଦେଖିଲେ ପଲକଯାକ ଲାଲ୍‌ମାଙ୍କଡ଼ ଏକାଠି ବୋବାଇ ଉଠନ୍ତି ଓ ନିକଟରେ ଗଛପତ୍ର ଥିଲେ ଡାଳେ ଡାଳେ ଦୀର୍ଘଦୂର ଯାଏ ଚିତାବାଘକୁ ଅନୁସରଣ କରି ଅନବରତ ବୋବାଇବାରେ ଲାଗିଥାଆନ୍ତି । ଅନୁରୂପ ପରିସ୍ଥିତିରେ ହନୁମାଙ୍କଡ଼ଙ୍କ ସମ୍ପୂର୍ଣ୍ଣ ଭିନ୍ନ ଆଚରଣ ତାଙ୍କର ଉତ୍କୃଷ୍ଟତର ସଂଗଠନ ଅବା ସାହସିକତା ଅଭାବର ପରିଚୟ ଦିଏ, ତାହା କହିବା ମୁସ୍କିଲ । ଲାଲ୍‌ମାଙ୍କଡ଼ ଅପେକ୍ଷା ହନୁମାଙ୍କଡ଼ ଚିତାବାଘକୁ ବେଶି ଭୟ କରିବାର କାରଣ

Digitized by srujanika@gmail.com

ଅଛି । ହନୁମାଙ୍କଡ଼ ପରି ଚିତାବାଘ ମଧ୍ୟ ଗଛ ଚଢ଼ିବାରେ ଅତି ଧୂରନ୍ଧର । ତାର ଓଜନ ହନୁ ସହିତ ପ୍ରାୟ ସମାନ ହୋଇଥିବାରୁ ହନୁକୁ ସେ ଡାଳେ ଡାଳେ ଗୋଡ଼ାଇ ଗୋଡ଼ାଇ ଧରେ । ଲାଲ୍‌ମାଙ୍କଡ଼ର ଓଜନ କିନ୍ତୁ ଚିତାବାଘ ଅପେକ୍ଷା ବହୁତ କମ୍; ତେଣୁ ଗଛ ଅଗ ଡାଳଗୁଡ଼ିକରେ ସେ ଆଶ୍ରୟ ନିଏ । ଚିତାବାଘ ଯେତେ ସରୁ ଡାଳରେ ଚଢ଼ିବାକୁ ଭରସି ପାରେନାହିଁ ।

ହନୁଦଳର ସଂଗଠନ ମଧ୍ୟ ଭିନ୍ନ ରକମର । ପ୍ରତିଦଳରେ ଅଳ୍ପ ବୟସ୍କ ମାଙ୍କଡ଼ଟିଏ ପ୍ରହରୀଭାବେ ନିଯୁକ୍ତ ହୋଇଥାଏ । ଚିତାବାଘର ଦେଖାପାଇବା ମାତ୍ରେ ପ୍ରହରୀଟି ଶିଙ୍କାରିଲା ପରି "ଖୋକ୍-ଖୋକ୍—ଖୋକ୍" ଶବ୍ଦ କରିଉଠେ । ପ୍ରହରୀଠାରୁ ସଙ୍କେତ ପାଇବାମାତ୍ରେ ଦଳପତି ସତର୍କଧ୍ୱନି ଆରମ୍ଭ କରିଦିଏ ଏବଂ ଦଳର ସର୍ବାପେକ୍ଷା ବୟୋଜ୍ୟେଷ୍ଠା ମାଈମାଙ୍କଡ଼ଟି ଚିତ୍କାର କଲା ପରି ଆତଙ୍କଧ୍ୱନି କରି ଦଳପତି ସହିତ ଯୋଗଦିଏ । ଦଳପତି ନିଜେ ବିପଦଧ୍ୱନି ଆରମ୍ଭ କରିବାମାତ୍ରେ ପ୍ରହରୀ ନୀରବ ହୋଇଯାଇ ଚିତାବାଘ ଉପରେ ତୀକ୍ଷ୍ଣ ନଜର ରଖେ । ଡାଳରୁ ଡାଳକୁ ଯାଇ ଚିତାବାଘକୁ ଅନୁସରଣ କରିବାକୁ ହନୁ କେବେ ପ୍ରୟାସ କରନ୍ତି ନାହିଁ ।

ଡାଳଅଗରେ ବସିଥିବା ପ୍ରହରୀଟି ହଠାତ୍ ବୃକ୍ଷରୋଡ଼ରେ ଛିଡ଼ା ହୋଇପଡ଼ି ସାମନାକୁ ଥରେ ଉହୁଙ୍କି କରି ଦେଖିଲା ଏବଂ ଚିତାବାଘର ଟେର ପାଇବାମାତ୍ରେ ମୁଣ୍ଡ ହଲାଇ ବୋବାଇବାକୁ ଆରମ୍ଭ କରିଦେଲା । ତା ପଛରେ ଥିବା ତାର ସହଚର ଦୁଇଟି ମଧ୍ୟ ପ୍ରବଳ ଆତଙ୍କରେ ବୋବାଇବାକୁ ଲାଗିଲେ । ଏବେ ଦଳପତି ନିଜେ ଚିତାବାଘର ଦେଖାପାଇ ବୋବାଇବାକୁ ଲାଗିଲାଣି; ବୁଢ଼ୀ ମାଈମାଙ୍କଡ଼ଟି ମଧ୍ୟ ତା



ସହିତ ଯୋଗଦେଇ ଉଚ୍ଚସ୍ୱରରେ ଚିତ୍କାର କଲା ପରି 'ହୁ ! ହୁ !' ଶବ୍ଦ କରୁଛି । ଦଳର ଅନ୍ୟ ସବୁ ମାଙ୍କଡ଼ ତୁନି ରହିଛନ୍ତି; ମୁଣ୍ଡ ଟିକିଏ ଟାଣିବା ଓ ଦାନ୍ତ ଦେଖାଇଦେବା ପରି ବିକୃତ ମୁଖଭଙ୍ଗୀ କରିବା ଛଡ଼ା ସେମାନେ କୌଣସି ପ୍ରତିକ୍ରିୟା ଦେଖାଉନାହାନ୍ତି । ଚିତାବାଘ ଶିକାର ସନ୍ଧାନରେ ବାହାରି ନାହିଁ ବୋଲି ମାଙ୍କଡ଼ମାନେ ଜାଣିଗଲେଣି; ତେଣୁ ସେମାନେ ବିଶେଷ ଭୟ ପ୍ରକାଶ କରୁନାହାନ୍ତି । ଶିକାର ସନ୍ଧାନରେ ବାହାରିଥିବା କ୍ଷୁଧାର୍ତ୍ତ ଚିତାବାଘ ଖୋଲାମେଲାରେ ସେମାନଙ୍କ ସାମନାକୁ ଆସି ନ ଥାନ୍ତି । ଆକ୍ରମଣର ଉଦ୍ଦେଶ୍ୟ ଥିଲେ ସେ ଆତ୍ମପ୍ରକାଶ ନ କରି ଝୋଲା ଉପରେ ବା ଡଳ ମୂଳରେ ନାଳ ପାରିହୋଇ ଆନ୍ତି ଓ ଜଙ୍ଗଲର କୌଣସି ବୁଲଣି ବାଟରେ ଛପି ଛପି ଆସି ଅତର୍କିତ ଆକ୍ରମଣ ଚଳାଇଥାଆନ୍ତି ।

Digitized by srujanika@gmail.com

ଚିତାବାଘ ମୁଣ୍ଡ ଟେକି ଗର୍ବିତ ପଦକ୍ଷେପରେ ନାଳକୁ ଗଡ଼ିଲା । ଅତି ସୁନ୍ଦର ଚକ୍ଚକି ମଖମଲ୍ ପରି ଚକ୍‌ଚକ୍ ତାର ଚମ ସକାଳୁଆ ଖରାରେ ଝଟକୁଛି । ହନୁମାଙ୍କଡ଼ଙ୍କ ଆତଙ୍କଧ୍ୱନିକୁ ଭ୍ରୂକ୍ଷେପ ନ କରି ସେ ବନ୍ଧତଳେ ମୁହୂର୍ତ୍ତେ ଅଟକିଲା ଏବଂ ନାଳ ଉପର ଓ ତଳଆଡ଼କୁ ଥରଟିଏ ଅନାଇଦେଇ ଆରବନ୍ଧ ଆଡ଼କୁ ଆଗେଇବାକୁ ଲାଗିଲା । ସେଇ ବନ୍ଧକୁ ଆମେ ଆଉଜି କରି ବସିଥିଲେ ମଧ୍ୟ ସମ୍ପୂର୍ଣ୍ଣ ନିଶ୍ଚଳ ଥିବାରୁ ଚିତାବାଘ ଆମକୁ ନ ଦେଖି ନାଳ ପାର ହୋଇ ବନ୍ଧ ଆରପାଖ ଜଙ୍ଗଲରେ ଲୁଚିଗଲା । ଗଛଡାଳରେ ଉଚ୍ଚରେ ବସିଥିବା ମାଙ୍କଡ଼ଙ୍କ ଦୃଷ୍ଟିରୁ ସେ କିନ୍ତୁ ଅପସରି ଯାଇନାହିଁ । ସେମାନେ ପୂର୍ବପରି ବୋବାଉଛନ୍ତି; ଚିତାବାଘ ଦୃଷ୍ଟିପଥରୁ ସମ୍ପୂର୍ଣ୍ଣ ଅନ୍ତର୍ହିତ ନ ହେବାଯାଏଁ ସେମାନେ ଅନବରତ ବୋବାଉଥିବେ ।

ଚିତାବାଘର ଗତିପଥ ପରୀକ୍ଷା ଦ୍ୱାରା କଣ ତଥ୍ୟ ସଂଗ୍ରହ କରାଯାଇପାରେ, ତାହା ଦେଖାଯାଉ । ଚିତାବାଘ ଯେଉଁ ବାଟରେ ଗଲା, ଅସଂଖ୍ୟ ଦାଢୋଇଙ୍କ ପଦଗୁପରେ ସେଠାକାର ନାଲି ଚିକଟାମାଟି ପଥର ପରି କଠିଣ ହୋଇଯାଇଛି । ଟାଣ ଶୁଖିଲାମାଟି ଉପରେ ବସିଥିବା ଅତି ପାତଳ ଧଳା ଧଳା ସରୁ ଧୂଳି ପରସ୍ତକ ଆମ ଅନୁସନ୍ଧାନକୁ ଅନେକ ସାହାଯ୍ୟ କରିବ । ପାହୁଲଗ୍ରୁପ ପରୀକ୍ଷା କରିବା ପୂର୍ବରୁ ଧରନେବା ଯେ ଚିତାବାଘକୁ ଆମେ ଦେଖି ନାହୁଁ; ଏ ବାଟେ ଯାଉ ଯାଉ ଧୂଳିରେ ତାର ପଞ୍ଝାଗ୍ରୁପ ଅକସ୍ମାତ୍ ଆମ ନଜରରେ ପଡ଼ିଯାଇଛି ।

ତାଜା ପାହୁଲଗ୍ରୁପ ଗୁଡ଼ିକ ଦେଖିଦେବା ମାତ୍ରେ ତାହା ସଦ୍ୟ ଏଠାରେ ପଡ଼ିଛି ବୋଲି ଆମେ ଜାଣିଗଲୁ । ପାହୁଲଗ୍ରୁପରେ ଧୂଳିତକ ଚକ୍‌ଚକ୍ ଭାବେ ଚୁପିହୋଇଯାଇଛି ଓ ଗ୍ରୁପ ଧାରରେ ଧୂଳି ସଳଖରେ କଟିଥିବା ଦେଖାଯାଉଛି । ଚୁପିହୋଇ ରହିଥିବା ଧୂଳିତକ ଖରାତାତି ଓ ପବନରେ କ୍ରମେ ଫୁରୁସିଯିବ ଓ ଗ୍ରୁପର ସଳଖ ଧାର ଧୀରେ ଧୀରେ ଭାଙ୍ଗି ଭୁଷୁଡ଼ି ଗଡ଼ାଣିଆ ହୋଇଯିବ । ଜନ୍ଦା ପିମ୍ପୁଡ଼ି ଆଦି ପୋକଜୋକ ବୁଲି ସେଥିରେ ଗାର ଓ ଦାଗ କରିଦେବେ । ସମୟକ୍ରମେ ଗ୍ରୁପଗୁଡ଼ିକ ପବନରେ ଲିଭି ଲିଭି ନିଶ୍ଚିହ୍ନ ହୋଇଯିବ । ପାହୁଲଗ୍ରୁପ ବା ଝୁଣ୍ଟାଦାଗର କ୍ରମପରିବର୍ତ୍ତନରୁ ସମୟର ଗତି ନିର୍ଣ୍ଣୟ କରିବାକୁ ହେଲେ ଏସବୁ ଛଡ଼ା ଆହୁରି ଅନେକ ଆନୁଷଙ୍ଗିକ ବିଷୟ ମଧ୍ୟ ବିଚାରକୁ ନେବା ଦରକାର । ସ୍ଥାନଟି ଅନାବୃତ ବା ନୁହେଁ—ଦିନ ବା ରାତିର କେଉଁ ସମୟରେ ପୋକଜୋକ ବୁଲାବୁଲି କରନ୍ତି ବା ପବନ ବହିବାକୁ ଲାଗେ—ରାତିର ଠିକ୍ କେତେବେଳେ କୁହୁଡ଼ି ପଡ଼େ ଓ ଗଛପତ୍ରରୁ କାକର ଟୋପା ଝରିବାକୁ ଆରମ୍ଭ କରେ—ଏସବୁ ଏବଂ ଏହିପରି ଆହୁରି ଅନେକ ବିଷୟ ବିବେଚନା କରି ଜନ୍ତୁଙ୍କ ଯାତାୟାତର ସମୟ ନିର୍ଣ୍ଣୟ କରିବାକୁ ପଡ଼େ ।

ପାହୁଲଦାଗ ତାଟକା ଥିବାରୁ ଚିତାବାଘ ଅଳ୍ପ ସମୟ ତଳେ ଏ ବାଟେ ଯାଇଛି ବୋଲି ଆମେ ଜାଣିପାରିଲୁ । କିନ୍ତୁ ପାହୁଲଦାଗ ପରୀକ୍ଷା ନ କରିବାଯାଏ ଚିତାବାଘର ଲିଙ୍ଗ,

Digitized by srujanika@gmail.com

ବୟସ ବା ଆକାର ବିଷୟରେ କିଛି ଜାଣିହେବ ନାହିଁ । ପାହୁଲଦାଗ ଗୋଲ ଗୋଲ ହୋଇ ଥିବାରୁ ଜଣାପଡ଼ୁଛି ଯେ ଚିତାବାଘଟି ପୁରୁଷ; ସେଥିରେ ବେଶି ଫାଟ ବା ଭଙ୍ଗ ନ ଥିବାରୁ ତାର ବୟସ ବେଶି ନୁହେଁ ବୋଲି ଅନୁମାନ । ପାହୁଲ ମାପରୁ ଚିତାବାଘର ଆକାର ବା ଲମ୍ବ କଳନା ସେତେଟା ସହଜ ନୁହେଁ; ତାହା କରିବା ପାଇଁ ଅଧିକ ଅନୁଭୂତି ଆବଶ୍ୟକ । ଜନ୍ତୁର ଲମ୍ବ ସହିତ ପଞ୍ଝାର ଆକାର ବାରମ୍ବାର ତୁଳନା କରି ଦେଖିବା ପରେ ସେ ବିଷୟରେ ଧାରଣା ହୁଏ ଏବଂ ଅନୁଭୂତି ଓ ଅଭ୍ୟାସଦ୍ୱାରା ହିଁ ପାହୁଲମାପରୁ ଜନ୍ତୁର ଲମ୍ବ ଇଞ୍ଚେ ଦୁଇ ଇଞ୍ଚ ଭିତରେ ଅନୁମାନ କରିବା ଭଳି ଦକ୍ଷତା ହାସଲ କରିହୁଏ ଯାଇପାରେ ।

ମିର୍ଜାପୁରର କୋଲ୍‌ମାନେ ଘାସ ଖଣ୍ଡିକରେ ପାହୁଲଗୁଡ଼ିକର ମାପ ନିଅନ୍ତି ଓ ତାହାକୁ ଅଙ୍ଗୁଳିରେ ମାପି ବାଘର ଲମ୍ବ କଳନା କରନ୍ତି । ସେମାନଙ୍କ ଅଟକଳ କେତେଦୂର ଠିକ୍ ବା ଭୁଲ ହୁଏ ମୋତେ ଜଣାନାହିଁ । ମୁଁ ନିଜେ ସେଭଳି କୌଣସି ହିସାବ କରେନାହିଁ; ପାହୁଲଗୁଡ଼ିକର ଆକାରରୁ ବାଘର ଲମ୍ବ ସମ୍ବନ୍ଧରେ ମୁଁ କେବଳ ଅନୁମାନଦ୍ୱାରା ହିଁ ମୋଟାମୋଟି ଧାରଣା କରିନିଏ । ପାହୁଲଦାଗ ମାପିକରି ଓ ହିସାବକିତାବ କରି ଜନ୍ତୁର ଆକାର ସମ୍ବନ୍ଧରେ ଯାହା ଅଟକଳ କରିଯାଏ, ଅନୁମିତ ସିଦ୍ଧାନ୍ତରୁ ତାହା ଅଧିକ ନିର୍ଭୁଲ ହୁଏ ନାହିଁ ବୋଲି ମୋର ବିଶ୍ୱାସ ।

ଚଲାବାଟଟି ଯେଉଁଠାରେ ନାଳ ପାର ହୋଇ ବନ୍ଧକୁ ଉଠିଛି, ସେଠାରୁ ଅଳ୍ପ ଆଗକୁ ଗଦାଏ ବଡ଼ ବଡ଼ ପଥର । ବନ୍ଧ ମଝିରେ ଥିବା ଅଣଓସାର ଚକଡ଼ାଏ ଗଣ ବାଲିରେ ପଡ଼ିଲେ ହରିଣଙ୍କ ଖୋଜଦାଗ ପଡ଼ିଛି । ହରିଣ ବା ସମ୍ବରଙ୍କ ଖୋଜଦାଗ ପରୀକ୍ଷା କରି ଦଳରେ ଜନ୍ତୁଙ୍କ ସଂଖ୍ୟା ନିରୂପଣ କରିବା ଓ ନିର୍ଦ୍ଦିଷ୍ଟ ଜନ୍ତୁଙ୍କ ବିଷୟରେ ସିଦ୍ଧାନ୍ତ ଗ୍ରହଣ କରିବା ଜଙ୍ଗଲତଥ୍ୟ ଶିକ୍ଷାର ଏକ ଅତି ଚିତ୍ତାକର୍ଷକ ଅଙ୍ଗ । ପଲଟିକୁ ଅନ୍ୟତ୍ର ଭେଟିଲେ ଏସବୁ ଚିହ୍ନ ବା ଲକ୍ଷଣଦ୍ୱାରା ତାହାକୁ ଚିହ୍ନଟ କରିହୁଏ ଓ ତଦବଧି ମୃତାହତ ହୋଇଥିବା ଜନ୍ତୁଙ୍କ ସଂଖ୍ୟା ମଧ୍ୟ କଳନା କରିବା ସମ୍ଭବ ହୁଏ । ଦଳବଦ୍ଧଭାବେ ଚଳପ୍ରଚଳ ହେଉଥିବା ଏ ସବୁ ଜନ୍ତୁଙ୍କ ଗତିବିଧି ଓ କାର୍ଯ୍ୟକଳାପ ନିୟମିତ ଅନୁଧ୍ୟାନ କଲେ ହୃଦୟରେ ସେମାନଙ୍କ ପ୍ରତି ଶ୍ରଦ୍ଧା ଓ ସହାନୁଭୂତି ଜାଗ୍ରତ ହୁଏ ଏବଂ ଶିକାର କରିବା ପରିବର୍ତ୍ତେ ସେମାନଙ୍କ ସୁଖଦୁଃଖରେ ଭାଗ ନେବାର ଅଭିଳାଷ କ୍ରମେ ବଳବତୀ ହେବାକୁ ଲାଗେ ।

ବଣଜଙ୍ଗଲରୁ ଦୂରରେ ଖୋଲାମେଲାରେ ଚରୁଥିବା ହରିଣ ପଲରୁ ହରିଣୀ ଓ ଛୁଆଙ୍କ ସଂଖ୍ୟା ଗଣିନେବା ଏବଂ ହରିଣଙ୍କ ଶିଙ୍ଗର ଲମ୍ବ ଓ ଆକାର ସମ୍ବନ୍ଧରେ ଧାରଣା କରିବା ସହଜ । କିନ୍ତୁ ବଣରେ ଲୁଚିରହିଥିବା ହରିଣଙ୍କ ବିଷୟରେ ଏ ସବୁ ତଥ୍ୟ ହାସଲ କରିବାକୁ ହେଲେ ସେମାନଙ୍କୁ ପଦାକୁ ଆଣିବାକୁ ପଡ଼େ । ହରିଣପଲକୁ ବଣଜଙ୍ଗଲରୁ ପଦାକୁ ଆଣିବା ପାଇଁ ଯେଉଁ ଉପାୟମାନ ଅବଲମ୍ବନ କରିଯାଏ, ସମ୍ପୂର୍ଣ୍ଣ ଅଭ୍ରାନ୍ତ ନହେଲେ ମଧ୍ୟ ଅଧିକାଂଶ ସମୟରେ ତାହା ଭଲ କାମ ଦିଏ । ଏହି ଉପାୟ ଆପଣଙ୍କୁ ଏବେ ବତାଇ

Digitized by srujanika@gmail.com

ଦେଉଛୁ; ଏହାକୁ ପ୍ରୟୋଗ କରି ପଶ୍ଚାତରୁ ଅଧିକ ହରିଣଙ୍କୁ ଠିକ୍‌କରି ଫଟୋ ଉଠାଇ ପାରିବୁ । ଗୋଠଛଡ଼ା ହୋଇ ଜଙ୍ଗଲ ବାହାରେ ଚରୁଥିବା ଗୋଟିଏ ହରିଣ ବା ହରିଣୀକୁ ଠାବ କରି ଆପଣ ଛପି ଛପି ତା ପାଖକୁ ଯିବେ ଓ ନିକଟର ଗୋଟିଏ ଗଛ ବା ବୁଦା ପଛରେ ଲୁଚି ରହି ଥରଟିଏ କୋଟରା ପରି ବୋବାଇଦେବେ । ପ୍ରତ୍ୟେକ ଜନ୍ତୁ ଏବଂ ବିଶେଷ କରି ଜଙ୍ଗଲର ଜନ୍ତୁମାନେ ନିର୍ଭୁଲଭାବେ ଶବ୍ଦଭେଦ କରିପାରନ୍ତି । ଶବ୍ଦ ଶୁଣିବାମାତ୍ରେ ହରିଣଟି ଆପଣଙ୍କ ମୁହାଁଇ ଛିଡ଼ା ହୋଇଯିବ । ସେ ଅନାଇଥିବା ଭିତରେ ଆପଣ କାନ୍ଧଟିକୁ ପଦାକୁ ଦେଖାଇ ଦେଖାଇ ଥରେ ଦୁଇଥର ଉପରତଳ କରି ହଲାଇ ଦେବେ କିମ୍ବା ବୁଦାର ଡାଳପତ୍ରକୁ ସାମାନ୍ୟ ଦୋହଲାଇ ଦେବେ । ସେତିକି ସଞ୍ଚାଳନ ଦେଖିବାମାତ୍ରେ ହରିଣ ଆତଙ୍କଧ୍ୱନି ଆରମ୍ଭ କରିଦେବ ଏବଂ ପଲର ଅନ୍ୟ ହରିଣ ହରିଣୀ ସଙ୍ଗେ ସଙ୍ଗେ ଜଙ୍ଗଲରୁ ବାହାରି ଆସି ତା ଦୁଇପାଖରେ ଛିଡ଼ା ହୋଇଯିବେ ।

ଗଛବୁଦା ଉହାଡ଼ରେ ଲୁଚି କରି କୋଟରା କିମ୍ବା ଅନ୍ୟ କୌଣସି ଜନ୍ତୁର ସ୍ୱର ଅନୁକରଣ କରିବାର ଏକ ବିଶେଷ ବିପଦ ପ୍ରତି ଆପଣଙ୍କୁ ଆମ୍ଭେ ସାବଧାନ କରିଦେଉଛୁ । ସେଭଳି କରିବା ପୂର୍ବରୁ ଅନ୍ୟ କେହି ଶିକାରୀ ବା ବନ୍ଧୁକଧାରୀ ଆଖପାଖରେ ନାହାନ୍ତି ବୋଲି ନିର୍ଭରଭାବେ ଜାଣିରଖିବା ଏକାନ୍ତ ଆବଶ୍ୟକ । ସେତିକି ସତର୍କତା ଅବଲମ୍ବନ କରିବା କାହିଁକି ଏତେ ଜରୁରି, ମୋର ଏକ ଅନୁଭୂତ ସମ୍ବନ୍ଧରେ ଅବଗତ ହେବା ପରେ ଆପଣ ନିଜେ ତାହା ଉପଲବ୍ଧି କରିପାରିବେ ।

ଥରେ ରାତିରେ ଜଙ୍ଗଲରେ କୋଟରାଟିଏ ଅତି କରୁଣ ସ୍ୱରରେ ବାରମ୍ବାର ବୋବାଉଥିବା ଶୁଣିଲି ଏବଂ ଜନ୍ତୁଟି ନିଶ୍ଚୟ କୌଣସି ବିପତ୍ତିରେ ପଡ଼ିଛି ଭାବି ପରଦିନ ସକାଳୁ ଅନୁସନ୍ଧାନ କରିବାକୁ ବାହାରିଲି । କୋଟରାଟି ରାତି ଭିତରେ ଦୂରର ଗୋଟିଏ ପାହାଡ଼ ଉପରକୁ ହଟିଯାଇ ସେଠାକାର ଜଙ୍ଗଲର ଏକ ଖୋଲା ପଡ଼ିଆ ନିକଟରୁ ହେଣ୍ଟାଳୁଥିଲା । ମୋଟିଏ ଶିକାରଦଳରେ ପାହାଡ଼ ଚଢ଼ି ପଡ଼ିଆରେ ପହଞ୍ଚିଲି ଓ କୋଟରାଟିର ଅଗୋଚରରେ ସେଠାରେ ଗୋଟିଏ ପଥରଖଣ୍ଡ ପଛରେ ଶୋଇ କୋଟରାଟିର ହେଣ୍ଟାଳର ଜବାବ ଦେବାକୁ ଲାଗିଲି । ପରବର୍ତ୍ତୀ ଅଧଘଣ୍ଟା ଧରି ଦୁହେଁ ଦୁହିଁଙ୍କୁ ଡାକ ଦେଲୁ । ସେ ଭିତରେ କୋଟରାଟି ଅତି ସାବଧାନରେ ମୋ ଆଡ଼କୁ ଧୀରେ ଧୀରେ ଆଗେଇ ଆସିଲା । ସେ ନିହାତି ଗଜକୁ ପାଖେଇ ଆସିବା ପରେ ମୁଁ ତୁନି ହୋଇଗଲି ଓ ଭୂଇଁରେ କହୁଣୀଭରା ଦେଇ ପାପୁଲିରେ ମୁହଁ ଥୋଇ ତାର ଦେଖାପାଇବା ପାଇଁ ଅପେକ୍ଷା କଲି । କୋଟରାଟି ବାହାରିବାକୁ ଆଉ ବେଶୀ ଡେରି ନାହିଁ—ମୁହୂର୍ତ୍ତକ ଭିତରେ ସେ ନିଶ୍ଚୟ ଦେଖାଦେବ ଭାବି ଅପେକ୍ଷା କରିଛି, ହଠାତ୍ ଏତିକିବେଳେ ପଛରୁ ଝସ୍ ଝସ୍ ଶବ୍ଦ ଶୁଣି ବୁଲିପଡ଼ି ଦେଖିଲି ଯେ ସେ ଭିତରେ କେହି ଜଣେ ଶକ୍ତିଶାଳୀ ରାଇଫଲ୍‌ଟିଏ ଟେକିପାରରେ ଗଳାଇ ମୋରି ଆଡ଼କୁ ମୁହାଁଇ କରି ଧରିଛି ।

Digitized by srujanika@gmail.com

ନୈନିତାଲ୍‌ର ଡେପୁଟି କମିଶନର କାସେଲ୍‌ସ୍ ଏବଂ କର୍ଣ୍ଣେଲ ଓ୍ୱାଡ଼ ପୂର୍ବ ସନ୍ଧ୍ୟାରେ ଏଠାରେ ପହଞ୍ଚି ନିକଟସ୍ଥ ଜଙ୍ଗଲ ବଙ୍ଗଳାରେ ରହୁଥିଲେ ଓ ଦିନରେ ସେମାନେ ବଙ୍ଗଳା ପାଖରେ ଅଳ୍ପ ବଦୂରର ଚିତାବାଘଟିଏ ମାରିଥିଲେ । ଏସବୁ କଥା ସେତେବେଳେ ମୋତେ ଜଣାନଥିଲା । ମୃତ ଶାବକର ମାଆ ରାତିତମାମ ହେଣ୍ଟାଳ ଦେଇ ବଙ୍ଗଳା ପାଖରେ ପହଁଚିବା ମାରୁଥିଲା । ଓ୍ୱାର୍ଡ଼ ପାହାନ୍ତିଆରୁ ଉଠି ତାକୁ ଚାବ କରି ମାରିବା ପାଇଁ ହାତୀରେ ବସି ବାହାରିଥିଲେ । ହାତୀ ଓ ତାର ମାହୁନ୍ତ ବାଘ ଶିକାର ପାଇଁ ପୁରାପୁରି ତାଲିମ୍ ପାଇଥାଆନ୍ତି । କାକରଭିଜା ଘାସପତ୍ର ଉପରେ ମାହୁନ୍ତ ଏଡ଼େ ବାଗରେ ହାତୀକୁ ଆଣି ମୋ ପଛରେ ଥିବା ପତଳା ଧାଡ଼ିଏ ଗଛ ଅରପାଖରେ ପହଞ୍ଚାଇଦେଲା ଯେ ସେମାନଙ୍କ ଆସିବାର ମୁଁ ଟିକିଏ ବି ସୁରାକ୍ ପାଇଲି ନାହିଁ । ଓ୍ୱାର୍ଡ଼ ବସ୍ତୁସ୍ଥ ଲୋକ; ତାଙ୍କ ଦୃଷ୍ଟିଶକ୍ତି ସେତେ ଭଲ ନୁହେଁ । ଗଛଫାଙ୍କରେ ମୁଁ ଅସ୍ପଷ୍ଟଭାବେ ଦୃଷ୍ଟିଗୋଚର ହେଉଥିଲେ ମଧ୍ୟ ପାହାନ୍ତିଆ ଅଲୁଅରେ ମୋ କାନ୍ଧକୁ ଭଲଭାବେ ନିଶାଣ କରି ନ ପାରି ଓ୍ୱାର୍ଡ଼ ହାତୀଟିକୁ ଆହୁରି ଆଗେଇନେବାକୁ ନିର୍ଦ୍ଦେଶ ଦେଲେ । ହାତୀ ନିଃଶବ୍ଦରେ ମୋଠାରୁ ଦଶ ଗଜକୁ ପାଖେଇ ଆସିଲା । ବୁଢ଼ା ମାହୁନ୍ତଟି ମୋ ଆଡ଼କୁ ଆଙ୍ଗୁଳି ଦେଖାଇଲେ; ଓ୍ୱାର୍ଡ଼ ହାତୀଉପରୁ ଝୁଙ୍କି ପଡ଼ି ମୋ କାନ୍ଧକୁ ରାଇଫଲ୍ ନିଶାଣ କଲେ । ସେ ଫାଏର୍ କରିବାକୁ ଯାଉଛନ୍ତି, ଯୋଗକୁ ଠିକ୍ ସେତିକବେଳକୁ ହାତୀ ଓଡ଼ାଇ ଧରିଥିବା ଗୋଟିଏ ଡାଳକୁ ଛାଡ଼ିଦେଲା ଏବଂ ସେହି ଶବ୍ଦରେ ମୁଁ ବୁଲିପଡ଼ି ରାଇଫଲ୍ ଠିକ୍ ମୋରି ଆଡ଼କୁ ନିଶାଣ ହୋଇଥିବା ଦେଖିଦେଲି । ହାତୀ ଡାଳଟିକୁ ଠିକ୍ ସେତିକବେଳେ ଛାଡ଼ିଦେଇ ନଥିଲେ ନିଶ୍ଚିତ ମୃତ୍ୟୁମୁଖରୁ ମୁଁ କଦାପି ବର୍ତ୍ତିନଥାନ୍ତି ।

ଯେଉଁ ହରିଣଙ୍କ ଖୋଜଦାଗ ଆମେ ପରୀକ୍ଷା କଲୁ, ଗତ ସନ୍ଧ୍ୟାରେ ସେମାନେ ଏହି ଚକଡ଼ାକ ବାଲି ଉପରଦେଇ ନାଳ ପାରି ହୋଇଛନ୍ତି । ରାତି ଭିତରେ ଖୋଜଦାଗ ଉପରେ ପୋକଯୋକ ଗୃଳି ଗାର କରି ଦେଇଛନ୍ତି; ଉପରୁ ନଇଁଆସିଥିବା ଗଛ ଡାଳରୁ ଟୋପା ଟୋପା କାକର ମଧ୍ୟ ସେଥିରେ ଝରିପଡ଼ିଛି । ଏ ଭିତରେ ହରିଣଗୁଡ଼ିକ ଦୀର୍ଘ ଦୂର ଗ୍ଲସିବେଣି । ଏଠାରୁ ମାଇଲକରୁ ପାଞ୍ଚମାଇଲ ଭିତରେ ସେମାନେ ବଣଜଙ୍ଗଲରେ କେଉଁଠାରେ ଆଶ୍ରୟ ନେଇଥିବେ କିମ୍ବା ସୁବିଧା ଚର୍‌ଭୂଇଁଟିଏ ପାଇଥିଲେ ଖୋଲ୍‌ମେଲ୍‌ରେ ଏବେ ଚରୁଥିବେ । ଦୂରରେ ଥିବା ଏହି ପଲଟିରେ ହରିଣ ହରିଣୀଙ୍କ ସଂଖ୍ୟା ସେମାନଙ୍କ ଖୋଜଦାଗରୁ ନିରୂପଣ କରିବା ପାଇଁ ଏକ ସହଜ ଉପାୟ ଆପଣଙ୍କୁ ଶିଖାଇଦେଉଛି ।

Digitized by srujanika@gmail.com

ପ୍ରାପ୍ତବୟସ୍କ ହରିଣଟିଏ ଛିଡ଼ା ହୋଇଥିବା ଅବସ୍ଥାରେ ତାର ଆଗ ଓ ପଛ ଖୁରା ମଝିରେ ପ୍ରାୟ ତିରିଶ ଇଞ୍ଚ ବ୍ୟବଧାନ ଥାଏ । ସକାଳ ବାଲି ଖଣ୍ଡିକରେ ହରିଣଙ୍କ ଗତିପଥରେ ତିରିଶ ଇଞ୍ଚ ବ୍ୟବଧାନରେ ଦୁଇଟି ଗାର ଟାଣିଦିଅନ୍ତୁ । ଆପଣଙ୍କ ଜୋତାର ଲମ୍ବ ପ୍ରାୟ ଦଶଇଞ୍ଚ; ତେଣୁ ଲଗି ଲଗି ତିନପାଦ ପକାଇଲେ ସେଥିରୁ ତିରିଶ ଇଞ୍ଚ ମାପ ବାହାରିପଡ଼ିବ । ଦୁଇ ଗାର ମଝିରେ ଥିବା ଖୋଜଦାଗଗୁଡ଼ିକୁ ଗଣି ଦୁଇରେ ଭାଗ କଲେ ଭାଗଫଳ ଦଳର ହରିଣହରିଣୀଙ୍କ ସଂଖ୍ୟା ସହିତ ସମାନ ହେବ । ଗାର ମଝିରେ ସମୁଦାୟ ତିରିଶଟି ଖୋଜଦାଗ ଗଣତି ହେଲେ ଦଳରେ ପ୍ରାୟ ପନ୍ଦରଟି ହରିଣହରିଣୀ ଅଛନ୍ତି ବୋଲି ଜଣାପଡ଼ିବ । ଏ ହିସାବ କିନ୍ତୁ ସମ୍ପୂର୍ଣ୍ଣ ନିର୍ଭୁଲ ନୁହେଁ । ଜନ୍ତୁଙ୍କ ସଂଖ୍ୟା ଦଶରୁ ଯେତିକି ବେଶି ହେବ, ହିସାବରେ ସେହି ଅନୁପାତରେ ଅଧିକ ଭୁଲ୍ ହେବାର ସମ୍ଭାବନା । ଏଭଳି ହିସାବ କରିବା ପୂର୍ବରୁ ଜନ୍ତୁଙ୍କ ଆଗ ଓ ପଛ ଖୁରା ମଧ୍ୟରେ ବ୍ୟବଧାନ ସଠିକଭାବେ ଜାଣିବା ଦରକାର । ବଣଆ କୁକୁର, ବଣଘୁଷୁରି ଓ ଛେଳିମେଣ୍ଢା ଆଦି ଜନ୍ତୁଙ୍କ ପଞ୍ଝା ବା ଖୁରା ମଧ୍ୟରେ ବ୍ୟବଧାନ କମ୍ ଏବଂ ସମ୍ବର ଓ ଗାଈଗୋରୁଙ୍କଠାରେ ତାହା ଅପେକ୍ଷାକୃତ ଅଧିକ ହେବା ସ୍ୱାଭାବିକ ।

ଜଙ୍ଗଲଯୁଦ୍ଧରେ ଯେଉଁମାନେ ତାଲିମ ପାଇନାହାନ୍ତି, ସେମାନଙ୍କ ଅବଗତି ନିମନ୍ତେ ଏଠାରେ ସୂଚାଇଦେବାକୁ ଚାହେଁ ଯେ ସଡ଼କ, ଚଲାବାଟ ବା ଶିକାରସରିରେ ମନୁଷ୍ୟର ପାଦଚିହ୍ନ ପରୀକ୍ଷା କରି ପଥଚାରୀଙ୍କ ବିଷୟରେ ସେଥିରୁ ଅନେକ ତଥ୍ୟ ସଂଗ୍ରହ କରାଯାଇପାରେ । ଧରନ୍ତୁ, ଶତ୍ରୁ ଅଧିକୃତ ଏକ ଅଞ୍ଚଳରେ ଅଗ୍ରସର ହେଉ ହେଉ ଜାଗାଏ ଶିକାରସରିରେ ଆମେ କେତେଗୁଡ଼ାଏ ଜୋତାଛାପ ଦେଖିବାକୁ ପାଇଲୁ । ଛାପଗୁଡ଼ିକର ଆକୃତି ଓ ଆକାର, ଜୋତାର ତଳ ଚମଡ଼ା ନା ରବରରେ ତିଆରି ଏବଂ ତଳ ବା ଗୋଇଠିରେ କଣ୍ଟା ବା ନାଲ୍ ଆଦି ଅଛି କି ନାହିଁ—ଏସବୁ ପରୀକ୍ଷା କରି ପଥଚାରୀ କେଉଁ ପକ୍ଷର ଲୋକ, ସେମାନଙ୍କ ଦଳରେ ସମୁଦାୟ କେତେଜଣ ଅଛନ୍ତି ଏବଂ କେତେ ସମୟ ପୂର୍ବରୁ ସେମାନେ ସେବାଟେ ଯାଇଛନ୍ତି ତାହା ଜାଣିହେବ । ସମୟର ଅତିବାହନ ନିର୍ଣ୍ଣୟ କରିବାର ଉପାୟ ଆମେ ଶିଖିସାରିଛୁ । ଏବେ ଦଳରେ କେତେ ଲୋକ ଅଛନ୍ତି ତାହା ହିସାବ କରାଯାଉ । ଶିକାରସରିଟିକୁ କାଟି ତିରିଶ ଇଞ୍ଚ ବ୍ୟବଧାନରେ ସମାନ୍ତରାଳଭାବେ ଦୁଇଟି ଗାର ଟାଣନ୍ତୁ । ଦୁଇ ଗାର ମଝିରେ ଯେତିକିଟି ଗୋଇଠିଦାଗ ଗଣିବେ, ଦଳରେ ଠିକ୍ ସେତିକି ଲୋକ ଅଛନ୍ତି ବୋଲି ଜଣାପଡ଼ିବ ।

ପଥଚାରୀମାନେ କେତେ ବେଗରେ ଅଗ୍ରସର ହେଉଥିଲେ ପାଦଚିହ୍ନ ପରୀକ୍ଷାଦ୍ୱାରା ତାହା ମଧ୍ୟ ଜଣାପଡ଼ିବ । ମନୁଷ୍ୟ ସାଧାରଣ ଗତିରେ ଚାଲୁଥିବାବେଳେ ଭୂଇଁରେ ପାଦର ପ୍ରତି ଅଂଶ ସମାନଭାବେ ଚାପ ଦିଏ ଏବଂ ଉଚ୍ଚତା ଅନୁପାତରେ ପ୍ରତି ପାହୁଣ୍ଡ ତିରିଶରୁ ବତିଶ ଇଞ୍ଚ ପର୍ଯ୍ୟନ୍ତ ଲମ୍ବ ହୁଏ । ଗତିବେଗ ବଢ଼ିଲେ ପାହୁଣ୍ଡର ଲମ୍ବ ମଧ୍ୟ ବଢ଼େ ଓ ପାଦର ପୂର୍ବଭାଗରେ ବେଶି ଚାପ ପଡ଼ିବା ସଙ୍ଗେ ସଙ୍ଗେ ଗୋଇଠି ଉପରୁ ଚାପ କମିଯାଏ ।

Digitized by srujanika@gmail.com

ଅତବେଶରେ ଧାଉଁଥିବା ଲୋକର ପାଦର ଅଗ୍ରଭାଗଟି କେବଳ ଭୂଇଁକୁ ଛୁଇଁଥାଏ । ଦଳରେ ଦଶ ବାର ଜଣ ଲୋକ ଥିଲେ ସେମାନଙ୍କ ପାଦଚିହ୍ନ ସାଧାରଣତଃ ପୃଥକ୍ ରହିଥାଏ ଓ ସେ ଭିତରୁ କେହି ଲେଙ୍ଗଡାଉଥିବା ମଧ୍ୟ ଧରିପଡ଼ିଯାଏ । ପାଦଚିହ୍ନରେ ରକ୍ତ ପଡ଼ିଥିବା ଲୋକଟି ଆହତ ହୋଇଥିବାର ସୂଚନା ଦଏ ।

ଜଙ୍ଗଲରେ ଶ୍ରେଷ୍ଠ ଶ୍ରେଷ୍ଠ କ୍ଷତଗୁଡ଼ିକର ଚିକିତ୍ସା ପାଇଁ ଏହି ଶ୍ରେଷ୍ଠ ବୃକ୍ଷଟିକୁ ଆପଣଙ୍କୁ ଚିହ୍ନାଇ ଦେଉଛୁ । ବୃକ୍ଷଟିର ସ୍ଥାନୀୟ ନାମ 'ବ୍ରହ୍ମବୃକ୍ଷ'; ଉପକାରିତା ଦୃଷ୍ଟିରୁ ତାର ନାମଟି ଅତି ଯଥାର୍ଥ । ଫୁଟେ ଉଚ୍ଚର ଏହି ବୃକ୍ଷଟି ଏଠାକାର ପ୍ରତି ଜଙ୍ଗଲର ପ୍ରାୟ ସବୁଠାରେ ମିଳେ । ଏହାର ଫୁଲ ଡେ'ସି ପରି ହୋଇଥିଲେ ମଧ୍ୟ ଫୁଲର ଡେମ୍ଫଗୁଡ଼ିକ ଡେ'ସିର ଡେମ୍ଫ ଅପେକ୍ଷା ଲମ୍ବ । ପତ୍ରଗୁଡ଼ିକ ଦେବଦାରପତ୍ର ପରି ମାଂସଳ ଓ ପତ୍ରର ଦୁଇ କଡ଼ରେ କରତଦାନ୍ତ ପରି କଟା । ପତ୍ରରୁ କେତୋଟି ପାଣିରେ ଧୋଇ ଧୂଳି ବାଲି ପରିଷ୍କାର କଲା ପରେ ତାହାକୁ ମଳି ରସଟିକ କ୍ଷତରେ ପକାଇଦେବେ । କ୍ଷତ ଅଳ୍ପ ଗଭୀର ହୋଇଥିଲେ ସେଥିପାଇଁ ଅନ୍ୟ ଚିକିତ୍ସା ଦରକାର ହେବନାହିଁ—ପତ୍ରରସରେ ହିଁ ଦିନେ ଦୁଇଦିନରେ ଘା' ଶୁଖିଯିବ ।

ବନ୍ଧୁଗଣ ! ଭାରତ ଓ ବ୍ରହ୍ମଦେଶର ଜଙ୍ଗଲରେ ତାଲିମ୍ ଦେଲାବେଳେ ସମୟ ଅଭାବରୁ ଆପଣମାନଙ୍କୁ ବହୁତ ଖଟାଇଥିଲି । ସେଥିପାଇଁ ଏହା ଭିତରେ ମୋତେ କ୍ଷମା କରିଥିବେ ବୋଲି ଆଶା କରିବା ସଙ୍ଗେ ଆମେ ଏଠାରେ ଯାହା ଶିକ୍ଷା କରିଥିଲେ, ତାହା ଆପଣମାନେ ଭୁଲି ନଥିବେ ବୋଲି ମୋର ବିଶ୍ୱାସ । ଜଙ୍ଗଲରେ ଖାଦ୍ୟୋପଯୋଗୀ ଫୁଲ ଓ ଫଳମୂଳ କିପରି ଚିହ୍ନଟ କରିଯାଏ—ଚାହା ବା କଫି ବଦଳରେ କ'ଣ ବ୍ୟବହାର କରିଯାଇପାରେ—ଜ୍ୱର, ପାଣି ବା ଡାଇରିଏସିବା ଉପଶମ କରିବା ପାଇଁ କେଉଁ ବୃକ୍ଷ, ଛେଲି ବା ପତ୍ରଗୁଡ଼ିକ ବିଶେଷ ଉପକାରୀ—ଷ୍ଟ୍ରେଚର୍ ପ୍ରସ୍ତୁତ କିମ୍ବା ଅସୁସ୍ଥ ପରିବହନ ପାଇଁ ଲଇ-ଲଟାରୁ କିପରି ଦଉଡ଼ି ବିଳାଯାଏ—ଯିମିରି ଓ ଗୋଡ଼ ଫାଟିବାରୁ ରକ୍ଷା ପାଇବା ପାଇଁ କଣ କରିବା ଦରକାର—ଓଦା ଜଙ୍ଗଲରେ ଶୁଖିଲାକାଠ କେଉଁଠାରେ ମିଳେ ଓ ଦିଆସିଲି ବିନା ସେଥିରେ କିପରି ନିଆଁ ଧରାଇବାକୁ ପଡ଼େ—ବିନା ବନ୍ଧୁକରେ କିପରି ଶିକାର କରାଯାଏ—ସାଧାରଣ ବାସନକୁସନର ଅଭାବରେ କିପରି ରନ୍ଧାଯାଏ, ଲୁଣ ପରିବର୍ତ୍ତେ କଣ ବ୍ୟବହାର କରିଯାଇପାରେ ଓ ତାହା କେଉଁଠାରେ ମିଳେ—ସାପକାମୁଡ଼ା-ଠାରୁ ଆରମ୍ଭ କରି କ୍ଷତ ଏବଂ ଆନ୍ତ୍ରିକ ବିଭ୍ରମର ଚିକିତ୍ସା ପାଇଁ ଜଙ୍ଗଲରେ କି ପ୍ରକାର ବ୍ୟବସ୍ଥା କରିବା ସମ୍ଭବ—ଏସବୁ ଶିକ୍ଷା ପାଇବା ସଙ୍ଗେ ସଙ୍ଗେ ନିଜର ସ୍ୱାସ୍ଥ୍ୟରକ୍ଷା କରିବା ଏବଂ ଜଙ୍ଗଲର ଜୀବଜନ୍ତୁଙ୍କ ସହିତ ଶାନ୍ତିପୂର୍ଣ୍ଣଭାବେ ସହାବସ୍ଥାନ କରିବାକୁ ମଧ୍ୟ ଆମେ ଶିକ୍ଷା ପାଇଛୁ । ଆପଣମାନଙ୍କୁ ସାମାନ୍ୟ ଯେତିକି ଶିକ୍ଷା ଦେଇଛୁ, ତା'ଠାରୁ ଯଥେଷ୍ଟ ବେଶି ଆପଣମାନଙ୍କଠାରୁ ହିଁ ଶିଖିବାର ସୁଯୋଗ ପାଇଛୁ । ସେ ପାଠ୍ୟକ୍ରମ ସଙ୍କଳନରେ ଆମ ପ୍ରତ୍ୟେକଙ୍କର କିଛି କିଛି ଅବଦାନ ଥିଲା । ଭାରତର ଜଙ୍ଗଲ ଓ ପାହାଡ଼ ସମ୍ବନ୍ଧରେ କିଛି

Digitized by srujanika@gmail.com

କିଛି ତଥ୍ୟ ମୁଁ ସଂଗ୍ରହ କରିଥିଲି । ଯୁକ୍ତରାଜ୍ୟ, ଯୁକ୍ତରାଷ୍ଟ୍ର, କାନାଡ଼ା, ଅଷ୍ଟ୍ରେଲିଆ, ନିଉଜିଲାଣ୍ଡ ଏବଂ ଆଫ୍ରିକା ଆଦି ବହୁ ଦେଶର ସହର ଓ ଗ୍ରାମାଞ୍ଚଳରୁ ସଂଗୃହୀତ ତଥ୍ୟମାନ ଦାନ କରି ଆପଣମାନେ ଯେ ପାଠ୍ୟକ୍ରମକୁ ବହୁଗୁଣେ ପରିପୁଷ୍ଟ ଓ ପରିବର୍ଦ୍ଧିତ କରିଥିଲେ । ଉତ୍ତର ଜୀବନରେ ଜଙ୍ଗଲପାହାଡ଼ରେ ବସବାସ କରି ରହିବା ପାଇଁ ଆମେ ଜଙ୍ଗଲତଥ୍ୟ ଶିକ୍ଷା କରୁ ନଥିଲେ । ପ୍ରାଣ ପ୍ରତି ପଦେ ପଦେ ବିପଦ ଥିବା, ସମ୍ପୂର୍ଣ୍ଣ ଅପରିଚିତ ଏକ ପରିବେଶରେ ପ୍ରବେଶ କରିବା ପୂର୍ବରୁ ନିଜ ଉପରେ ଓ ପରସ୍ପର ଉପରେ ବିଶ୍ୱାସ ଜାତ କରାଇବା, ଅଜଣା ବିପଦ ପ୍ରତି ଅହେତୁକ ଆତଙ୍କ ହରାଇବା ଏବଂ ଜଙ୍ଗଲ-ପାହାଡ଼ ସହିତ ଆଜୀବନ ପରିଚିତ ଜଙ୍ଗଲଯୁଦ୍ଧନିପୁଣ ଏକ ଦୁର୍ଦ୍ଧର୍ଷ ଶତ୍ରୁକୁ ଦକ୍ଷିଣ-ପୂର୍ବ ଏସିଆର ଅରଣ୍ୟମୟ ରଣାଙ୍ଗନରେ ସମ୍ମୁଖ ସଂଗ୍ରାମରେ ପରାଜିତ କରିବା ହିଁ ଥିଲା ଆମ ଶିକ୍ଷାର ଉଦ୍ଦେଶ୍ୟ । ସେ ସେତିକ ଉଦ୍ଦେଶ୍ୟ ସାଧନ କରିବା ନିମନ୍ତେ ଆମେ ସମ୍ମିଳିତଭାବେ ଜଙ୍ଗଲ ବିଷୟରେ ଯେତିକି ଶିକ୍ଷା କରିଥିଲୁ, ଜଙ୍ଗଲଯୁଦ୍ଧ ପାଇଁ ଯଥେଷ୍ଟ ହୋଇଥିଲେ ମଧ୍ୟ ତାହା ଥିଲା ଜ୍ଞାନର ଏକ ଅସରନ୍ତି ଭଣ୍ଡାରର ଅତି ସାମାନ୍ୟ, ଅତି ନଗଣ୍ୟ ଏକ ଅଂଶ । ପ୍ରକୃତିରୂପୀ ମହାଗ୍ରନ୍ଥର ଆରମ୍ଭ ବା ଶେଷ ନାହିଁ । ଜୀବନବ୍ୟାପୀ ସାଧନାଦ୍ୱାରା ଯେଉଁ ଜ୍ଞାନର କିୟଦଂଶ ମଧ୍ୟ ଆୟତ୍ତ କରାଯାଇ ନ ପାରେ, ଅଳ୍ପ କେତେ ମାସର ତାଲିମ କାର୍ଯ୍ୟକ୍ରମରେ ତାହାର କେତେକାଂଶ ବା ଶିକ୍ଷା ଦିଆଯିବା ସମ୍ଭବ ?

ବସନ୍ତ ପ୍ରଭାତରେ ଆଜି ତନ୍ମୟ ହୋଇ ବୁଲୁ ବୁଲୁ ସମତଳ ଅଞ୍ଚଳ ଅତିକ୍ରମ କରି ଆମେ ହିମାଳୟର ପାଦଦେଶରେ ପହଞ୍ଚିଲୁଣି । ସମତଳ ଭୂମି ଏବଂ ଏଠାକାର ଉଦ୍ଭିଦଜୀବନ ମଧ୍ୟରେ ଭିନ୍ନତା ଆପଣ ଲକ୍ଷ୍ୟ କରୁଥିବେ । ଏ ସବୁ ଅଞ୍ଚଳରେ ଡିମିରି ଓ କୋଳିଗଛର ପ୍ରାଚୁର୍ଯ୍ୟ ଦେଖାଯାଏ । ପାଚିଲା ଡିମିରି ଓ କୋଳି ଲୋଭରେ ଏଠାକୁ ଆକର୍ଷିତ ହେଉଥିବା ନାନା ଫଳଭୋଜୀ ପକ୍ଷୀଙ୍କ ମଧ୍ୟରୁ ଭାଲିଆଖାଇ ପ୍ରତି ଧ୍ୟାନ ଦିଅନ୍ତୁ । ବିଚିତ୍ର ଏହି ପକ୍ଷୀ ଗଛ-କୋରଡ଼ରେ ବସାକରେ । ମାଈ ପକ୍ଷୀଟି ବସାରେ ପଶିଲା ପରେ ତାର ଅଣ୍ଡା ଗଳିବା ଭଳି କଣାଟିଏ ରଖି ପୁରୁଷପକ୍ଷୀ କୋରଡ଼ର ମୁହଁ ପଦାରୁ ନିବୁଜ କରି ମୁଦିଦିଏ । କାରାରୁଦ୍ଧା ମାଈପକ୍ଷୀଟି ଅଣ୍ଡା ଦୁଇଟି ଉଷୁମାଇବା ସମୟରେ ତାର ଖାଦ୍ୟପେୟ ଓ ରକ୍ଷଣାବେକ୍ଷଣର ଗୁରୁଦାୟିତ୍ୱ ପୁରୁଷପକ୍ଷୀକୁ ହିଁ ଗ୍ରହଣ କରିବାକୁ ପଡ଼େ । ପ୍ରଚୁର ଖାଦ୍ୟ ଖାଇ ସର୍ବଦା ବସିରହିବା ଫଳରେ ମାଈପକ୍ଷୀଟି ଏତେ



Digitized by srujanika@gmail.com

ମୋଟା ହୋଇଯାଏ ଯେ ଛୁଆ ଫୁଟିଲାବେଳକୁ ସେ ଆଉ ଉଡ଼ିପାରେ ନାହିଁ । ଫଳରେ ଦାୟିତ୍ୱରୁ ନିଷ୍କୃତି ପାଇବା ପରିବର୍ତ୍ତେ ଡିମ୍ବ ଫୁଟିଲା ପରେ ପୁରୁଷ ପକ୍ଷୀଟିକୁ ଶାବକ ପାଳନ ସହିତ ପ୍ରଣୟିନୀର ମଧ୍ୟ ପ୍ରତିପୋଷଣ କରିବାକୁ ପଡ଼େ ।

ଭାଲିଆଖାଇର ବିଚିତ୍ର ଗଠନ, ସ୍ୱରଯନ୍ତ୍ରଖଚିତ ତାର ପ୍ରକାଣ୍ଡ ଥଣ୍ଟ ଏବଂ କଷ୍ଟସାପେକ୍ଷ ତାର ଅନିପୁଣ ଉଡ଼ିବାର ଭଙ୍ଗୀ ଦେଖିଲେ ମନେହୁଏ ଯେତେ ଅବା ବିବର୍ତ୍ତନର ଅଗ୍ରଗତିକୁ ବାଦ ପକାଇ ଏପର୍ଯ୍ୟନ୍ତ ସେ ବାଟରେ କେଉଁଠି ଅଟକି ରହିଯାଇଥିଲା । କୋରଡ଼ର ମୁହଁ ବୁଜି ମାଈପକ୍ଷୀଟିକୁ ବହାରେ ବନ୍ଦ କରି ରଖିବାରୁ ଜଣାପଡ଼େ ଯେ ଆଦିମଯୁଗର କୌଣସି ଶତ୍ରୁ ଠାରୁ ସାଥୀଙ୍କୁ ରକ୍ଷାକରିବା ପାଇଁ ଉଦ୍ଦିଷ୍ଟ ଏହି ଅତି ପ୍ରାଚୀନ ବ୍ୟବସ୍ଥାଟିକୁ ସେ ଏପର୍ଯ୍ୟନ୍ତ ପରିହାର କରିନାହିଁ । ଶୁଇ, ବ୍ରମଗାଙ୍ଗ୍ରା ଓ କାଠହଣା ଆଦି ଛୋଟ ଛୋଟ ପକ୍ଷୀ ମଧ୍ୟ ଗଛକୋରଡ଼ରେ ବସା କରନ୍ତି । ସେମାନଙ୍କୁ ମଧ୍ୟ ନାନା ଶତ୍ରୁଙ୍କଠାରୁ ନିଜକୁ ରକ୍ଷା କରିବାକୁ ପଡ଼େ । ସେ ସବୁ ପକ୍ଷୀଙ୍କ ତୁଳନାରେ ଭାଲିଆଖାଇ କେବଳ ଅତିକାୟ ନୁହେଁ—ତାର ଥଣ୍ଟ ମଧ୍ୟ ଅତି ପ୍ରକାଣ୍ଡ ଓ ଶକ୍ତ । ଏ ସବୁ ସତ୍ତ୍ୱେ କେବଳ ଭାଲିଆଖାଇ ଯେ କାହିଁକି ତା ସାଥୀକୁ କୋରଡ଼ ଭିତରେ ଆବଦ୍ଧ କରି ରଖେ, ତାହାର କାରଣ ବୁଝିହୁଏ ନାହିଁ । ଏହା ଛଡ଼ା ଭାଲିଆଖାଇର ଆଉରି ଏକ ବିଚିତ୍ର ସ୍ୱଭାବ ଅଛି, ଯାହା ଅନ୍ୟ ପକ୍ଷୀଠାରେ ଦେଖାଯାଏ ନାହିଁ । ଭାଲିଆଖାଇ ତାର ଲାଞ୍ଜ ଉପରକୁ ଥିବା ରଙ୍ଗ ମୁଣିଟିରୁ ଥଣ୍ଟରେ ହଳଦିଆ ରଙ୍ଗ ନେଇ ଦୁଇ ଡେଣାର ଧଳା ପରଗୁଡ଼ିକୁ ରଙ୍ଗ କରେ । ରଙ୍ଗଟି ପକ୍କା ନୁହେଁ; ରୁମାଲରେ ତାହା ପୋଛି ହୋଇଯାଏ ଓ ବର୍ଷାରେ ଧୋଇଯାଏ ମଧ୍ୟ । ଭାଲିଆଖାଇ ନିଜକୁ ଏପରି ରଙ୍ଗାଇବାର ଉଦ୍ଦେଶ୍ୟ କଣ ମୋତେ ଜଣାନାହିଁ । ସମ୍ଭବତଃ ବିବର୍ତ୍ତନର କୌଣସି ସୋପାନରେ ବିଶେଷ କୌଣସି ଶତ୍ରୁଠାରୁ ନିଜକୁ ଗୋପନ ରଖିବାପାଇଁ ସେ ଏହି ଉପାୟ ଅବଲମ୍ବନ କରୁଥିଲା । ବର୍ତ୍ତମାନ କେବଳ ଚିତାବାଘ ହିଁ ଭାଲିଆଖାଇକୁ କେବେ କେମିତି ଆକ୍ରମଣ କରେ । ତେବେ ଚିତାବାଘ ରାତିରେ ଶିକାର ମାରୁଥିବାରୁ ଡେଣାରେ ହଳଦିଆ ରଙ୍ଗ ବୋଳିବା ଦ୍ୱାରା ତା'ଠାରୁ ନିଷ୍କୃତି ମିଳୁ ନ ଥିବ ।

ଭାଲିଆଖାଇ ଛଡ଼ା ଡିମିରି ଓ କୋଳିବଣରେ ନାନା ରକମର ବନ୍ଧୁ ଫଳଭୋଜୀ ପକ୍ଷୀ ମଧ୍ୟ ଅଛନ୍ତି । ସିନ୍ଦୁରମୁଣି, ସବୁଜବସନ୍ତ ଆଦି ଦୁଇପ୍ରକାର ହରଡ଼ଚଢ଼େଇ, ହରିବା ଓ ଗୋବରି ଚଢ଼େଇ, ପାହାଡ଼ିଆ ଓ ଜଙ୍ଗଲ ବୁଲ୍‌ବୁଲ୍, ଚନ୍ଦନା ଓ ନନ୍ଦକାଣୁଆ ଏବଂ ନୀଳମୋହନଙ୍କୁ ସେ ଭିତରୁ ଚିହ୍ନଟ କରିହୁଏ । ଗଛମୂଳରେ ଶୁଖିଲାପତ୍ର ଝେଲାଇ ପର୍ଯ୍ୟଟକଙ୍କ କସ୍ତୁରି ଚଢ଼େଇ ମହା ଆନନ୍ଦରେ ଝଡ଼ିପଡ଼ିଥିବା ପାଚିଲା ଡିମିରି ଓ କୋଳି ଖାଇବାରେ ଲାଗିଛନ୍ତି । କସ୍ତୁରି ଚଢ଼େଇ ସବୁ ପକ୍ଷୀଙ୍କପରି ନିଜର ପାର୍ବତ୍ୟ ବାସସ୍ଥାନ ଛାଡ଼ି ଏଠାକୁ ଆସିଛନ୍ତି; ଶୀତ ଋତୁର ଅବସାନରେ ସେହିମାନେହିଁ ସର୍ବପ୍ରଥମେ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ କରିବେ । ଡିମିରି ଗଛ ପାଖରେ ବଣପୋଡ଼ିରେ ପଦା ହୋଇଥିବା ପଟାଏ ଖୋଲା ଜାଗାକୁ ଛେଦ କରି ଶିକାରପଥଟିଏ ସଳଖରେ ଉଠିଯାଇଛି ପାହାଡ଼ ଉପରି ଏକ ଛୋଟ ଅଗଣାର

Digitized by srujanika@gmail.com

ଚବକା ପାଖକୁ । ପଥରଖୋଲରୁ ବହିଆସୁଥିବା ଝରୁ ଝରଣାଟିଏ ସେ ଚବକାକୁ ପାଣି ଯୋଗାଏ । ଚବକାଠାରୁ ଅଳ୍ପ ଛଡ଼ାରେ କୁସୁମ ଗଛଟିଏ ଅଧରୁ ହଣାହୋଇଥିବା ଲକ୍ଷ୍ୟ କରିବେ । ଗଛଟିର ମୂଳଗଣ୍ଡିର ଆରପାଖେ ପୋଡା ପଥର ପଶ ଭୂଇଁରୁ ଉଠିଥିବା ମୁଣ୍ଡା ମୁଣ୍ଡା ପୋଛବଲୁଣ ତୃଣଭୋଜୀ ପଶୁମାନେ ଗୃହିବାକୁ ଭଲ ପାଆନ୍ତି । କଟା କୁସୁମ ଗଛଟି ପଛରେ ଏକ ବଡ଼ିଆ ଇତହାସ । ପୂର୍ବେ ଗ୍ରେଟ୍ ଶିକାରୀମାନେ ସେ ଗଛଟିରେ ମଞ୍ଚା ବାନ୍ଧି ନିୟମିତ ଶିକାର ମାରୁଥିଲେ । ଲୁଣ ଗୃହିବାକୁ କମ୍ବା ପାଣି ପିଇବାକୁ ଆସିଥିବା ଜନ୍ତୁଙ୍କୁ ମାରବା ବେଆଇନ । ତେବେ ଗ୍ରେଟ୍ ଶିକାରୀଙ୍କ ପାଖରେ ଆଇନକାନୁନର ମୂଲ୍ୟ ବା କ'ଣ ? ମଞ୍ଚାଗୁଡ଼ିକୁ ବହୁବାର ଭଙ୍ଗାଭଙ୍ଗି କଲା ପରେ ମଧ୍ୟ ସେମାନେ କାବୁ ନ ହେବାରୁ ଶେଷରେ ଗଛଟିକୁ ମୁଁ ହଣାଇଦେଲି ।

ମାଂସଭୋଜୀ ପଶୁ ପାଣିକୂଳରେ ବା ଲୁଣମୁଣ୍ଡା ପାଖରେ ଶିକାର ମାରନ୍ତି ନାହିଁ ବୋଲି ଲୋକେ କହିବା ମୁଁ ଶୁଣିଛି । ଅନ୍ୟ ଦେଶର ଶିକାରୀ ଜନ୍ତୁ ଅବା ସେତକ ଦୟାବାନ ହୋଇଥିବେ ! ତେବେ ଭାରତର ହିଂସ୍ରଜନ୍ତୁ ଯେ ଲୁଣମୁଣ୍ଡା ପାଖରେ ଶିକାର ମାରିବାକୁ ଥରେ ହେଲେ ପଶ୍ଚାଦ୍‌ପଦ ହୁଅନ୍ତି ନାହିଁ—ଏହା ମୁଁ ଜୋରଦେଇ କହିପାରେ । ପ୍ରକୃତରେ କହିବାକୁ ଗଲେ, ଲୁଣମୁଣ୍ଡା ଆଖପାଖରେ ହିଁ ସେମାନେ ସବୁଠାରୁ ବେଶି ଶିକାର ମାରନ୍ତି । ନିକଟସ୍ଥ ଜଙ୍ଗଲରେ ଯଥେଷ୍ଟ ହରିଣ ବା ମାଙ୍କଡ଼ ଥିଲେ ଲୁଣମୁଣ୍ଡା ପାଖରେ ସେମାନଙ୍କ ଦରଖିଆ ମଢ଼, ଶିଙ୍ଗ ଓ ହାଡ଼ ଅଧିକ ଜମିଥିବା ଦେଖାଯାଏ । ମଲାଜନ୍ତୁଙ୍କ ଶିଙ୍ଗ ଓ ହାଡ଼ ଲୋଭରେ ଲୁଣମୁଣ୍ଡା ଆଖପାଖରେ ଝିଙ୍କ ମଧ୍ୟ ବହୁସଂଖ୍ୟାରେ ବାସ କରନ୍ତି ।

ଶିକାରନଗରରେ ପାହାଡ଼ ଚୂଡ଼ାଯାଏ ଚଢ଼ି ଏହି ବଣବେଷ୍ଟିତ ପାର୍ବତ୍ୟ ଅଞ୍ଚଳ ଉପରେ ଥରେ ଆଖି ବୁଲାଇନେବା । ଆମ ବାଡ଼ି ପଛ ନାଳକୂଳରୁ ଆଜିର ଯାତ୍ରା ଆରମ୍ଭ କରିଥିଲୁ । ପାହାଡ଼ଟିରୁ ଏହି ଘଞ୍ଚ ଜଙ୍ଗଲ ସେହି ନାଳକୂଳ ପର୍ଯ୍ୟନ୍ତ ଲମ୍ବିଥିବା ଲକ୍ଷ୍ୟ କରନ୍ତୁ । ଜଙ୍ଗଲଟିରେ ବଡ଼ ଗଛ ବେଶି ନାହିଁ; ବ୍ୟବସାୟ ଦୃଷ୍ଟିରୁ ବିଶେଷ ଲାଭଦାୟକ ହୋଇ ନ ଥିବାରୁ ଜଙ୍ଗଲଟି ମନୁଷ୍ୟର ଧ୍ୱଂସକାରୀ ସ୍ପର୍ଶରୁ ଏପର୍ଯ୍ୟନ୍ତ ରକ୍ଷା ପାଇଛି । ଜଙ୍ଗଲ ମଝିମଝିରେ ଯେଉଁ ଫିକା ସବୁଜ ରଙ୍ଗର ଚକଡ଼ା କେତୋଟି ଦେଖାଯାଉଛି, ବର୍ଷାପାଣିରେ ପାହାଡ଼ରୁ ଧୋଇଆସିଥିବା ଶିଶୁମଞ୍ଜି ଗୁଡ଼ିଏ ଧରି ଗଜା ଶିଶୁଗଛର ଗ୍ରୋଟ ଜଙ୍ଗଲଟିଏ ସେଠାରେ ସୃଷ୍ଟି ହେଲାଣି । କେଇ ବର୍ଷ ପରେ ସେଠାରୁ ମୂଲ୍ୟବାନ ଶିଶୁକାଠ ଆମଦାନୀ ହେବ ଏବଂ ଘରର ଆସବାବପତ୍ର ବଡ଼ ବିଶେଷକରି ଶଗଡ଼ ଚକ ସେଥିରୁ ତିଆରି କରାଯିବ । ଘନ ସବୁଜ ରଙ୍ଗର ଚକଡ଼ାଗୁଡ଼ିକରେ ପଞ୍ଚଭାବେ ଉଠିଥିବା ରୁମୀ ଗଛର ଡାଳରୁ ଲାଲ୍ ରଙ୍ଗର ପେନ୍ଥା ପେନ୍ଥା ଫଳ ଝୁଲୁଥିବା ଦେଖାଯାଉଛି । ରୁମୀଫଳ ଉପରେ ବୋଲ ବସିଥିବା ଲାଲ୍ ରଙ୍ଗର 'କମଳାଗୁଣ୍ଡ' ଏଠାକାର ହାଟବଜାରରେ କିଣିବାକୁ ମିଳେ । ଉଚ୍ଚ ପାର୍ବତ୍ୟ ଅଞ୍ଚଳର ସମ୍ବଳହୀନ ଦରିଦ୍ର ଅଧିବାସୀମାନେ ପ୍ରବଳ ଶୀତରୁ ରକ୍ଷା ପାଇବା ଏବଂ ଜୀବିକା ନିର୍ବାହର ଉପାୟ କରିବା ପାଇଁ ଯାଯାବର ପକ୍ଷୀଙ୍କ ପରି ଶୀତଦିନେ ଏସବୁ ତଳପାର୍ବତ୍ୟ ଅଞ୍ଚଳକୁ ଚାଲିଆସନ୍ତି ।

Digitized by srujanika@gmail.com

ଧାତ୍ୱବାହକ କର୍ମପନ୍ଥାରୁ ଧନଟିଏ ଅବ୍ୟାହତ ପାଇଲେ ଚିଲରୁ ବୁଢ଼ା ପର୍ଯ୍ୟନ୍ତ ସେମାନେ ସମସ୍ତେ 'କମଳାଗୁଣ୍ଡ' ସଂଗ୍ରହ କରିବାରେ ଲାଗିପଡ଼ନ୍ତି । ବୃକ୍ଷଗଛର ପାଚିଲା ଡାଳଗୁଡ଼ିକୁ ହାଣି ଫଳଗୁଡ଼ିକୁ ସେମାନେ ବଡ଼ ବଡ଼ ପାଚିଆମୁହାଁ ଝୁଡ଼ିରେ ଗୁଡ଼ାଇ ରଖନ୍ତି । ଝୁଡ଼ିତଳେ ବସ୍ତ୍ରହୋଇଥିବା ହରିଣଚର୍ମ ବା କନା ଖଣ୍ଡକରେ କମଳାଗୁଣ୍ଡ ଝରି ପଡ଼ାଯାଇ-ଥାଏ । ପାଞ୍ଚଜଣିଆ ଏକ ସାଧାରଣ ପରିବାରର ବାପ, ମା' ଓ ପିଲା ଦିନୋଟି ମିଶି ଦୈନିକ ପ୍ରାୟ ଦୁଇ କେ. ଜି. କମଳାଗୁଣ୍ଡ ଆଦାୟ କରନ୍ତି । ଚଳନ୍ତି ଦର ଅନୁସାରେ ସେଥିକ କମଳାଗୁଣ୍ଡ ଟଙ୍କାଏରୁ ଦୁଇଟଙ୍କା ଭିତରେ ବିକ୍ରୟ ହୁଏ* । ଭାରତ ଓ ମଧ୍ୟପ୍ରାଚ୍ୟରେ କମଳା-ଗୁଣ୍ଡଦ୍ୱାରା ପଶମ ରଙ୍ଗ କରାଯାଏ । ପୂର୍ବେ ଯୁକ୍ତରାଷ୍ଟ୍ର ଆମେରିକାରେ ଲହୁଣୀ ରଙ୍ଗାଇବା ପାଇଁ ଏହାକୁ ବ୍ୟାପକଭାବେ ବ୍ୟବହାର କରାଯାଉଥିଲା । ପରେ ଅସାଧୁ ବ୍ୟବସାୟୀମାନେ ସେଥିରେ ଇଟାଗୁଣ୍ଡ ମିଶାଇବା ଫଳରେ ଆମେରିକାରେ ତାହାର ବ୍ୟବହାର ବନ୍ଦ କରିଦିଆଗଲା । କମଳାଗୁଣ୍ଡକୁ ଏଠାକାର ଲୋକେ ଔଷଧରୂପେ ବ୍ୟବହାର କରନ୍ତି । ବୃକ୍ଷଫଳ ମଧ୍ୟ ସୋରିଷ-ତେଲରେ ଜବ୍‌ହୋଇ ଆମବାତର ଚିକିତ୍ସାରେ ପ୍ରୟୋଗ କରାଯାଏ ।

ଶିଶୁ ଓ ରୁମା ଜଙ୍ଗଲର ମଝିମଝିରେ ଚକଡ଼ା ଚକଡ଼ା ଖଇରବଣ ଦେଖାଯାଉଛି । ଖଇର ଗଛର ପତ୍ରଗୁଡ଼ିକ ପକ୍ଷୀର ପର ଭଳି ଅତି ସୂକ୍ଷ୍ମ ଓ କୋମଳ । ଖଇର କାଠରୁ ଭଲ ଲଙ୍ଗଳମୁଣ୍ଡା ତିଆରି ହୁଏ । ଏହାଛଡ଼ା ଖଇର ତିଆରି ଭିତର ପ୍ରଦେଶର ଅସଂଖ୍ୟ ଲୋକଙ୍କ ଜୀବିକା ନିର୍ବାହ ପାଇଁ ମଧ୍ୟ ଏକ ଅତି ଉପାଦେୟ କୁଟୀରଶିଳ୍ପ । ଶୀତ ଗ୍ରୀଷ୍ମମାସ ଜଙ୍ଗଲ-ସେଟ୍ ଏଠାକାର ଗାଁଗଣ୍ଡାର ହଜାର ହଜାର ଲୋକ ଧନରତ୍ନ ଲାଗି ଖଇର ତିଆରି କରନ୍ତି । ସାମରିକ ପୋଷାକଠାରୁ ମାଛଧରା ଜାଲ ପର୍ଯ୍ୟନ୍ତ ରଙ୍ଗାଇବା ପାଇଁ ବ୍ୟବହୃତ ହେଉଥିବା ପ୍ରସିଦ୍ଧ 'ଖାକି' ରଙ୍ଗ ମଧ୍ୟ ଖଇରର ଏକ ଉପଜାତ ସାମଗ୍ରୀ । ମିର୍ଜା ନାମକ ମୋର ଜଣେ ବନ୍ଧୁ ସର୍ବପ୍ରଥମେ ଖଇରରୁ ଖାକିରଙ୍ଗ ଆବିଷ୍କାର କରିଥିଲେ । କରେଇଏ ଫୁଟନ୍ତା ଖଇର ଉପରେ ନଇଁ ପଡ଼ୁ ପଡ଼ୁ ମିର୍ଜାଙ୍କର ଧଳା ରୁମାଲଟି ସେଥିରେ ଖସିପଡ଼ିଲା । ମିର୍ଜା ରୁମାଲଟିକୁ ଧୋବାଘରକୁ ପଠାଇଲେ; ଧୋବା ସେଥିରୁ ଚିହ୍ନଟିଏ ହେଲେ ରଙ୍ଗ ଛଡ଼ାଇ ନାହିଁ ଦେଖି ତାକୁ ଗାଳିମନ୍ଦ କରି ଧୁଲେଇ କରି ଆଣିବାପାଇଁ ରୁମାଲଟି ଫେରାଇଦେଲେ । ଧୋବା ପାରୁପର୍ଯ୍ୟନ୍ତ ଚେଷ୍ଟାକରି ମଧ୍ୟ ରୁମାଲଟିରୁ ରଙ୍ଗ ଛଡ଼ାଇ ନ ପାରିଲାରୁ ତାହା ପକ୍‌କା ରଙ୍ଗ ବୋଲି ଜଣାପଡ଼ିଲା ଏବଂ ପରେ ସେ ରଙ୍ଗର ବହୁଳ ଉତ୍ପାଦନ ପାଇଁ ଇଙ୍ଗ୍ଲଣ୍ଡନଗରରେ କାରଖାନାଟିଏ ବସାଇ ମିର୍ଜା ସେଥିରୁ ବିଶେଷ ଲାଭବାନ ହେଲେ ।

ଜଙ୍ଗଲର ଅଧିକାଂଶ ଗଛପତ୍ର ସବୁଜ ହୋଇଥିଲେ ମଧ୍ୟ ସ୍ଥାନାନୁସାରେ ସବୁଜମାର ଘନତା ଭିତରେ ପାର୍ଥକ୍ୟ ଲକ୍ଷ୍ୟ କରିବେ । ବିସ୍ତୀର୍ଣ୍ଣ ଏହି ସବୁଜ ଆସ୍ତରଣ ମଧ୍ୟରେ

* ବର୍ତ୍ତମାନ କମଳାଗୁଣ୍ଡର ପ୍ରଚଳିତ ଦର ଦେ: କି ପ୍ରତି ପ୍ରାୟ ପାଠିଏ ଟଙ୍କା—ଅନୁବାଦକ ।

Digitized by srujanika@gmail.com

ସ୍ଥାନେ ସ୍ଥାନେ ସୁନେଲି, ଲାଲ୍, ଗୋଲାପୀ, ପାଟଳ ଓ ନାରଙ୍ଗୀ ରଙ୍ଗ ବହୁଳ ହୋଇ ପଡ଼ିଲା ପରି ଦେଖାଯାଉଛି । ନାରଙ୍ଗୀ ଫୁଲଗୁଡ଼ିକ ଶ୍ରେଷ୍ଠ ପଳାଶ । ଏହି ପଳାଶ ଗଛରୁ ନିଃସୃତ ହେଉଥିବା ପଦ୍ମରାଗ ପରି ରକ୍ତିମ ଏକ ରଙ୍ଗୀନ୍ ଅଠା ଅତି ଦାମିକା ରେଶମ ରଙ୍ଗାଇବା ପାଇଁ ବ୍ୟବହାର କରାଯାଏ । ସୁନାଝରି ଫୁଲର ଡାଳ ଚାରି ଫୁଟ୍ ଲମ୍ବ ଝରିଗୁଡ଼ିକ ଏଠାରୁ ଏକ ସୁନେଲି ପ୍ରଚ୍ଛଦ ପରି ଦେଖାଯାଉଛି । ସୁନାଝରି ଫଳର ଦୁଇଫୁଟ ଲମ୍ବ ଖୋଷା-ଗୁଡ଼ିକରୁ ପ୍ରସ୍ତୁତ କରାଯାଉଥିବା ଅଠାଳିଆ ମଧୁର ରସ କୁମାୟୁଁ ଅଞ୍ଚଳସାରା ଜରେଚକ ଭାବେ ବ୍ୟବହୃତ ହୁଏ । ଦେବକାଞ୍ଚନ ଗଛଗୁଡ଼ିକ ପାଟଳ ରଙ୍ଗର ବଡ଼ ବଡ଼ ଫୁଲରେ ଭରିହୋଇଛି । କୁସୁମ ଗଛର ପତ୍ରଗୁଡ଼ିକ ଋତୁରେ ବିଭିନ୍ନ ପ୍ରକାର ଗୋଲାପୀ ରଙ୍ଗ ଦେଖା-ଯାଉଛି; ଶଙ୍ଖ ରଙ୍ଗର ଅତି ଫିକା ଗୋଲାପୀରୁ ଗାଢ଼ ଗୋଲାପୀ ରଙ୍ଗର ପତ୍ରମାନ ଗୋଟିଏ ଗଛରେ ମଣ୍ଡି ହୋଇ ରହିଛି । ଲାଲ ରଙ୍ଗର ଶିମିଳିଫୁଲ ପଶୁପକ୍ଷୀଙ୍କର ଅତି ପ୍ରିୟଖାଦ୍ୟ । ମଧୁପାୟୀ ପକ୍ଷୀ ସେଥିରୁ ମହୁ ଶୋଷନ୍ତି; ଶୁଆ ଓ ମାଙ୍କଡ଼ ତାର ମାଂସଳ ପାଖୁଡ଼ାଗୁଡ଼ିକୁ ଖାଇବାକୁ ଭଲପାଆନ୍ତି; ଝଡ଼ିଲା ଫୁଲ ଲୋଭରେ ହରିଣ ଓ ବଣଘୁଷୁରି ଶିମିଳିଗଛ ମୂଳରେ ରୁଣ୍ଡ ହୁଅନ୍ତି । କେଇ ମାସ ଭିତରେ ଏହି ଫୁଲଗୁଡ଼ିକରେ ଖୋଷା ଧରିବ; ଅପ୍ରେଲ ମାସରେ ଝାଞ୍ଜି ପବନ ବୋହିଲେ ଟାଣ କାଠିଆ ଖୋଷାଗୁଡ଼ିକ ଠୋ-ଠା ଫାଟି ତୁଳା ଉଡ଼ିବାକୁ ଲାଗିବ ଏବଂ ଉପଯୁକ୍ତ ସ୍ଥାନରେ ପଡ଼ିଲେ ସେଠାରେ ନୂଆ କରି ଶିମିଳି ଗଛ ଗଜା ଧରିବ ।

ପଶୁପକ୍ଷୀଙ୍କଦ୍ୱାରା ଅପସୃତ ନ ହୋଇ ବାୟୁପ୍ରବାହରେ ସ୍ଥାନାନ୍ତରିତ ହେଉଥିବା ବୀଜଗୁଡ଼ିକର ଅପେକ୍ଷାକୃତ ଉଚ୍ଛ୍ୱାସ ଅଂଶମାନ ଡେଣାର ପାଲ ବା ଉଡ଼ାଜାହାଜର ଗ୍ଲାଇଡ଼ର ପରି କାର୍ଯ୍ୟ କରି ବାୟୁପ୍ରବାହଦ୍ୱାରା ନିଜର ଅପସାରଣକୁ ସାହାଯ୍ୟ କରେ । କେତେକ ଫଳ ବା ବୀଜ ଜଳସ୍ରୋତରେ ଦୂରଦୂରାନ୍ତକୁ ଭାସିଯାଇ ନୂତନ ସ୍ଥାନରେ ଅଙ୍କୁରିତ ହୁଅନ୍ତି । ଏଠାକାର 'ଗୋଟେଲ୍' ଫଳକୁ ପଶୁପକ୍ଷୀ ଖାଆନ୍ତି ନାହିଁ; ସବୁଜ ରଙ୍ଗର ଶ୍ରେଷ୍ଠ ଶ୍ରେଷ୍ଠ ନାସ୍‌ପାତି ପରି ଏହି ଫଳ ପବନରେ ଉଡ଼ିବାର ମଧ୍ୟ ପ୍ରଶ୍ନ ଉଠେନାହିଁ । ଝଡ଼ିଲା ଫଳଗୁଡ଼ିକ ନଈପାଣିରେ ଭାସି ଭାସି ଯାଇ କୂଳରେ ଲାଗି ଗଜା ଧରନ୍ତି । ଏପ୍ରକାର ଗଛ କେବଳ ନଈକୂଳରେ ହିଁ ଦେଖିବାକୁ ମିଳେ । ନଡ଼ିଆ ମଧ୍ୟ କଡ଼ାଯୋଗୁ ପାଣିରେ ବୁଡ଼େନାହିଁ । ସମୁଦ୍ରସ୍ରୋତରେ ହଜାର ହଜାର ମାଇଲ ଭାସି ଭାସି ତାହା ମହାସାଗର ପାର ହୋଇ ଯାଏ ଏବଂ ଦ୍ୱୀପ, ଅନ୍ତରୀପ ଓ ସମୁଦ୍ର ଉପକୂଳରେ ଲାଗି ସେଠାରେ ନଡ଼ିଆବଣ ସୃଷ୍ଟିକରେ ।

ନାଳ ଆରପାଖ ଆମ ଗାଁ ଆଡ଼େ ଥରେ ଦୃଷ୍ଟି ଦିଅନ୍ତୁ । ଗାଁ ତଳ ବିଲମାଳରେ ସଜ ସବୁଜ ଗହମ କ୍ଷେତଗୁଡ଼ିକ ମଝିରେ ଉଜ୍ଜ୍ୱଳ ସୁନେଲି ରଙ୍ଗର କିଆରି କିଆରି ସୋରିଷ ଫୁଲ ଅତି କମନୀୟ ଏକ ବର୍ଣ୍ଣବୈଚିତ୍ର୍ୟ ସୃଷ୍ଟି କରୁଛି । ଗାଁକୁ ଘେରି ରହିଥିବା ପାଚେରିର ଗୋଟିଏ ଅଂଶ ଏଠାରୁ ଧଳା ଗାର ପରି ଦେଖାଯାଉଛି । ପାଚେରିଟିକୁ ଗଢ଼ିବାକୁ ଦୀର୍ଘ

Digitized by srujanika@gmail.com

ଦଶବର୍ଷ ଲାଗିଥିଲା* । ପାଚେରି ପାଖରୁ ଦିଗନ୍ତବ୍ୟାପୀ ଘଞ୍ଚ ଜଙ୍ଗଲ ନିରବଚ୍ଛିନ୍ନଭାବେ ଦିଗ୍‌ବଳୟ ପର୍ଯ୍ୟନ୍ତ ଲମ୍ବିଛି । ଏବେ ଉତ୍ତର ଦିଗକୁ ଥରେ ଅନାଇ ଦେଖନ୍ତୁ । ଏଇଠାରୁ ଆରମ୍ଭ ହୋଇ ଧାଡ଼ି ଧାଡ଼ି ଅସୁମାରି ପର୍ବତ ଦୂର ଦିଗ୍‌ବଳୟରେ ହିମାଳୟର ଚିରତୁଷାରାବୃତ ଶୃଙ୍ଗଗୁଡ଼ିକ ମଧ୍ୟରେ ନିଜକୁ ହଜାଇ ଦେଇଛନ୍ତି ।

ଉତ୍ତୁଙ୍ଗ ହିମାଳୟର ପାଦଦେଶରେ ଆଶ୍ରିତ ବାସନ୍ତୀବାଦ-ପରିହିତ ଏହି ଅପୂର୍ବ ସୁନ୍ଦର, ଅତି ପ୍ରଶାନ୍ତ ଅରଣ୍ୟମୟ ପରିବେଶ ଅସଂଖ୍ୟ ପକ୍ଷୀଙ୍କ ବାସନ୍ତିକ କଳରବରେ ଆଜି ମୁଖରିତ ଓ ଜୀବନ୍ତ । ବନ୍ୟ ପୁଷ୍ପର ମଧୁର ସୁଗନ୍ଧ ଓ ମନ୍ଦର ମଳୟ ସମୀରଣ ପ୍ରକୃତିକୁ ଏକ ନୂତନ ପୁଲକରେ ବିଭୋର କରିଦେଇଛି । ସଂସାରର ବାଧାବନ୍ଧନ ଭୁଲି ଅନ୍ତତଃ ଆଜି ଦିନକ ପାଇଁ ଜଙ୍ଗଲବାସୀ ପଶୁପକ୍ଷୀଙ୍କ ଜୀବନସ୍ରୋତରେ ନିଜକୁ ଭସାଇଦିଅନ୍ତୁ । ସେମାନଙ୍କ ଜୀବନ-ଧାରା ଯେଉଁ କେତୋଟି ନିୟମଦ୍ୱାରା ଶୃଙ୍ଖଳିତ, ମନୁଷ୍ୟକୃତ ଆଇନ୍‌କାନୁନ୍ ତୁଳନାରେ ତାହା ଅତି ପ୍ରାଚୀନ ଏବଂ ବହୁଗୁଣେ ଶ୍ରେୟସ୍କର । ସେ ନିୟମ ପ୍ରତ୍ୟେକ ଜୀବକୁ ତାର ପ୍ରକୃତି ଓ ପ୍ରବୃତ୍ତିମତେ ଜୀବନଯାପନ କରିବାକୁ ପ୍ରଶସ୍ତ ସୁଯୋଗ ଦିଏ । ଭବିଷ୍ୟତର ଭୟ କିମ୍ବା ଅତୀତ ପାଇଁ ଅନୁଶୋଚନା କରିବାର ଅବକାଶ ତାଙ୍କର ନ ଥାଏ । ପ୍ରତି ମୁହୂର୍ତ୍ତରେ ବିପଦର ଆଶଙ୍କା ଲାଗିରହିଥିଲେ ମଧ୍ୟ ଜଙ୍ଗଲର ଜୀବଜନ୍ତୁଙ୍କୁ ତାହା କାତର ବା କାବୁଛୁ ନକରି ବରଂ ସତେଜ ଓ ସଚେତ କରେ ଏବଂ ବଞ୍ଚିରହିବାକୁ ଏକ ଉନ୍ମାଦନାପୂର୍ଣ୍ଣ ପ୍ରତିଯୋଗିତାରେ ପରିଣତ କରି ଜୀବନର ଆସ୍ୱାଦନକୁ ନିବିଡ଼ତାର କରି ତୋଳେ ।

ଜଙ୍ଗଲରେ ପ୍ରତ୍ୟେକଟି ଶବ୍ଦର ଅର୍ଥ ଓ ତାତ୍ପର୍ଯ୍ୟ ଅଛି । ଶବ୍ଦର ମର୍ମଭେଦ କରିବା ତାହାଦ୍ୱାରା ପଶୁପକ୍ଷୀଙ୍କୁ ଚିହ୍ନିବା ସଙ୍ଗେ ସେମାନଙ୍କ ଭୂମିକା କଳିବା ଯେ କେତେ ଆମୋଦଦାୟକ ତାହା ଆପଣମାନଙ୍କର ଆଉ ବୁଝିବାକୁ ବାକି ନାହିଁ । ଆମ ବାଁପାଖ ଜଙ୍ଗଲରୁ ଯେଉଁ ମୟୂରଟି ଉଚ୍ଚସ୍ୱରରେ ରାବ ଦେଉଛି, ମୟୂରୀଙ୍କ ମେଳରେ ଏବେ ସେ ପୁଚ୍ଛ ମେଲାଇ ନାଚି ନାଚି ପ୍ରଣୟିନୀ ପାଇଁ ଅଧୀର ନିବେଦନ ଜଣାଉଥିବ । ପାଖରୁ କେଉଁଠି ଜଙ୍ଗଲୀ ଗଞ୍ଜାଟିଏ ଦର୍ପର ସହ ପ୍ରତିଦ୍ୱନ୍ଦ୍ୱୀକୁ ଯୁଦ୍ଧଡାକରା ଦେଉଛି । ଜଙ୍ଗଲର ବିଭିନ୍ନ ସ୍ଥାନରୁ ଆଉ କେତୋଟି ଗଞ୍ଜା ସେଥିର ଜବାବ ଦେଇ ଆହ୍ୱାନ ଗ୍ରହଣ କରିବାକୁ ସେମାନେ ପ୍ରସ୍ତୁତ ବୋଲି ଜଣାଇଛନ୍ତି । ଦୀର୍ଘ ସମୟ ଯାଏ ଏଭଳି ଆସ୍ଫାଳନ ଚାଲିବ; କିନ୍ତୁ ଯୁଦ୍ଧରତ ଥିବା ଅବସ୍ଥାରେ ଅନ୍ୟ ଶତ୍ରୁଙ୍କ ଆକ୍ରମଣରେ ବିଶେଷ ଆଶଙ୍କା ଥିବାଯୋଗୁ ଗଞ୍ଜାଗୁଡ଼ିକ ସହଜରେ ପ୍ରତ୍ୟକ୍ଷ ସମରର ସୂତ୍ରପାତ କରିବେ ନାହିଁ । ଡାହାଣପାଖ ଜଙ୍ଗଲରୁ ପୁରୁଷ ସମ୍ବରଟିଏ ଡାକଦେଇ ଜଙ୍ଗଲବାସୀ ଜୀବଜନ୍ତୁଙ୍କୁ ଜଣାଉଛି ଯେ ଘଣ୍ଟାଏ ତଳେ ସେ ଯେଉଁ ଚିତାବାଘଟିକୁ

---

* 'ମୋର ଭାରତ' ବହିଟି ଦ୍ରଷ୍ଟବ୍ୟ । ଗ୍ରାମବାସୀଙ୍କ ଫସଲକୁ ବନ୍ୟଜନ୍ତୁଙ୍କ ଉପଦ୍ରବରୁ ରକ୍ଷାକରିବା ପାଇଁ କର୍‌ବେଟ୍ ବହୁ ଶ୍ରମ, ଅର୍ଥ ଓ ସମୟ ବ୍ୟୟ କରି ଦଶ୍‌ଫୁଟ ଉଚ୍ଚ ଓ ତିନି ମାଇଲ ଲମ୍ବ ଏହି ପାଚେରିଟିକୁ ତୋଳାଇଥିଲେ—ଅନୁବାଦକ

ଦେଖିଥିଲି, ଏବେ ସେ ପଦାରେ କେଉଁଠି ଶୋଇରହି ଖରା ପୋଉଁଛି । ଚିତାବାଘ ଦୃଷ୍ଟିରୁ ଅନ୍ତର ନ ହେବା ପର୍ଯ୍ୟନ୍ତ ସମ୍ବର ତା ଉପରେ ତୀକ୍ଷ୍ଣ ନଜର ରଖିଥିବ ଏବଂ ତାର କାର୍ଯ୍ୟକଳାପ ଉଚ୍ଚସ୍ୱରରେ ଘୋଷଣା କରୁଥିବ ।

ପାହାଡ଼ ତଳ ଝାଟିଝୋପ ଭିତରେ ଚିମଗାଙ୍ଗ୍ରା, ବୁଲବୁଲ ଓ ମାଛିମରାଲୀ ଦଳେ କୈଁକଟର ଲଗାଇଛନ୍ତି । ସେଠାରେ ପତ୍ରଗହଳରେ ଲୁଚିଥିବା ପେଚାଟିଏ ସେମାନେ ଠାବ କରିଛନ୍ତି ଏବଂ ପେଚାଟିକୁ ଆସି ଦେଖିଯିବା ପାଇଁ ସାଙ୍ଗସାଥୀଙ୍କୁ ଡାକଦେଉଛନ୍ତି । ସନ୍ତାନପାଳନ କରୁ ନ ଥିଲେ ପେଚା ଦିନବେଳେ କାହାକୁ ଆକ୍ରମଣ କରେ ନାହିଁ; ତେଣୁ



ସେତେ ପାଖକୁ ଗଲେ ମଧ୍ୟ ଦିନବେଳେ ତା'ଠାରୁ ବିପଦର କୌଣସି ଆଶଙ୍କା ନାହିଁ ବୋଲି ଚଢ଼େଇମାନଙ୍କୁ ଖୁବ୍ ଭଲଭାବେ ଜଣା । ପେଚାଟି ଗଣ୍ଡଗୋଳକୁ ଭ୍ରୂକ୍ଷେପ ନକରି ଡାଳରେ ରୁନ୍ଦହୋଇ ବସିଛି । କୋଳାହଳପ୍ରିୟ ଏସବୁ ଛୋଟ ଛୋଟ ପକ୍ଷୀ କିଛି ସମୟ ଖେଳକୌତୁକ ପରେ ସ୍ୱୟଂ ଉଡ଼ିଯିବେ ଓ ତା'ପରେ ସେ ବିନାବାଧାରେ ଶୋଇପାରିବ ବୋଲି ଭଲଭାବେ ଜାଣେ ।

ଦୂରରୁ ଭାସିଆସୁଛି 'ଶାମା'ର ପ୍ରଣୟନିବେଦନଭରା ଲଳିତ ସଙ୍ଗୀତ । ଭାରତୀୟ ଜଙ୍ଗଲର ସବୁ ପକ୍ଷୀଙ୍କ ମଧ୍ୟରୁ ଶାମାର କଣ୍ଠସ୍ୱର ମଧୁରତମ ବୋଲି ନିର୍ଦ୍ଦ୍ୱନ୍ଦ୍ୱରେ କୁହାଯାଇ ପାରେ । ସୁନେଲି କାଠହଣାଟିଏ କେଉଁଠି ଠକ୍ ଠକ୍ କରି ମଲାଗଛରୁ ଖଡ଼ରା କାଠ ଖୋଳି ବସା ପାଇଁ ନୂଆ କୋରଡ଼ଟିଏ କରୁଛି । ଦୂରରୁ ଯେଉଁ କର୍କଶ ହେଷାରବ ଶୁଣାଯାଉଛି, ତାହା ପୁରୁଷ ହରିଣର ଯୁଦ୍ଧ ଆହ୍ୱାନ । ସାପଖିଆ ଈଗଲଟିଏ ବହୁ ଉଚ୍ଚରେ ଫେର ମାରି ରାବ ଦେଉଥିବା ଲକ୍ଷ୍ୟ କରନ୍ତୁ । ତା'ଠାରୁ ଆହୁରି ଉଚ୍ଚରେ ଶାଗୁଣାଗୁଡ଼ିଏ ଅତି ଧୈର୍ଯ୍ୟର ସହ ଦୀର୍ଘସମୟ ଧରି ଚକ୍କର ମାରିବାରେ ଲାଗିଛନ୍ତି । ମୟୂର ଯେଉଁଠାରେ ନାଚ କରୁଛି, ସେ ନିକଟରେ ଗୋଟିଏ ଝୋପରେ ମହାବଳ ବାଘ ଶିକାର ଲୁଚାଇଛି । ଗତକାଲି ନୀଳକଣ୍ଠ ଚଢ଼େଇ ଓ ତା'ପରେ ଦୁଇଟି କୁଆ ଶାଗୁଣାଙ୍କୁ ଏହି ଶିକାରର ସନ୍ଧାନ ଦେଇଥିଲେ । ମୃତ ଜନ୍ତୁଟିକୁ ଆତ୍ମସାତ୍ କରିବାର ସୁଯୋଗ ଅପେକ୍ଷାରେ ଶାଗୁଣାଗୁଡ଼ିକ ଚକ୍କର ମାରି ଅବସ୍ଥା ପର୍ଯ୍ୟବେକ୍ଷଣ କରୁଛନ୍ତି ।

ବନ୍ଧୁମେଳରେ ଅଥବା ଏକାକୀ ଯେବେ ନିକାଞ୍ଚନରେ ବସି ଏସବୁ ଆସ୍ୱାଦନ କରିବାବେଳେ ଆପଣ ହୁଏତ ଉପଲବ୍ଧି କରିଥିବେ ଯେ ଜଙ୍ଗଲତଥ୍ୟର ଶିକ୍ଷା କେବଳ ଏଭଳି ପରିବେଶକୁ ଅଧିକମାତ୍ରାରେ ଉପଭୋଗ କରିବାକୁ ଆପଣଙ୍କୁ ଶିଖାଉନାହିଁ—ତାହା ଆପଣଙ୍କ ଆତ୍ମବିଶ୍ୱାସ ମଧ୍ୟ ବହୁତ ବଢ଼ାଇଦେଇଛି ଏବଂ ଜଙ୍ଗଲରେ ବିପଦର ଆଶଙ୍କା ଅତି କମ୍ ବୋଲି ନିର୍ଭୁଲ ଧାରଣା ସୃଷ୍ଟିକରି ନିର୍ଭୟରେ ଚଳପ୍ରଚଳ ହେବାକୁ ଆପଣଙ୍କୁ ସକ୍ଷମ କରିଛି । ଦରକାର ପଡ଼ିଲେ ଦୀର୍ଘଦିନଯାଏ ଆପଣ ନିଃଶଙ୍କରେ ଜଙ୍ଗଲରେ ଅବସ୍ଥାନ କରି

Digitized by srujanika@gmail.com

ପାରିବେ ଓ ଅନ୍ଧାରରାତିରେ ମଧ୍ୟ ଭୂଇଁରେ ନିର୍ଭୟରେ ଶୋଇପାରିବେ । ଗନ୍ଧଭେଦ ଏବଂ ବାୟୁପ୍ରବାହର ଗତି ନିର୍ଣ୍ଣୟ କରିବାକୁ ଶିଖିବା ପରେ ଗହନ ଜଙ୍ଗଲରେ ଦିନରେ ବା ରାତିରେ ବାଟବଣା ହେବାର ଆଉ ଆଶଙ୍କା ନ ଥିବ । ଅନେକ ସାଧନା ପରେ ଆପଣଙ୍କ ଦୃଷ୍ଟିଶକ୍ତିରେ ମଧ୍ୟ ଉନ୍ନତି ଘଟିଛି; ସମ୍ମୁଖକୁ ଦୃଷ୍ଟିଦେବା ସଙ୍ଗେ ଦୁଇ ପାଖକୁ ମଧ୍ୟ ଆପଣ ନଜର ଦେବାକୁ ଶିଖିଛନ୍ତି । ଜଙ୍ଗଲବାସୀ ଜୀବଜନ୍ତୁଙ୍କ ଜୀବନଧାରା ସମ୍ବନ୍ଧରେ ଜ୍ଞାନ ଆହରଣ କରିବା ସଙ୍ଗେ ଶବ୍ଦଭେଦଦ୍ୱାରା ସେମାନଙ୍କ ସ୍ଥିତି, ଗତିବିଧି ଓ ଉଦ୍ଦେଶ୍ୟ ସମ୍ବନ୍ଧରେ ଆପଣ ନିଶ୍ଚିତ ସିଦ୍ଧାନ୍ତ କରିପାରୁଛନ୍ତି । ଜଙ୍ଗଲର ଶୁଖିଲା ଘାସପତ୍ର ଉପରେ ନିଃଶବ୍ଦରେ ଅଗ୍ରସର ହେବା ଓ ରୁଇରୁଇଆ ଅନ୍ଧାରରେ ଲକ୍ଷ୍ୟଭେଦ କରିବା ଆପଣଙ୍କ ପକ୍ଷରେ ଆଉ କଷ୍ଟକର ହେଉନାହିଁ । ଜଙ୍ଗଲଯୁଦ୍ଧରେ ଏବେ ଶତ୍ରୁର ସମ୍ମୁଖୀନ ହେଲାବେଳେ ଆପଣଙ୍କ ମନରେ ନ୍ୟୂନତା ଆଉ ଜାଗିବ ନାହିଁ । ଜଙ୍ଗଲଯୁଦ୍ଧରେ ନିଜ ସାମର୍ଥ୍ୟ ବିଷୟରେ ଶତ୍ରୁପକ୍ଷ ଯେତେ ଆସ୍ଫାଳନ କରନ୍ତୁ ନା କାହିଁକି, ଯୁଦ୍ଧକୌଶଳରେ ଆପଣଙ୍କ ତାଲିମ ଯେ ସେମାନଙ୍କଠାରୁ ଯଥେଷ୍ଟ ଅଧିକ ଓ ଉନ୍ନତତର ଏବଂ ଭୟ କରିବା ପରିବର୍ତ୍ତେ ସେଭଳି ଶତ୍ରୁଠାରୁ ଆପଣଙ୍କର ଅଧିକ କିଛି ଶିକ୍ଷା କରିବାକୁ ନାହିଁ—ଏହା ମଧ୍ୟ ଆପଣ ନିର୍ଭରଭାବେ ହୃଦୟଙ୍ଗମ କରିଛନ୍ତି ।

ଘରକୁ ଫେରିବା ସମୟ ହେଲାଣି । ମ୍ୟାଗି ତେଣେ ଜଳଖିଆ ତିଆରି କରି ଆମକୁ ଅପେକ୍ଷା କରିଥିବ । ଦୂର ବାଟ ଚାଲି ଘରେ ପହଞ୍ଚିବାକୁ କିଛି କମ୍ ସମୟ ଲାଗିବ ନାହିଁ । ଡାଳଟିଏ କାଟି ପଛରେ ତାକୁ ଘୋଷାରି ନେବାଦ୍ୱାରା ନିଜର ପାଦଚିହ୍ନ ସହିତ ଜନ୍ତୁଙ୍କ ଖୋଜଦାଗକୁ ମଧ୍ୟ ଲିଭାଇଦେଇ ଯିବା । ବାଲିରେ ହରିଣଙ୍କ ଖୁରଦାଗ, ନାଳଶେଯର ଚିକିଟା ମାଟିରେ ସରୁ ଧୂଳି ଉପରେ ଚିତାବାଘର ପାହୁଲଚିହ୍ନ; ସୋଠ ଖିଲଣେତେଲେ ପଡ଼ିଥିବା ଜନ୍ତୁଙ୍କ ଖୋଜସବୁ ଲିଭାଇ ନିଶ୍ଚିହ୍ନ କରିଦେବା । କାଲି ଅବା ପଅରଦିନ ଜଙ୍ଗଲରେ ପୁଣି ଯଦି ପଶିବାକୁ ପଡ଼େ, ସେସବୁ ସ୍ଥାନରେ ପାହୁଲଚିହ୍ନ ବା ଖୋଜ ଦେଖିଲେ ନିଶ୍ଚିତଭାବେ ଜାଣିପାରିବା ଯେ ଆଜି ଆମେ ସେଠାରୁ ଯିବା ପରେ ହିଁ ଜନ୍ତୁଗୁଡ଼ିକ ସେବାଟେ ଯାତାୟାତ କରିଛନ୍ତି ।

## ବାର

ଜଙ୍ଗଲ ପାହାଡ଼ରେ ଜୀବନ ବିତାଇବା ଓ ହିଂସ୍ରଜନ୍ତୁଙ୍କ ନିକଟରେ ନିୟମିତ ଚଳପ୍ରଚଳ ହେବା ଫଳରେ ମଣିଷ ପରିବେଶ ପ୍ରତି ଏତେ ସଜାଗ ହୋଇଯାଏ ଯେ ପ୍ରତ୍ୟକ୍ଷରେ କିଛି ଦୃଷ୍ଟି ଓ ଶ୍ରୁତିଗୋଚର ନ ହେଲେ ମଧ୍ୟ ଅବଚେତନ ମନରୁ ହିଁ ଆସନ୍ନ ବିପଦର ଅତି ତୀବ୍ର ସଙ୍କେତ ତାକୁ ମିଳିଥାଏ । ବହୁଯୁଗଧରି ଅରଣ୍ୟରେ ବାସ କରୁଥିବା

Digitized by srujanika@gmail.com

ଆଦିମ ମନୁଷ୍ୟଠାରେ ଏହି ଶକ୍ତି ପୂର୍ଣ୍ଣଭାବେ ବିକାଶ ଲାଭ କରିଥିଲା । ସଭ୍ୟତା ଓ ବିବର୍ତ୍ତନ ଫଳରେ ବର୍ତ୍ତମାନର ମନୁଷ୍ୟ ସେ ଶକ୍ତିକୁ ଅନେକାଂଶରେ ହରାଇଥିଲେ ମଧ୍ୟ ଜଙ୍ଗଲ ତଥ୍ୟ ଶିକ୍ଷା କରିବା ଏବଂ ଜଙ୍ଗଲ ସହ ପରିଚୟ ବଢ଼ିବା ଢଙ୍ଗେ ସଙ୍ଗେ ତାର ସେହି ଲୁପ୍ତ ଚେତନା ପୁନରୁଜ୍ଜୀବିତ ହୋଇଉଠେ । ଏହି 'ଚେତନା'କୁ ବ୍ୟାଖ୍ୟା ବା ବର୍ଣ୍ଣନା କରିବା କିମ୍ବା ତାକୁ ନିର୍ଦ୍ଦିଷ୍ଟ ଏକ ସଂଜ୍ଞା ଦେବା ଅତି କଷ୍ଟକର । ସେଥିପାଇଁ ବର୍ଣ୍ଣନାତ୍ମକ ବା ବୈଶିଷ୍ଟ୍ୟସୂଚକ ଉପଯୁକ୍ତ ଶବ୍ଦଟିଏ ନ ପାଇ ମୁଁ ତାକୁ 'ଅରଣ୍ୟ ସଚ୍ଚିତ୍' ଆଖ୍ୟା ଦେଉଛି ।

ଆସନ୍ନ ବିପଦର କୌଣସି ପୂର୍ବାଭାସ ନଥାଇ ମଧ୍ୟ ଅବଚେତନ ମନର ସଙ୍କେତ ଯୋଗୁ ଲୋକେ ବିପଦରୁ ନିଜକୁ ରକ୍ଷାକରିଥିବାର କେତେକ ଦୃଷ୍ଟାନ୍ତ ଆପଣଙ୍କୁ ଜଣାଇବି । ଗୋଟିଏ 'ଖିଆଲ'ରେ ପଥ ପରିବର୍ତ୍ତନ କରିବା ପରେ ପୂର୍ବର ଯାତ୍ରାପଥରେ ବୋମା ବିସ୍ଫୋରଣ ଘଟିବା—କୌଣସି କାରଣ ନ ଥାଇ ନିର୍ଦ୍ଦିଷ୍ଟ ଗୋଟିଏ ଘର ପାଖରୁ ଆଡ଼େଇ ହୋଇଯିବା ପରେ କମାଣମାଡ଼ରେ ଘରଟି ଚୁରମାର ହୋଇଯିବା—ଗୋଟିଏ 'ଝୁଙ୍କ'ରେ ଗଛର ଆଶ୍ରୟ ଛାଡ଼ି ବର୍ଷାକୁ ବାହାରିପଡ଼ିବା ପରେ ଗଛ ଉପରେ ବଜ୍ର ପଡ଼ିବା—ଅନୁଭୂତ ନ ହୋଇଥିଲେ ମଧ୍ୟ ଏଭଳି ଘଟଣା ଅନ୍ତତଃ ଆପଣଙ୍କର ଶ୍ରୁତିଗୋଚର ହୋଇଥିବ ନିଶ୍ଚୟ । ଉପରୋକ୍ତ ଦୁର୍ଘଟଣାଗୁଡ଼ିକର କୌଣସି ପୂର୍ବାଭାସ ପ୍ରତ୍ୟକ୍ଷରେ ଅବଧାନ ନ ହୋଇଥିଲେ ମଧ୍ୟ ଆମକୁ ଏତିକି ମାନିବାକୁ ପଡ଼ିବ ଯେ ସେଭଳି ବିପଦର ସମ୍ଭାବନା ସମ୍ପୃକ୍ତ ବ୍ୟକ୍ତି ସଚେତନ ଥିଲେ ଓ ବିପଦର ଆଶଙ୍କା ଯୋଗୁ ତାଙ୍କ ଚେତନା ଶାଣିତ ଓ ତୀକ୍ଷ୍ଣତର ହୋଇ ରହିଥିଲା ।

ଚୌଗଡ଼ ନରଖାଦକ* ବିରୁଦ୍ଧରେ ଅଭିଯାନ ଚଳାଇଥିବାବେଳେ ନିର୍ଦ୍ଦିଷ୍ଟ ଦୁଇଟି ଘଟଣାରେ ବିପଦର ସମ୍ଭାବନା ବିଷୟରେ ମୁଁ ପୂର୍ବରୁ ସଚେତ ଥାଇ ନରଖାଦକର ଆକ୍ରମଣରୁ ରକ୍ଷା ପାଇଥିଲି । ଦୁଇଟିଯାକ ଘଟଣାରେ ନରଖାଦକଠାରୁ ଆତ୍ମରକ୍ଷା କରିବା ବିଗରେ ମୁଁ ପୂର୍ଣ୍ଣଭାବେ ଯତ୍ନବାନ୍ ଥିଲି । ପ୍ରଥମ ଘଟଣାରେ ମୋ ଯିବା ବାଟରେ ଗଦାଏ ପଥର ପଛରେ ଓ ଦ୍ୱିତୀୟଟିରେ ସଡ଼କ ଉପରକୁ ମାଡ଼ିଆସିଥିବା ଥାକେ ପଥର ଉପରେ ଆକ୍ରମଣମୁଖୀ ନରଖାଦକ ଲୁଚିରହି ମୁଁ ପାଖେଇବାକୁ ଅପେକ୍ଷା କରିଛି ବୋଲି ଏକ ତୀବ୍ର ଆଶଙ୍କା ମୋତେ ସମ୍ପୂର୍ଣ୍ଣ ଅଭିଭୂତ କରିଦେଇଥିଲା । ବିପଦ ପ୍ରତି ମୁଁ ସଜାଗ ଥିବାରୁ ବିପଦପୂର୍ଣ୍ଣ ପରିବେଶରେ ସନ୍ଦେହଜନକ କିଛି ଦେଖିଲେ ମନରେ ସେଭଳି ଆଶଙ୍କା ଜାଗିଉଠିବା ସ୍ୱାଭାବିକ । କିନ୍ତୁ ବିପଦର ଘଡ଼ିବେଳେ ଆଶଙ୍କା ନ ଥାଇ ମଧ୍ୟ ଅବଚେତନ ମନରୁ କିପରି ବିପଦର ସଙ୍କେତ ମିଳିଥାଏ—ତାହାର ଏକ ଦୃଷ୍ଟାନ୍ତ ଏଠାରେ ଦେଉଛି । ଏହି ଘଟଣାଟିକୁ ଅନୁଧ୍ୟାନ କଲେ 'ଅରଣ୍ୟ ସଚ୍ଚିତ୍'ର ଅର୍ଥ ଓ ତାତ୍ପର୍ଯ୍ୟ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଆପଣ ସ୍ୱୀକାର କରିବେ ଯେ ତାହାରି ଯୋଗୁ ହିଁ ଜଙ୍ଗଲର ଅଜ୍ଞାତ ଓ ଅପ୍ରତ୍ୟାଶିତ ବିପଦ ପ୍ରତି ମଧ୍ୟ ଅବଚେତନ ମନ ସମ୍ପୂର୍ଣ୍ଣ ସଜାଗ ଥାଏ ।

* 'କୁମାୟୁଁର ନରଖାଦକ' ବହିଟି ଦ୍ରଷ୍ଟବ୍ୟ—ଅନୁବାଦକ

Digitized by srujanika@gmail.com

କାଲାଢୁଙ୍ଗୀରେ ଶୀତଦିନିଆ ରହଣି (୧) ଭିତରେ ଗାଁଲୋକଙ୍କ ପାଇଁ ମୁଁ ମଝିରେ ମଝିରେ ହରିଣ ବା ସମ୍ବରଟିଏ ଶିକାର କରିଥାଏ । ଦିନେ ଝଡ଼ବେଳେ ଗାଁରୁ ଦଳେ ଲୋକ ଆସି ମୋତେ ସ୍ମରଣ କରାଇଦେଲେ ଯେ ଗତ କେତେ ଦିନ ଭିତରେ ସେମାନଙ୍କ ପାଇଁ ମୁଁ ଶିକାରଟିଏ ମାରିନାହିଁ । ପରଦିନ କଣ ପର୍ବପର୍ବାଣି ଥିବାରୁ ହରିଣଟିଏ ମାରିବାକୁ ଲୋକଗୁଡ଼ିକ ଜୋର କଲେ । ଗତ କେତେ ଦିନ ଧରି ବର୍ଷା ନ ହେବା ଫଳରେ ଜଙ୍ଗଲ ଶୁଖି ଯାଇ ଥିଲା । ଶୁଖିଲା ଘାସପତ୍ର ଉପରେ ଶିକାର ପାଖକୁ ଲୁଚିଛପି ଆଗେଇବା ସହଜ ହେଲା ନାହିଁ । ବହୁ କଷ୍ଟରେ ହରିଣଟିଏ ଠାବ କରି ଦିନ ରତରତ ହେଲାବେଳକୁ ତାକୁ ମାରିଲି । ହରିଣକୁ ନେବାକୁ ଆଉ ସମୟ ନ ଥିଲା । ପରଦିନ ସକାଳୁ ଲୋକବାକ ଧରି ତାକୁ ନେବାକୁ ଆସିବି ବୋଲି ସ୍ଥିର କଲି ଏବଂ ଚିତାବାଘ, ହେଲୁ ଓ ବାରହାଙ୍କଠାରୁ ରକ୍ଷାକରିବା ପାଇଁ ତାକୁ ଡାଳପତ୍ରରେ ଘୋଡ଼ାଇଦେଇ ଫେରିଲି ।

ବନ୍ଧୁକ ଆବାଜ ଗାଁକୁ ଶୁଣାଯାଇଥିଲା । ଫେରିଲା ବେଳକୁ ଦଶବାରଜଣ ଲୋକ ଦଉଡ଼ି ବାଉଁଶ ଧରି ମୋ ଅପେକ୍ଷାରେ ଦାଣ୍ଡ ପାହାଚରେ ବସିଥିଲେ । ହରିଣଟିଏ ମାରି ହୋଇଛି ଓ ପରଦିନ ବଡ଼ିସକାଳୁ ଗାଁମୁଣ୍ଡ ଫାଟକ ପାଖରେ ରୁଣ୍ଡ ହେଲେ ମୁଁ ବାଟ କଢ଼ାଇ ସେମାନଙ୍କୁ ନେଇଯିବି ବୋଲି କହିଲି । ଲୋକଗୁଡ଼ିକ ଏଥିରେ ମନ ମାରିଦେଇ ବସିଲେ । ପରଦିନ ସକାଳୁ ସକାଳୁ ସେମାନଙ୍କ ପର୍ବ ଆରମ୍ଭ । ହରିଣଟିକୁ କଟାକଟି କରି ଭାଗ କରିଦେଇ-ଥିଲେ ସତାସତ କାମ ଛୁଟିଥାନ୍ତା । ତେଣୁ ବାଟ ବତାଇଦେଲେ ସେମାନେ ନିଜେ ଯାଇ ହରିଣଟିକୁ ନେଇଆସିବେ ବୋଲି ପ୍ରସ୍ତାବ ଦେଲେ ।

ଗ୍ରାମବାସୀଙ୍କ ପାଇଁ ଶିକାର ମାରି ଫେରିଲାବେଳେ ବାଟ ଚିହ୍ନିବା ପାଇଁ ମୁଁ ଜାଗାଜାଗାଏ ଚିହ୍ନ ରଖି ଆସିଥାଏ । ଲୋକଙ୍କୁ ବତାଇଦେଲେ, ସେମାନେ ଚିହ୍ନ ଅନୁସାରେ ବାଟ ବାରି ଠିକ୍ ଜାଗାରେ ଶିକାରଟିକୁ ପାଆନ୍ତି । ସେଠାକାର ଲୋକମାନେ ଜଙ୍ଗଲ ସହିତ ଅତି ଅନ୍ତରଙ୍ଗଭାବେ ପରିଚିତ । ତେଣୁ ଚିହ୍ନ କେଉଁଠି କେଉଁଠି ରଖାହୋଇଛି ଜାଣିଗଲେ ବାଟ ବାରିବାକୁ ତାଙ୍କର ଅସୁବିଧା ହୁଏ ନାହିଁ । ସେତେବେଳେ କୃଷ୍ଣପକ୍ଷ ରାତିରେ କେହି ବଣକୁ ଯିବେ ନାହିଁ ଭାବି ସେଥର ମୁଁ ବାଟରେ ଚିହ୍ନ ରଖି ନ ଥିଲି । ଏତେଗୁଡ଼ିଏ ଲୋକଙ୍କୁ ନିବାରଣ କରିବା ଅପେକ୍ଷା ସେମାନଙ୍କ ସଙ୍ଗରେ ଯାଇ ହରିଣଟିକୁ ନେଇଆସିବାକୁ ସ୍ଥିରକଲି । ଲୋକଗୁଡ଼ିକଙ୍କୁ ଆଗରେ ପଠାଇଦେଇ କହିଲି ଯେ ପୌଲଗଡ଼ ପୋଡ଼ାସର (୨)ରେ ଅଢ଼େଇ ମାଇଲ୍ ଯାଇ ସେଠାରେ ବୁଢ଼ା ହାଲ୍‌ଦୁଗଛଟି ମୂଳରେ ସେମାନେ ମୋ ପାଇଁ ଅପେକ୍ଷା କରିଥିବେ । ମ୍ୟାଗି ଚାହା କରିଥିଲା । ଲୋକଗୁଡ଼ିକଙ୍କୁ ବିଦା କରି ବାହାରିବା ପୂର୍ବରୁ ଚାହା କପେ ଖାଇବାପାଇଁ ବସିଲି ।

---

(୧) 'ମୋର ଭାରତ' ବହିଟି ଦ୍ରଷ୍ଟବ୍ୟ
(୨) ପୋଡ଼ାସର—Firetrack

Digitized by srujanika@gmail.com

ଧାଡ଼ିଏ ଲୋକଙ୍କ ଅପେକ୍ଷା ଜଣିକିଆ ଲୋକ ଅଧିକ ବେଗରେ ବାଟ ଚାଲିପାରେ। ପଛରେ ବାହାରିଲେ ବି ଲୋକପଙ୍କ୍ତିଙ୍କୁ ବାଟରେ ଭେଟିବି ଜାଣି ତରତର ନ ହୋଇ ଧୀରେ ସୁସ୍ଥେ ଚାହାତକ ଶେଷ କଲି। ରାଇଫଲ ଧରି ଘରୁ ପୁଣି ବାହାରିବାବେଳକୁ ରାତି ହେଲାଣି। ସେଦିନ ବଡ଼ଖେଡ଼ିରୁ ପରୁ ବାହାରି ଦିନତମାମ୍ ମାଇଲ୍ ମାଇଲ୍ ବାଟ ଚାଲିବାକୁ ପଡ଼ିଥିଲା। ତେବେ ମୁଷ୍ଟି-ସବଳ ଲୋକପକ୍ଷରେ ଆଉ ଚାରିପାଞ୍ଚ ମାଇଲ ବାଟ ଚାଲିଯିବା କେଉଁ ବଡ଼ କଥା ? ଲୋକମାନେ ହାଲ୍‌ଦୁଗଛ ପାଖରେ ପହଞ୍ଚିବାର ଢେର୍ ପୂର୍ବରୁ ବାଟରେ ସେମାନଙ୍କ ଭେଟ ମିଳିଲା। ହରିଣକୁ ପାଇବାରେ ମଧ୍ୟ କିଛି ଅସୁବିଧା ହେଲାନାହିଁ। ଲୋକେ ତାକୁ ବାଉଁଶରେ ଭଲଭାବେ ବନ୍ଧାବନ୍ଧ କଲା ପରେ ସଡ଼କକୁ ଆଉ ନଫେରି ସିଧେଇଁ ଅଧମାଇଲ କମ୍ ଗୋଟିଏ ଜଙ୍ଗଲ ବାଟରେ ପଶି ଚାଲିଆସିଲୁ। ଘରେ ପହଞ୍ଚିଲାବେଳକୁ ରାତିକିଆ ପାଇଁ ଡେରି ହେଲାଣି। ମୋତେ ସମସ୍ତେ ଅପେକ୍ଷା କରି ବସିଛନ୍ତି। ଶୋଇବାକୁ ଯିବା ପୂର୍ବରୁ ଗାଧୁଆପାଧୁଆ କରିବି ଓ ଏବେ କେବଳ ମୁହଁହାତ ଧୋଇ ଖାଇବସିବି ବୋଲି ଠିକ୍ କରି ମ୍ୟାଗିକୁ ବଢ଼ାବଢ଼ି କରିବାକୁ କହିଲି।

ରାତିରେ ଗାଧୋଇବାକୁ ଗଲାବେଳେ ଦେଖିଲି ଯେ ରବରତଳି ଥିବା ମୋର ହାଲୁକା ଜୋତାହଲକ ନାଲିଧୂଳିରେ ପୂରିଯାଇ ଦୁଇପାଦରେ ବହଳ ନାଲିମାଟିର ପ୍ରଲେପ ବୋଲି ହୋଇଯାଇଛି। ମୋତେ ପ୍ରତିଦିନ ଦୂର ବାଟ ଚାଲିବାକୁ ପଡ଼େ। ପାଦର ମୁଁ ନିୟମିତ ଯତ୍ନ ନେଉ ଥିବାରୁ ମୋତେ ପାଦପୀଡ଼ା କେବେ ଭୋଗିବାକୁ ପଡ଼େନାହିଁ। ନିଜ ବେହୁସିଆରିରୁ ଜୋତାରେ ନାଲିଧୂଳି ପଶିଛି ବୋଲି ସୁଦ୍ଧା ଧୂଳି ଠିକ୍ କେଉଁଠାରେ ପଶିଲା ତାହା ମନେ ପଡ଼ିଲା ନାହିଁ। ଛୋଟ ଛୋଟ କଥା ହଠାତ୍ ହେଜ ନ ହେଲେ ବଡ଼ ଅସ୍ୱସ୍ତି ଲାଗେ। ବ୍ୟକ୍ତି ବା ସ୍ଥାନବିଶେଷର ନାମ ଆଦି ଅତି ସାମାନ୍ୟ ବିଷୟ ହେଲେ ମଧ୍ୟ କଥାଟି ମନେ ନ ପଡ଼ିବାଯାଏ ଅସ୍ତବ୍ୟସ୍ତ ହେବାକୁ ପଡ଼େ। ତା'ପରେ ବିଶେଷ କୌଣସି ଚେଷ୍ଟା ନ କରି ମଧ୍ୟ କଥାଟି ଆକସ୍ମିକ ଭାବେ ମନେପଡ଼ିଯାଏ। ସେଦିନ କିନ୍ତୁ ଜୋତାରେ ନାଲିଧୂଳି ପଶିବା କଥା ଆଦୌ ସ୍ମରଣ ନ ହେବାରୁ ଢେର୍ ରାତିଯାଏ ବଡ଼ ବ୍ୟତିବ୍ୟସ୍ତ ଲାଗିଲି।

କାଠଗୋଦାମ ରେଳଷ୍ଟେସନ୍ ତିଆରି ହେବା ପୂର୍ବରୁ ଆମର ଏ ଅଞ୍ଚଳର ଅଧିବାସୀ ତଥା ଯାନବାହନ ସବୁ ପୁରାତନ ଜାତୀୟ ରାଜପଥରେ ଚଳପ୍ରଚଳ ହେଉଥିଲେ। ରାଜପଥଟି ଆମର ଫାଟକ ସାମନା ଦେଇ ଜଙ୍ଗଲରେ ଯାଇ 'ବୋଆର' ପୋଲ ପାର ହୋଇଛି ଓ ପୋଲର ତିନିଶହ ଗଜ ପରେ ବାଁକୁ ମୋଡ଼ ବୁଲି ମୋରାଦାବାଦ ଆଡ଼କୁ ଯାଇଛି। ମୋଡ଼ ଡାହାଣ ପାଖରୁ ପୌଲଗଡ଼ ପୋଡ଼ାସଡ଼କର ଆରମ୍ଭ। (ଏହି ପୋଡ଼ାସଡ଼କଟିର ପ୍ରଥମ କୋଇ ଶହ ଗଜକୁ ମିଶାଇ ଏବେ ପୌଲଗଡ଼ ଯିବାପାଇଁ ମୋଟର ରାସ୍ତା ତିଆରି ହେଲାଣି।) 'ବୋଆର' ପୋଲଠାରୁ ପ୍ରାୟ ପଚିଶଗଜ ଆଗକୁ କୋଟା ସଡ଼କ ଉତ୍ତର ଦିଗରୁ ଆସି ଜାତୀୟ ରାଜପଥ ସହିତ ମିଶିଛି। କୋଟା ସଡ଼କର ଛକ ପାଖରୁ ମୋରାଦାବାଦ ମୋଡ଼ ଭିତରେ ରାଜପଥ

Digitized by srujanika@gmail.com

ଜାଗାଏ ଗହ୍ୱର ଖାଲଟିଏ । ଖାଲଟିରେ ନାଲିମାଟି ପଡ଼େ; ଶଗଡ଼ ଗୁଳ ଗୁଳ ସେଥିରେ ଛଅଇଞ୍ଚ ବହଳରେ ନାଲିଧୂଳି ଜମିଯାଇଥାଏ । ବାଟୋଇମାନେ ଧୂଳିରୁ ଅଡ଼େଇ ହୋଇ ସଡ଼କ ବାଁ ପଟେ ଗୁଳିବା ଫଳରେ ସେଠାରେ ଜଙ୍ଗଲ କଡ଼େ କଡ଼େ ଘରୁ ଚଲାବାଟଟିଏ ହୋଇଯାଇଛି । ରାଜପଥର ମୋଡ଼ର ପ୍ରାୟ ତରଶ ଗଜ ପୂର୍ବରୁ ଗ୍ରେଟ ଗୋଟିଏ ଶଙ୍ଖ ଓ ତା ଦୁଇକଡ଼େ ଫୁଟେ ମୋଟ ଓ ଅଠର ଇଞ୍ଚ ଉଚ୍ଚ କାନ୍ଥେଣି । ଶଙ୍ଖତଳ ମାହାରୁଟି କେତେ ବର୍ଷ ହେବ ପୋତହୋଇଗଲାଣି । ସଡ଼କ ଗାଁ କଡ଼ ପୋଠ ମୁହଁରେ ଅଠଦଶ ଫୁଟ ଲମ୍ବ ଓସାରରେ ବାଲି ଚକଡ଼ାଏ ଜମି ଜମି ରାସ୍ତା ପ୍ରାୟ ସମାନ ପଟ୍ଟନକୁ ଉଠିଆସିଛି ।

କୋଡାରେ ନାଲି ଧୂଳି କେଉଁଠାରେ ପଶିଲି, ଏ ବିଷୟରେ ଗୁଣି ହେଉ ହେଉ ହଠାତ୍ ମନେପଡ଼ିଗଲା ଯେ ଶଙ୍ଖ ପାଦରେ ପହଞ୍ଚିବାର କେଇ ଗଜ ପୂର୍ବରୁ ମୁଁ ଜଙ୍ଗଲ କଡ଼ ଚଲାବାଟଟିକୁ ଗ୍ରାହ୍ୟ ବଲାଗଣ୍ଠିଏ ଧୂଳିରେ ପଶି ସଡ଼କ ଡାହାଣ ପଟକୁ ଯାଇଥିଲି ଏବଂ ସଡ଼କର ସେପ୍ ପାଖରେ ଗୁଳ ଗୁଳ ଶଙ୍ଖଟିକୁ ପାରହେବା ପରେ ଯାଇ ଚଲାବାଟକୁ ପୁଣି ବାହୁଡ଼ିଥିଲି । ସଳଖ ଚଲାବାଟଟିରେ ସୁବିଧାରେ ନ ଗୁଳି ମୁଁ ସେତକ ବାଟ ବାଲିଧୂଳିରେ ପଶି ରାସ୍ତା ପାରହେଲି କାହିଁକି ? ଘରୁ ବାହାରିଲାବେଳୁ ହାଲଦୁ ଗଛ ନିକଟରେ ଲୋକଙ୍କ ଭେଟ ପାଇବା ଯାଏଁ କେଉଁଠାରେ ସନ୍ଦେହଜନକ କିଛି ମୋର ଶ୍ରୁତି ବା ଦୃଷ୍ଟିଗୋଚର ହୋଇନଥିଲା । ସହଜେ ତ କୃଷ୍ଣପକ୍ଷ ଅନ୍ଧାର ରାତି । ଚଲା ବାଟ ପାଖରେ ବିପଦ ଘଟାଇବା ଭଳି କିଛି ଥିଲେ, ତାହା ଦେଖା ନ ଯିବା କଥା । ତେବେ ଅକାରଣରେ ମୁଁ ଧୂଳିରେ ଧସି-ହୋଇ ଦୁଇଥର ରାସ୍ତା ପାରହେଲି କାହିଁକି ?

ଏହି ବହିରେ ଆଦ୍ୟ ଭାଗରେ ଉଲ୍ଲେଖ କରିଛି ଯେ, ଡାନ୍‌ସେଙ୍କ ତଥାକଥିତ 'ଡାହାଣୀର ଡାକ' ସମ୍ବନ୍ଧରେ ଅନୁସନ୍ଧାନ କରି ତାହା ଦୁଇଟି ମସୃଣ କାଠର ଘର୍ଷଣରୁ ଉତ୍ପନ୍ନ ହେଉଥିବା କଥା ଆବିଷ୍କାର କରିଥିଲି । ସେହିଦିନୁ ଜଙ୍ଗଲରେ ଅସ୍ୱାଭାବିକ କୌଣସି ବିଷୟ ନଜରକୁ ଆସିଲେ, ତାହାର କାରଣ ଖୋଜି ବାହାର କରିବା ମୋର ଗୋଟାଏ ସ୍ୱଭାବମତ ସଉକରେ ପରିଣତ ହୋଇଥିଲା । ବାଟଭାଙ୍ଗି ଅକାରଣ କାହିଁକି ଧୂଳିରେ ପଶିଲି, ତାହାର କାରଣ ଖୋଜି ବାହାର କରିବାର ଖିଆଲ ନେଇ ପରଦିନ ସକାଳେ ସଡ଼କରେ ଲୋକ ଚଲାଚଲ ଆରମ୍ଭହେବା ପୂର୍ବରୁ ଅନୁସନ୍ଧାନ କରିବାକୁ ବାହାରିପଡ଼ିଲି ।

ପୂର୍ବ ସନ୍ଧ୍ୟାରେ ଲୋକଗୁଡ଼ିକ ଆମ ଫାଟକ ପାଖରୁ ଦଳବାନ୍ଧି ସଡ଼କରେ ଆଗେଇ ଥିଲେ । ଗାଁମୁଣ୍ଡରେ ଆହୁରି ତିନିଜଣ ଗ୍ରାମବାସୀ ଆସି ଯୋଗଦେବା ଫଳରେ ତାଙ୍କ ଦଳର ସଂଖ୍ୟା ଚଉଦରେ ପହଞ୍ଚିଲା । ବୋଆର୍ ପୋଲ ପାରହେବା ପରେ ଲୋକଗୁଡ଼ିକ ଚଲା-ବାଟରେ ଏକଧାଡ଼ିରେ ଆଗପଛ ହୋଇ ଗୁଳି ମୋଡ଼ ପାଖରେ ରାସ୍ତା ପାରହୋଇ ପୋଡ଼ା-ସ୍ତୁରଡ଼ିରେ ପହଞ୍ଚିଲେ । ସେମାନେ କୋଟା ସଡ଼କର ଛକ ପାରହେବା ପରେ ପରେ ମହାବଳ

Digitized by srujanika@gmail.com

ବାଘଟିଏ ସେହି ସଡ଼କରେ ଅଧି ଛକ ଉପରେ କାଗାଏ ବୁଦାଭଲେ ଭୁଇଁ ସମ୍ପୂର୍ଣ୍ଣ ଥିଲ ଓ ତା'ପରେ ରାଜପଥ ପାରହୋଇ ସେ ମଧ୍ୟ ଚଲବାଟକୁ ଉଠିଥିଲ । ଲୋକଙ୍କ ପାଦଚିହ୍ନ ଉପରେ ବାଘର ପାହୁଲଦାଗ ସ୍ପଷ୍ଟଭାବେ ଗ୍ରୁସିହୋଇ ପଡ଼ୁଥାଏ । ବାଘ ଚଲବାଟରେ ପ୍ରାୟ ଚରଣଗଜ ଅଗେଇଗଲା ପରେ ମୁଁ ବୋଅର୍ ପୋଲ ପାରହୋଇ ତା ପଛେ ପଛେ ଗ୍ଲଲ ।

ପୋଲଟି ଲୁହାରେ ତିଆରି । ଶବ୍ଦକୁ ଖାତିର ନ କରି ମୁଁ ବେଗରେ ପାହୁଣ୍ଡ ପକାଇ ଗ୍ଲଥିଲ । ବାଘ ସମ୍ଭବତଃ ମୋ ପାଦଶବ୍ଦ ଶୁଣିପାରିଲା । ମୁଁ କୋଠା ସଡକରେ ନ ଯାଇ ତାରି ପଛେ ପଛେ ଆସୁଥିବା ଦେଖି ସେ ଅଦ୍ଭୁତ ବେଗରେ ଅଗେଇଗଲା ଓ ଶଙ୍କ ପାଖରେ ସଡ଼କ ବାଁ କଡ଼ରୁ ଗଡ଼ ଶଙ୍ଖଜଲ ବାଲି ଚକଡ଼ାକରେ ଲେପଟାଇ ପଡ଼ି ଛପିଗଲା । ମୁଁ ଚଲବାଟରେ ଆଗେଇ ଆସୁଥିଲ । ହଠାତ୍ କିନ୍ତୁ ଶଙ୍ଖଠାରୁ ପାଞ୍ଚ ଗଜ ଅଗରୁ ବାଟ ଭାଙ୍ଗି ବଲାଗଣ୍ଡିଏ ଧୂଳରେ ପଶି ସଡ଼କ ଡାହାଣ କଡ଼କୁ ଗ୍ଲଗଲ୍ ଓ ଶଙ୍ଖଟିକୁ ଡାହାଣପଟେ ପାରହେବା ପରେ ଉଜାଣି ବାଟ ଭାଙ୍ଗି ଆଗରେ ପୁଣି ଚଲବାଟ ଧରିଲ । ସେପରି କରି ନ ଥିଲେ ବାଘଠାରୁ ମୋଟେ ଗଜେ ଛଡ଼ାରେ ମୋତେ ଯିବାକୁ ପଡ଼ିଥାଆନ୍ତା । ବାଘ ସେଠାରେ ଥିବାର ଲେଶମାତ୍ର ସନ୍ଦେହ ନକରି ସୁଦ୍ଧା ନିଜ ଅଜାଣତରେ ମୁଁ ବାଟ ଭାଙ୍ଗି ତାଠାରୁ ଆଡ଼େଇହୋଇ ଗଲ ।

ଚଲବାଟ କଡ଼ରେ ବାଘ ଶୋଇଛି ବୋଲି ଜାଣିଥିଲେ, ସାମାନ୍ୟ ସତର୍କତା ସହିତ ମୁଁ ବିନା ବିପଦରେ ତା ପାଖଦେଇ ଯାଇପାରିଥାଆନ୍ତି । କୌଣସି ଶବ୍ଦ ବା ଅତର୍କିତ ସଞ୍ଚଳନ ନ କରି ମୋତେ ସମାନବେଗରେ ସେଠିକ ବାଟ ପାରହେବାକୁ ପଡ଼ିଥାଆନ୍ତା । ଶଙ୍ଖତଳେ ଲୁଚିଗଲାବେଳେ ମୋତେ ଆକ୍ରମଣ କରିବା ବାଘର ଉଦ୍ଦେଶ୍ୟ ନଥିଲ, କିନ୍ତୁ ବାଘ ସେଠାରେ ଥିବାକଥା ନ ଜାଣି ଜଙ୍ଗଲର କୌଣସି ଶବ୍ଦକୁ କାନଡେରିବା ପାଇଁ ମୁଁ ଯଦି ମୁହୂର୍ତ୍ତେ ସେଠାରେ ଅଟକି ଯାଇଥାଆନ୍ତି କମ୍ବା କାଶିବା, ଛିଙ୍କିବା ବା ରାଇଫଲ୍‌କୁ କାନ୍ଧରୁ କାନ୍ଧକୁ ବଦଳ କରିବା ଭଳି କୌଣସି ଅପ୍ରତ୍ୟାଶିତ ଶବ୍ଦ ବା ସଞ୍ଚାଳନ କରିଥାଆନ୍ତି, ବାଘ ସେଠିକରେ ଚମକି କରି ମୋତେ ମାଡ଼ିବସିଥାଆନ୍ତା । ସେଭଳି ବିପଦ ବରଣ କରିବା ପୂର୍ବରୁ ଅବଚେତନ ମନର 'ଅରଣ୍ୟ ସମ୍ବିତ୍' ହିଁ ବିପଦଠାରୁ ମୋତେ ଦୂରକୁ ହଟାଇନେଲ ।

'ଅରଣ୍ୟ-ସମ୍ବିତ୍' ଯୋଗୁଁ ଏଭଳି ବିପଜ୍ଜନକ ପରିସ୍ଥିତିରୁ ମୁଁ ଯେ କେତେଥର ରକ୍ଷାପାଇଛି, ତାହା ଗୋଟି ଗୋଟି କରି ଉଲ୍ଲେଖ କରିବା ସମ୍ଭବ ନୁହେଁ । ଜଙ୍ଗଲ ପାହାଡ଼ ଭିତରେ ଜୀବନ ବିତାଇ ଦେଇ ମଧ୍ୟ ମୋତେ ଯେ ଥରେ ମାତ୍ର ହିଂସ୍ରଜନ୍ତୁର ଆକ୍ରମଣର ସମ୍ମୁଖୀନ ହେବାକୁ ପଡ଼ିଛି *—କୌଣସି ଏକ ରକ୍ଷାକାରୀ ଶକ୍ତି ମୋ ସପକ୍ଷରେ କାର୍ଯ୍ୟ

* 'ମୋର ଭାରତ' ବହିରେ 'ମୋତି' ପରିଚ୍ଛେଦଟି ଦ୍ରଷ୍ଟବ୍ୟ ।

Digitized by srujanika@gmail.com

କରୁଥିବାର ଏହା ପ୍ରଭୂତ ପ୍ରମାଣ ଦିଏ । ସେ ଶକ୍ତିକୁ ମୁଁ 'ଅରଣ୍ୟ ସବନ୍ତ' ବୋଲି ନାମ ଦେଉଛି; ଅନ୍ୟ କେହି ତାକୁ ଭାଗ୍ୟଦେବୀଙ୍କ କୃପାକଟାକ୍ଷ ବୋଲି କହିବେ*। ଯେ ସଙ୍କା, ଶକ୍ତି ବା ବସ୍ତୁ ଯାହା ହେଉନା କାହିଁକି, ଦୀର୍ଘ-ତୋବୀ ଧରି ମହାବିପଦରୁ ତାହା ମୋତେ ଯେ ବହୁବାର ରକ୍ଷାକରିଛି, ପରିଶେଷରେ ଏହା ମୁଁ ମୁକ୍ତକଣ୍ଠରେ ସ୍ୱୀକାର କରୁଛି ।



* କର୍ବେଟ୍ ଭଗବାନଙ୍କଠାରୁ ବରପ୍ରାପ୍ତ ହୋଇଥିବାରୁ ହିଂସ୍ରଜନ୍ତୁ କେହି ତାଙ୍କର ଅନିଷ୍ଟ କରିପାରୁ ନ ଥିଲେ ବୋଲି କୁମାୟୁଁ ଅଞ୍ଚଳର ଅଧିବାସୀମାନେ ଏପର୍ଯ୍ୟନ୍ତ ଦୃଢ଼ଭାବେ ବିଶ୍ୱାସ କରନ୍ତି।

—ଅନୁବାଦକ

Digitized by srujanika@gmail.com

# ଅନୁବାଦକଙ୍କ ପରିଚୟ

ଡକ୍ଟର ପ୍ରଫୁଲ୍ଲ କୁମାର କରଙ୍କ ଜନ୍ମ ୧୯୩୦ ମସିହା ଜାନୁୟାରୀ ୧୫ ତାରିଖରେ । ତାଙ୍କ ପିତା ପି. ଏମ୍. ଏକାଡ଼େମୀର ଭୂତପୂର୍ବ ବରିଷ୍ଠ ଶିକ୍ଷକ ସ୍ୱର୍ଗତ ରଘୁନାଥ କର ଓ ମାତା ସ୍ୱର୍ଗୀୟା ମନୋରମା ଦେବୀ ।

ଡକ୍ଟର କରଙ୍କ ସ୍କୁଲଶିକ୍ଷା କଟକରେ ପ୍ରଥମେ St. Joseph's Convent ଓ ପରେ Stewart Higher European Schoolରେ ସମ୍ପାଦିତ ହୋଇଥିଲା । ୧୯୪୫ ମସିହାରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଓ ପ୍ରାନ୍ତୀୟ ପରୀକ୍ଷାର୍ଥୀଙ୍କ ମଧ୍ୟରେ ପ୍ରଥମ ସ୍ଥାନ ଅଧିକାର କରି ସେ ରେଭେନ୍‌ସା କଲେଜରେ ପ୍ରବେଶ କଲେ । ୧୯୪୭ ମସିହାରେ ସେଠାରୁ Intermediate in Science ପରୀକ୍ଷାରେ କୃତିତ୍ୱ ସହ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ଚିକିତ୍ସା ମହାବିଦ୍ୟାଳୟର ଛାତ୍ରଭାବେ ଯୋଗ ଦେଲେ । ଚିକିତ୍ସା ଶିକ୍ଷା ଭିତରେ ଅନେକ ପୁରସ୍କାର ପାଇବା ଛଡ଼ା ୧୯୫୨ ମସିହାର Final M. B., B. S. ପରୀକ୍ଷାରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ସେ ନୂତନ ରେକର୍ଡ଼ ସୃଷ୍ଟି କରିଥିଲେ ଓ ସର୍ବୋତ୍କୃଷ୍ଟ ସ୍ନାତକ ଭାବେ ଯୋଗେଶଚନ୍ଦ୍ର ବୋଷ ସ୍ୱର୍ଣ୍ଣପଦକ ଲାଭ କରିଥିଲେ । ଛାତ୍ର ଜୀବନରେ ବକ୍ତା ଓ ଲେଖକ ଭାବେ ସେ ବହୁବାର ପୁରସ୍କୃତ ମଧ୍ୟ ହୋଇଥିଲେ ।

Indian Council of Medical Researchର ଫେଲୋ ରୂପେ ମନୋନୀତ ହୋଇ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟରୁ ୧୯୫୬ ମସିହାରେ ଭେଷଜ ବିଜ୍ଞାନରେ କୃତିତ୍ୱ ସହ ଡକ୍‌ଟରେଟ୍ ଉପାଧି ଲାଭ କରିବା ପରେ Technical Co-operation Missionର ଆନୁକୂଲ୍ୟରେ ଯୁକ୍ତରାଷ୍ଟ୍ର ଆମେରିକାର ପ୍ରଖ୍ୟାତ ପେନ୍‌ସିଲ୍‌ଭେନିଆ ବିଶ୍ୱବିଦ୍ୟାଳୟରେ ଗବେଷଣା ଓ ଶିକ୍ଷକତା କରିବା ଛଡ଼ା ସେଠାରେ ଜୈବିକ ଗଣିତରେ ମଧ୍ୟ ଉଚ୍ଚ ଶିକ୍ଷା ଲାଭକରିଥିଲେ ।

୧୯୫୨ ମସିହାରୁ ଶ୍ରୀରାମଚନ୍ଦ୍ର ଭଞ୍ଜ ଚିକିତ୍ସା ମହାବିଦ୍ୟାଳୟର ଭେଷଜତତ୍ତ୍ୱ ବିଭାଗରେ ତାଙ୍କର ଶିକ୍ଷକତା ଆରମ୍ଭ । ସେଠାରେ ଉଚ୍ଚତର ପଦକୁ ଉନ୍ନୀତ ହେବାପରେ ୧୯୬୪ ମସିହାରେ ବ୍ରହ୍ମପୁରରେ ଓ ୧୯୭୨ ମସିହାରେ କଟକରେ ଅଧ୍ୟାପକ ଓ ବିଭାଗୀୟ ମୁଖ୍ୟ ଭାବେ ଯୋଗଦାନ କରିଥିଲେ । ୧୯୭୬ରୁ ୧୯୮୪ ମସିହା ପର୍ଯ୍ୟନ୍ତ ପରେ ପରେ

Digitized by srujanika@gmail.com

ବୁର୍ଲା ଏବଂ ବ୍ରହ୍ମପୁର ଚିକିତ୍ସା ମହାବିଦ୍ୟାଳୟରେ ଅଧ୍ୟକ୍ଷ ପଦରେ ରହିବା ପରେ ୧୯୮୫ରୁ ୧୯୮୮ ମସିହା ପର୍ଯ୍ୟନ୍ତ ସେ ରାଜ୍ୟସରକାରଙ୍କ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର ଅତିରିକ୍ତ ଶାସନ ସଚିବ ଭାବେ କାର୍ଯ୍ୟଭାର ତୁଲାଇ ଅବସର ଗ୍ରହଣ କଲେ ।

ବୈଷୟିକ ଶିକ୍ଷାବିଦ୍ ଭାବେ ଡକ୍ଟର କର ଜାତୀୟ ସ୍ତରରେ ସ୍ୱୀକୃତି ଲାଭ କରିଛନ୍ତି । ସେ Indian Council of Medical Researchର Governing Bodyର ସଭ୍ୟ ଓ Association of Indian Universitiesର ନିର୍ବାଚିତ ପ୍ରତିନିଧି ଏବଂ Medical Council of India ଏବଂ Pharmacy Council of Indiaର ସଭ୍ୟ ହୋଇଛନ୍ତି । International Union of Pharmacologyର National Committeeର ସଭ୍ୟ ଭାବେ ସେ Indian National Science Academy ଦ୍ୱାରା ମନୋନୀତ । ଏହାଛଡ଼ା ବିଭିନ୍ନ ସମୟରେ ସେ Indian Pharmacological Society ର ସଭାପତି, ଉପସଭାପତି, ସାଧାରଣ ସମ୍ପାଦକ, କାର୍ଯ୍ୟକାରୀ କମିଟିର ସଭ୍ୟ ଓ ଆବାହକ ଏବଂ ବୈଜ୍ଞାନିକ ଅଧିବେଶନରେ ସଭାପତି, Indian Journal of Physiology and Pharmacology ର ସମ୍ପାଦକ ମଣ୍ଡଳୀର ସହାୟକ, Indian Journal of Pharmacology ର ସମ୍ପାଦକ ମଣ୍ଡଳୀର ସଭ୍ୟ, Indian Association of the Advancement of Medical Education ର ଆଜୀବନ ସଭ୍ୟ', ଓଡ଼ିଶା ଶାଖାର କୋଷାଧ୍ୟକ୍ଷ ଓ ସ୍ଥାନୀୟ ପ୍ରତିନିଧି, Indian Society of Health Administrators ଓ Indian Red Cross Society ର ଆଜୀବନ ସଭ୍ୟ, Indian Medical Association ର Central Council ର ସଭ୍ୟ, Teaching Institute of Basic Medical Sciences ର ସଭ୍ୟ, ବାରାଣସୀ ହିନ୍ଦୁ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ନିର୍ବାଚନରେ ବିଶେଷଜ୍ଞ ତଥା ଦିଲ୍ଲୀ, ଲକ୍ଷ୍ନୌ, ଆଗ୍ରା, ରାଜସ୍ଥାନ, ଆହ୍ଲାବାଦ, ବାରାଣସୀ, ପାଟନା, ରାଞ୍ଚି, ଗୌହାଟୀ, ଦିବ୍ରୁଗଡ଼, କଲିକତା, ବିହାର, ଓସମାନିଆ, ଆନ୍ଧ୍ର ଓ ରବିଶଙ୍କର ବିଶ୍ୱବିଦ୍ୟାଳୟମାନଙ୍କର ସ୍ନାତକ ତଥା ସ୍ନାତକୋତ୍ତର ଭେଷଜ ବିଜ୍ଞାନ ପରୀକ୍ଷାରେ ପରୀକ୍ଷକ ହୋଇଛନ୍ତି ।

ରାଜ୍ୟସ୍ତରରେ ବିଭିନ୍ନ ସମୟରେ ଡକ୍ଟର କର Hospital Improvement Committee, State Drugs Advisory Committee ଏବଂ Orissa Council of Medical Registration ର ସଭ୍ୟ, ବ୍ରହ୍ମପୁର ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟର ସିନେଟ୍, ଏକାଡେମିକ୍ କାଉନ୍ସିଲ୍ ଓ ସିଣ୍ଡିକେଟର ସଭ୍ୟ ଏବଂ ଉଭୟ ବିଶ୍ୱବିଦ୍ୟାଳୟର Faculty of Medicine ର Dean, ରାଜ୍ୟର ପ୍ରତ୍ୟେକ ଚିକିତ୍ସା ମହାବିଦ୍ୟାଳୟର Governing Body ର ସଭ୍ୟ ଏବଂ ରାଜ୍ୟର ପ୍ରତ୍ୟେକ ବିଶ୍ୱବିଦ୍ୟାଳୟର

Digitized by srujanika@gmail.com

ସ୍ନାତକ ତଥା ସ୍ନାତକୋତ୍ତର ଭେଷଜ ବିଜ୍ଞାନ ପରୀକ୍ଷାରେ ପରୀକ୍ଷକ ହୋଇଛନ୍ତି । ଏତଦ୍ ବ୍ୟତୀତ World Wildlife Fund ର ଭାରତୀୟ ଶାଖା, Nature and Wild-life Conservation Society of Orissa ଏବଂ Zoo Outreach Organisation ର ସେ ଜଣେ ସକ୍ରିୟ ସଭ୍ୟ ।

କର୍ମମୁଖର ଜୀବନରେ ସାମାନ୍ୟ ଯାହା ଅବସର ମିଳେ, ତାକୁ ସେ ନିୟୋଗ କରନ୍ତି ପଢ଼ିବା ଓ ଲେଖିବାରେ । ଭେଷଜ ବିଜ୍ଞାନ ବିଷୟରେ ଗବେଷଣାମୂଳକ ପ୍ରବନ୍ଧ ବ୍ୟତୀତ ଭେଷଜତତ୍ତ୍ୱ ପୁସ୍ତକମାନଙ୍କରେ ତାଙ୍କର ଅବଦାନ ରହିଛି । ତାଙ୍କର ଓଡ଼ିଆ ଲେଖା ଭିତରୁ 'ଶ୍ୟାମସୁନ୍ଦରର ସ୍ୱପ୍ନ', 'ନେମେସିସ୍', 'ଅବମାନନା' ଆଦି ଗଳ୍ପ 'ଝଙ୍କାର' ରେ ପ୍ରକାଶିତ ଓ ପ୍ରଶଂସିତ ହୋଇଛି । ତାଙ୍କର ଅନୂଦିତ ନାଟକ 'ଅନାମିକା ତାରା', 'ଯାତ୍ରାର ଶେଷ' ଓ 'ଟବଣ ଘଣ୍ଟାର ଡାଏରି' ବ୍ରହ୍ମପୁର ଓ ବୁର୍ଲା ଡାକ୍ତରୀ ମହାବିଦ୍ୟାଳୟରେ ଅଭିନୀତ ହୋଇଛି । ଅନୂଦିତ ପୁସ୍ତକ ଭିତରୁ ଜିମ୍ କର୍ବେଟ୍ଙ୍କର 'ମୋର ଭାରତ' 'କୁମାୟୁଁର ନରଖାଦକ', 'ରୁଦ୍ରପ୍ରୟାଗ ନରଖାଦକ', 'ମନ୍ଦିରର ବାଘ', 'ଜଙ୍ଗଲ ତଥ୍ୟ' ଓ 'ଟ୍ରି ଟପ୍ସ' ପ୍ରକାଶ ପାଇଛି । 'ଟ୍ରି ଟପ୍ସ'ର ପ୍ରକାଶ ସହିତ ଜିମ୍ କର୍ବେଟ୍ଙ୍କର ଲେଖା ସମସ୍ତ ପୁସ୍ତକର ଓଡ଼ିଆ ଅନୁବାଦ ଡକ୍ଟର୍ କରଙ୍କଦ୍ୱାରା ସମାପିତ ହେଲା । ଦାକ୍ଷିଣାତ୍ୟର ପ୍ରଖ୍ୟାତ ଶିକାରୀ ଓ ସଂରକ୍ଷଣଧର୍ମୀ କେନେଥ୍ ଆଣ୍ଡରସନ୍ଙ୍କ ପୁସ୍ତକରୁ ଡକ୍ଟର୍ କରଙ୍କ ଦ୍ୱାରା ଅନୂଦିତ 'ଜଙ୍ଗଲର ଜଲ୍ଲାଦ୍' ମଧ୍ୟ ଗ୍ରନ୍ଥମନ୍ଦିର ଦ୍ୱାରା ପ୍ରକାଶ ପାଇସାରିଛି । 'ଦୂରରେ ଗର୍ଜୁଛି ବାଘ' 'ବିଷମ ବଣରେ ବିତାସ' ଓ ଅନ୍ୟାନ୍ୟ ଅନୁବାଦ ପ୍ରକାଶ ଅପେକ୍ଷାରେ ।

ଡକ୍ଟର୍ କର ଓଡ଼ିଶାର ଲବ୍ଧପ୍ରତିଷ୍ଠ ସାହିତ୍ୟିକ ସ୍ୱର୍ଗତ ଅନନ୍ତ ପ୍ରସାଦ ପଣ୍ଡା ଓ ସ୍ୱର୍ଗୀୟା ଶରତ କୁମାରୀ ଦେବୀଙ୍କ ଜାମାତା । ତାଙ୍କର ପତ୍ନୀ ଡକ୍ଟର୍ ସୁଧାରାଣୀ କର ଶ୍ରୀରାମଚନ୍ଦ୍ର ଭଞ୍ଜ ଡାକ୍ତରୀ ମହାବିଦ୍ୟାଳୟର ଅଣୁଜୀବ ବିଭାଗର ଅଧ୍ୟାପିକା ଓ ବିଭାଗୀୟ ମୁଖ୍ୟା । କନ୍ୟା ଗୀତା ଓ ଜାମାତା ଡକ୍ଟର୍ ଲଳିତେନ୍ଦୁ ଷଡ଼ଙ୍ଗୀ ବାରଣାସୀରେ ଏବଂ ପୁତ୍ର ଇଂଜିନିୟର ସୁବ୍ରତ କର ବାଙ୍ଗାଲୋର୍ରେ ବର୍ତ୍ତମାନ ଅବସ୍ଥାନ କରୁଛନ୍ତି ।

---

Digitized by srujanika@gmail.com